CEE'S

# NATURESCOPE INDIA

Spotlight on Species



# ହାତୀ... ହାତୀ... ହାତୀ

A publication under 'School Education to Support Asian Elephant Conservation', a project supported by the United States Fish and Wildlife Service.

Digitized by srujanika@gmail.com

CEE'S

# ନେଚରସ୍କୋପ୍ ଇଣ୍ଡିଆ



## ହାତୀ... ହାତୀ... ହାତୀ

ଏସୀୟ ହାତୀ ଗବେଷଣା ଓ ସଂରକ୍ଷଣ କେନ୍ଦ୍ର, ପରିବେଶ ବିଜ୍ଞାନ କେନ୍ଦ୍ର, ବାଙ୍ଗାଲୋର, ସହାୟତାରେ ପ୍ରସ୍ତୁତ ।

Digitized by srujanika@gmail.com

The Teachers' Manual *Endangered Elephants*, is a component of the educational package developed as a part of the project 'School Education to Support Asian Elephant Conservation' This project is supported by the United States Fish and Wildlife Service.

NatureScope India is a creative education series dedicated to inspiring in children an understanding and appreciation of the natural world, while developing the skills they need to make responsible decisions about the environment.

NatureScope India: *Spotlight on Species* is an extension of NatureScope, India. The focus of the first edition of this series is Elephants.

The format of NatureScope India: *Spotlight on Species* is based on NatureScope, an environmental education publication for elementary and middle school educators.

NatureScope is published by the National Wildlife Federation, the world's largest membership organisation, promoting the wise use and conservation of natural resources. More information regarding the National Wildlife Federation and its programmes can be obtained directly by writing to the Federation at 8925 Leesburg Pike, Vienna, Virginia 22184, USA.


**Concept, Co-ordination, Text** : Meena Raghunathan, Mamata Pandya

**Research, Development and Activities:** Shruti Agrawal

**Review and Comments** : Shri S. S. Bist, Project Elephant, Ministry of Environment and Forests, New Delhi, Dr. A. J. T. Johnsingh, Wildlife Institute of India, Dehra Dun, Dr. Kumi F. and Dr. Ashok Kumar, Wildlife Protection Society of India, New Delhi, Shri Kartikeya V. Sarabhai, Centre for Environment Education, Ahmedabad, Dr. R. Sukumar, Asian Elephant Research and Conservation Centre, Bangalore

**Design** : Dhun Karkaria, Wilson Solanki, D. M. Thumber

**Layout** : Balamani R. Menon

**Illustrations** : Kavita Agarwal, Mukesh Barad, Shailesh Bhalani, Hemal Solanki, Santosh Sutar, Roopalika, V.

**Pencil Drawings** : Kavita Agarwal, Mukesh Barad, Vijay Shrimali, Hemal Solanki, Roopalika, V.

**Transparencies** : Manoj Dholakia, N. C. Dingra

**Cover Transparencies** : Manoj Dholakia, N. C. Dingra

**Production** : D. M. Thumber

**Support Services** : Bhana K. Solanki

**Printing** : Babu Jose

Special Thanks to Project Elephant, Ministry of Environment and Forests, New Delhi; Wildlife Institute of India, Dehra Dun; Wildlife Protection Society of India, New Delhi; Wildlife Trust of India, New Delhi.



© 2001 Centre for Environment Education, Ahmedabad, India



ISBN: 81-86385-30-4 (English)


ନେଚରସ୍କୋପ୍ ଇଣ୍ଡିଆ

ହାତୀ... ହାତୀ... ହାତୀ

(ପରିବେଶ ଶିକ୍ଷା କେନ୍ଦ୍ର ଦ୍ୱାରା ପ୍ରକାଶିତ *ନେଚରସ୍କୋପ୍ ଇଣ୍ଡିଆ - ଏନ୍‌ଡେଞ୍ଜରଡ୍ ଏଲିଫାଣ୍ଟସ୍* ପୁସ୍ତକର ଓଡ଼ିଆ ସଂସ୍କରଣ)


ଭାଷାନ୍ତର : ପୁଷ୍ପଶ୍ରୀ ପଟ୍ଟନାୟକ

ସମ୍ପାଦନା : ନିଖିଳ ମୋହନ ପଟ୍ଟନାୟକ

ସମୀକ୍ଷା : ଶ୍ରୀ ସରୋଜ କୁମାର ପଟ୍ଟନାୟକ, ସଦସ୍ୟ, ହସ୍ତୀ ପ୍ରକଳ୍ପ ଷ୍ଟିଅରିଙ୍ଗ କମିଟି; ଶ୍ରୀ ସୁରେଶ କୁମାର ମିଶ୍ର, ଡିଏଫ୍‌ଓ, ଚନ୍ଦକା; ଶ୍ରୀ ସୁଧାକର କର, ବନ୍ୟପ୍ରାଣୀ ଗବେଷକ ।

ଚିତ୍ର ଓ ସହାୟତା : ଶିବ ପ୍ରସାଦ ପାତ୍ର, ଜୀବନ କୁମାର ପଣ୍ଡା

ଲିପି ସଂଯୋଜନା : ଅଲେଖ ପ୍ରସାଦ ନାୟକ

ଅଙ୍ଗସଜ୍ଜା : ସୃଜନିକା, ଭୁବନେଶ୍ୱର

ମୁଦ୍ରଣ : ସେକ୍ରେଡ୍ ପ୍ରେସ୍ ସର୍ଭିସ୍, ଏନ୍-୩/୫୫, ଆଇଆର୍‌ସି ଭିଲେଜ୍, ଭୁବନେଶ୍ୱର

ସଂଯୋଜନା : ଦେବୀ ପ୍ରସାଦ ରଥ



© ୨୦୦୩ ପରିବେଶ ଶିକ୍ଷା କେନ୍ଦ୍ର, ଅହମଦାବାଦ, ଭାରତ



ଆଇଏସ୍‌ବିଏନ୍ : ୮୧-୮୬୩୮୫-୪୯-୫ (ଓଡ଼ିଆ)


Centre for Environment Education (CEE) is a national institution established in 1984 and supported by the Ministry of Environment and Forests, Government of India as a Centre of Excellence in Environment Education. The main objective of CEE is to create environmental awareness among children, youth and the general community. To achieve this, CEE develops innovative programmes and materials, and field tests them for their validity and effectiveness.

---

Most of the illustrations in this publication have been made by Mukesh Barad. Mukesh Barad and his family lost their lives in the divastating earthquake that hit Gujarat on 26 January 2001. This publication is dedicated to Mukesh and his family.


Digitized by srujanika@gmail.com

# ସୂଚୀପତ୍ର



Digitized by srujanika@gmail.com

# ଏହି ପ୍ରକଳ୍ପ ବିଷୟରେ

ଯୁକ୍ତରାଷ୍ଟ୍ର ମତ୍ସ୍ୟ ଓ ବନ୍ୟପ୍ରାଣୀ ସେବା ଏହି 'ଏସୀୟ ହାତୀ ସଂରକ୍ଷଣରେ ସହାୟତା ପାଇଁ ସ୍କୁଲ ଶିକ୍ଷା ପ୍ରକଳ୍ପ' ପାଇଁ ସହାୟତା ଯୋଗାଇଛି । ଏହି ପ୍ରକଳ୍ପର କାମ ଭିତରେ ରହିଛି - ଶିକ୍ଷଣ ସାମଗ୍ରୀର ପରିଯୋଜନା, ବିକାଶ ଓ ଉତ୍ପାଦନ ଏବଂ ସ୍କୁଲମାନଙ୍କରେ ଏସୀୟ ହାତୀ ବିଷୟରେ ଏକ ବ୍ୟାପକ ପରିବେଶ ଶିକ୍ଷା କାର୍ଯ୍ୟକ୍ରମ ପ୍ରଚଳନ । ଏହାର ମୁଖ୍ୟ ଲକ୍ଷ ହେଉଛନ୍ତି ୧୦ରୁ ୧୪ ବର୍ଷ ବୟସର ସ୍କୁଲ ପିଲାମାନେ ଏବଂ ତାଙ୍କ ମାଧ୍ୟମରେ ସମାଜର ଜନସାଧାରଣ ।

ଏହି ପ୍ରକଳ୍ପର ପ୍ରଥମ ପାଦର ଲକ୍ଷ ହେଉଛି ବଣ୍ୟ ଏସୀୟ ହାତୀ ସହିତ କୌଣସି ସମ୍ପର୍କରେ ଆସିନଥିବା ସାଧାରଣ ସ୍କୁଲ ପିଲାଙ୍କ ମନରେ ଏହି ବିଷୟରେ ସଚେତନତା ଆଣିବା । ଏଥିପାଇଁ ଦେଶର ସବୁ ଅଞ୍ଚଳରୁ ୧୦୦୦ ସ୍କୁଲର ଏକ ଜାଲକ ସୃଷ୍ଟିକରାଯିବ ଏବଂ ଏସୀୟ ହାତୀକୁ କେନ୍ଦ୍ର କରି ଏକ ବର୍ଷର ଶିକ୍ଷଣ କାର୍ଯ୍ୟକ୍ରମ ଚଳାଯିବ । ଜାତୀୟ ସ୍କୁଲଭିତ୍ତିକ ପରିବେଶ ଶିକ୍ଷଣ କାର୍ଯ୍ୟକ୍ରମ (ଏନ୍·ଇ·ଇ·ପି·ଏସ୍· - ନାସନାଲ ଏନ୍‌ଭାଇରନ୍‌ମେଣ୍ଟାଲ୍ ଏଜୁକେସନ୍ ଇନ୍ ସ୍କୁଲ୍‌ସ୍) ସହିତ ଜଡ଼ିତ ଥିବା ବେସରକାରୀ ଅନୁଷ୍ଠାନମାନଙ୍କର ଏକ ଜାଲକ ଜରିଆରେ ଦେଶର ବିଭିନ୍ନ ଅଞ୍ଚଳରେ ପହଞ୍ଚିବାର ଲକ୍ଷ ହାସଲ କରାଯିବ । ଏହି ପ୍ରଥମ ପାଦର ଅଂଶ ଭାବରେ ଏକ ଶିକ୍ଷଣ ପେଟିକା ପ୍ରସ୍ତୁତ କରାଯାଇଛି, ବେସରକାରୀ ଅନୁଷ୍ଠାନ ଓ ଶିକ୍ଷକମାନେ ତାଲିମ ପାଇଛନ୍ତି ଏବଂ ଦେଶବ୍ୟାପୀ ପିଲାମାନେ ବିଭିନ୍ନ ପରଖ ଓ ପ୍ରକଳ୍ପ ମାଧ୍ୟମରେ ଏସୀୟ ହାତୀ ସଂରକ୍ଷଣ ବିଷୟ ସହିତ ପରିଚିତ ହୋଇଛନ୍ତି ।

ପ୍ରକଳ୍ପର ଦ୍ୱିତୀୟ ଉପାଦାନର ନିର୍ଦ୍ଦିଷ୍ଟ ଲକ୍ଷ ହେଉଛନ୍ତି ଏସୀୟ ହାତୀ ରହୁଥିବା ଅଞ୍ଚଳର ପାଖରେ ଥିବା ପିଲାମାନେ । ଯେଉଁ ଜାଗାରେ ଏସୀୟ ହାତୀ ପ୍ରତି ବିପଦ ବଢ଼ିଚାଲିଛି, ସେହି ଅଞ୍ଚଳର ପିଲାମାନଙ୍କ ଉପରେ ଏହା ବିଶେଷ ଧ୍ୟାନ ଦେବ । ବଣ୍ୟ ଏସୀୟ ହାତୀ ରହିଥିବା ଦୁଇଟି ସଂରକ୍ଷିତ ଅଞ୍ଚଳ ପାଖର ୩୦ରୁ ୫୦ଟି ସ୍କୁଲରେ ବ୍ୟାପକ ଶିକ୍ଷଣ କାର୍ଯ୍ୟକ୍ରମ ମାଧ୍ୟମରେ ଏହା ବାସ୍ତବ ରୂପ ନେଉଛି । ଏହି କାମ ପାଇଁ ବଛାଯାଇଥିବା ସ୍କୁଲଗୁଡ଼ିକ ରହିଛନ୍ତି ନୀଳଗିରି ସଂରକ୍ଷିତ ଜୀବମଣ୍ଡଳ (ବାନ୍ଦିପୁର ବ୍ୟାଘ୍ର ସଂରକ୍ଷିତ ଅଞ୍ଚଳ ଓ ନାଗରହୋଲ ଜାତୀୟ ଉଦ୍ୟାନ) ଏବଂ ବାଲ୍‌ଫାକ୍ରାମ ଜାତୀୟ ଉଦ୍ୟାନ (ମେଘାଳୟ) ପାଖରେ ।

ଏହି ଶିକ୍ଷକ ସହାୟକ ପୁସ୍ତକ ହେଉଛି ସେହି ପ୍ରକଳ୍ପ ଆନୁକୂଲ୍ୟରେ ବିକଶିତ ହୋଇଥିବା ଶିକ୍ଷଣ ସାମଗ୍ରୀର ଏକ ଅଂଶ । ଏହା ଏସୀୟ ହାତୀ ସଂରକ୍ଷଣର ବିଭିନ୍ନ ଦିଗ ଉପରେ କେବଳ ତଥ୍ୟ ଯୋଗାଏ ନାହିଁ, ପିଲାଙ୍କ ପାଖରେ ସେହି ତଥ୍ୟ କିପରି ଫଳପ୍ରଦ ଭାବରେ ପହଞ୍ଚାଯାଇ ପାରିବ ସେଥିପାଇଁ ବିଭିନ୍ନ ବାଟ ମଧ୍ୟ ବତାଏ । ଆଶା କରାଯାଏ ଯେ ଏହି ବହିଟି ଏସୀୟ ହାତୀ ଉପରେ ଗୋଟିଏ 'ଏକପୁସ୍ତକ ଲାଇବ୍ରେରୀ' ଭାବରେ କାମ ଦେଇପାରିବ ।

ଶିକ୍ଷଣ ପେଟିକାର ଅନ୍ୟ ଦୁଇଟି ଅଂଶ ହେଉଛି - ଗୋଟିଏ ପିଲାଙ୍କ ବହି ଯାହା ଗପ, ନିବନ୍ଧ, ଲୋକକଥା ଆଦି ମାଧ୍ୟମରେ ହାତୀ ପ୍ରତି ଦରଦ ଓ ଆଦର ସୃଷ୍ଟି କରିବ; ଏବଂ ଗୋଟିଏ ସେଟ୍ ପୋଷ୍ଟର ଯେଉଁଥିରେ ଏସୀୟ ହାତୀ ଓ ତାଙ୍କ ସଂରକ୍ଷଣ ବିଷୟରେ ମୌଳିକ ତଥ୍ୟ, ଫଟୋଚିତ୍ର, ଗ୍ରାଫ୍, ଆଦି ଉପସ୍ଥାପିତ ହୋଇଥିବ ।

## ଷ୍ଟିଅରିଙ୍ଗ୍ କମିଟି

ଏହି ପ୍ରକଳ୍ପକୁ ଦିଗ୍‌ଦର୍ଶନ ଦେବା ପାଇଁ ଏକ ଷ୍ଟିଅରିଙ୍ଗ୍ କମିଟି ଗଢ଼ାଯାଇଛି । ଏହି କମିଟିର ସଦସ୍ୟମାନେ ହେଉଛନ୍ତି:

- ଶ୍ରୀ କାର୍ତ୍ତିକେୟ ଭି· ସରାଭାଇ, ନିର୍ଦ୍ଦେଶକ, ସେଣ୍ଟର ଫର୍ ଏନ୍‌ଭାଇରନ୍‌ମେଣ୍ଟ ଏଡୁକେଶନ୍ (ଅଧ୍ୟକ୍ଷ)
- ଶ୍ରୀ ଏସ୍· ଏସ୍· ବିଷ୍ଟ, ନିର୍ଦ୍ଦେଶକ, ହାତୀ ପ୍ରକଳ୍ପ, ପରିବେଶ ଓ ଜଙ୍ଗଲ ମନ୍ତ୍ରଣାଳୟ, ନୂଆ ଦିଲ୍ଲୀ
- ଡଃ ଏ· ଜେ· ଟି· ଜନ୍‌ସିଂହ, ୱାଇଲ୍‌ଡ୍ ଲାଇଫ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଇଣ୍ଡିଆ, ଡେରାଡୁନ୍
- ଡଃ ଆର୍· ସୁକୁମାର, ଏସିଆନ୍ ଏଲିଫାଣ୍ଟ ରିସର୍ଚ୍ଚ ଆଣ୍ଡ କଞ୍ଜରଭେସନ୍ ସେଣ୍ଟର, ସେଣ୍ଟର ଫର୍ ଇକୋଲଜିକାଲ ସାଇନ୍‌ସେସ୍, ବାଙ୍ଗାଲୋର
- ସୁଶ୍ରୀ ମିନା ରଘୁନାଥନ୍, କାର୍ଯ୍ୟକ୍ରମ ସଂଯୋଜକ
- ସୁଶ୍ରୀ ମମତା ପାଣ୍ଡ୍ୟା, କାର୍ଯ୍ୟକ୍ରମ ସଂଯୋଜକ
- ସୁଶ୍ରୀ ଶୈଳଜା ରବୀନ୍ଦ୍ରନାଥ, ଭାରପ୍ରାପ୍ତ ବୈଜ୍ଞାନିକ, ସିଇଇ ଦକ୍ଷିଣ
- ଶ୍ରୀ ଅବଧେଶ ଗଙ୍ଗୱାର, ଭାରପ୍ରାପ୍ତ ବୈଜ୍ଞାନିକ, ସିଇଇ ଉତ୍ତରପୂର୍ବ ।

ଆଶା କରାଯାଉଛି ଯେ ଏହି ପ୍ରକଳ୍ପ ଜରିଆରେ ଏକ ବିପନ୍ନ ପ୍ରାଣୀ ବିଷୟରେ ସଚେତନତା ଆଣିବା ପାଇଁ ଆବଶ୍ୟକୀୟ ସାମଗ୍ରୀ ଓ ଧାରା ସୃଷ୍ଟି କରା ଯାଇପାରିବ ।



Digitized by srujanika@gmail.com

# ହାତୀ ବହି ଉପରେ ବିଶେଷ ସୂଚନା

ସୂଚୀପତ୍ରରୁ ଜାଣି ହେଉଥିବ ଯେ ଏହି ବିପନ୍ନ ହାତୀ ବହିଟିକୁ ଆମେ ସାତଟି ଅଧ୍ୟାୟରେ ଭାଗ କରିଛୁ । ପ୍ରତି ଅଧ୍ୟାୟରେ ହାତୀ ଓ ତାଙ୍କର ସଂରକ୍ଷଣର ଅଲଗା ଅଲଗା ବିଷୟରେ ଚର୍ଚ୍ଚା କରାଯାଇଛି ଏବଂ ସେହି ବିଷୟ ସମ୍ପର୍କିତ ପୃଷ୍ଠଭୂମି ସୂଚନା ଓ ପରଖ (*ଆକ୍‌ଟିଭିଟି*) ଦିଆଯାଇଛି ।

**ପୃଷ୍ଠଭୂମି ସୂଚନା:** ପ୍ରତି ଅଧ୍ୟାୟର ଆରମ୍ଭରେ ଏକ ଟୀକା ରହିଛି ଯାହା ସେହି ଅଧ୍ୟାୟର ମୁଖ୍ୟ ଧାରଣାଗୁଡ଼ିକର ସୂଚନା ଦିଏ । ଅଧ୍ୟାୟର ବିଷୟ ପାଇଁ ସେହି ଟୀକା ଏକ ଭଲ ଉପକ୍ରମଣିକା ଭାବରେ କାମ ଦେଇପାରିବ । ସେଥିରୁ କିଛି ଅଧିକ ସୂଚନା ମଧ୍ୟ ମିଳେ ଯାହା କେତେ ଜାଗାରେ ତଥ୍ୟର ଅଭାବକୁ ଭରଣା କରିପାରେ ଓ ଯାହା ସାହାଯ୍ୟରେ ଆଲୋଚନା ଆରମ୍ଭ କରାଯାଇପାରେ । ଅଧିକାଂଶ ପରଖର ଆରମ୍ଭରେ ମଧ୍ୟ ଏଭଳି ଛୋଟ ଟୀକା ରହିଛି । ତାହା ସେହି ପରଖ ବା ବିଷୟ ପାଇଁ ପୃଷ୍ଠଭୂମି ତଥ୍ୟ ଯୋଗାଏ । ଏହାକୁ ସେହି ପରଖ ପାଇଁ ଏକ ଉପକ୍ରମ ଭାବରେ କିମ୍ବା ପରଖ ଶେଷରେ ଆଲୋଚନାର ଆଧାର ଭାବରେ ବ୍ୟବହାର କରାଯାଇପାରେ ।

**ପରଖ:** କୌଣସି ଧାରଣାର କାର୍ଯ୍ୟକାରିତା ଦେଖାଇବା ପାଇଁ ବା ତାହାକୁ ଭଲ ଭାବରେ ବୁଝାଇବା ପାଇଁ ଏବଂ ପିଲାମାନଙ୍କର ଅଂଶଗ୍ରହଣକୁ ଗଭୀର କରିବା ପାଇଁ ପରଖଗୁଡ଼ିକ ପରିକଳ୍ପିତ ହୋଇଛି । ପ୍ରତ୍ୟେକ ପରଖ ସ୍ୱୟଂସମ୍ପୂର୍ଣ୍ଣ ଏବଂ ତାହା କିପରି କରାଯିବ ସେହି ଧାରାର ପାଦ ପାଦ ବର୍ଣ୍ଣନା ସେଥିରେ ଦିଆଯାଇଛି ।

ପରଖଟି କେଉଁ ସ୍ତର ପାଇଁ ଉପଯୋଗୀ ତାହା ମଧ୍ୟ ସେଥିରେ ସୂଚାଇ ଦିଆଯାଇଛି । ସ୍ତରଗୁଡ଼ିକ ହେଉଛି ପ୍ରାଥମିକ (ତୃତୀୟରୁ ପଞ୍ଚମ ଶ୍ରେଣୀ), ଉଚ୍ଚ ପ୍ରାଥମିକ (ଷଷ୍ଠରୁ ଅଷ୍ଟମ ଶ୍ରେଣୀ) ଏବଂ ଉଚ୍ଚତର (ନବମ ଓ ଦଶମ ଶ୍ରେଣୀ) ।

କିନ୍ତୁ ଏହି ସୂଚିତ ସ୍ତର ଭିତରେ ବାନ୍ଧିହେବା ଆଦୌ ଜରୁରୀ ନୁହେଁ । କେଉଁ ପରଖ ଆପଣଙ୍କ ପିଲାଙ୍କ ପାଇଁ ଓ ଆପଣ ପଢ଼ାଉଥିବା ବିଷୟ ପାଇଁ ବେଶୀ ଉପଯୋଗୀ ତାହା ସ୍ଥିର କରିବା ପାଇଁ ଆପଣ ହିଁ ଯୋଗ୍ୟତମ ବ୍ୟକ୍ତି ।

ଶିକ୍ଷଣ ଲକ୍ଷ, ସୂଚିତ ସ୍ତର, ଦରକାରୀ ଜିନିଷ ଓ ସମ୍ପର୍କିତ ବିଷୟ ପରଖର ଶୀର୍ଷକର ଠିକ୍ ତଳକୁ ଏକ ବାକ୍ସରେ ବିଶେଷ ଦୃଶ୍ୟ ରୂପରେ ଦିଆଯାଇଛି ।

**ତଥ୍ୟ ଭଣ୍ଡାର:** କିଛି ପରଖ କରିବା ପାଇଁ ଦରକାର ପଡୁଥିବା ଅଧିକ ତଥ୍ୟ ଏହି ବିଭାଗରେ ଦିଆଯାଇଛି । ସେଥିରେ ସେହି ପରଖର ଆବଶ୍ୟକତା ସମ୍ପର୍କିତ ବିଶେଷ ତଥ୍ୟ ମଧ୍ୟ ଦିଆଯାଇଛି । ସାଧାରଣ ସୂଚନାକୁ ଗଭୀରତର କରିବା ପାଇଁ ଓ ଆଗେଇନେବା ପାଇଁ ଏହା କାମ ଦେଇପାରିବ ।

ଆପଣ ପ୍ରତ୍ୟେକ ଅଧ୍ୟାୟକୁ ଗୋଟିଏ ଏକକ ବିଷୟ ଭାବରେ ପଢ଼ାଇ ପାରିବେ କିମ୍ବା ପଢ଼ାଉଥିବା ଅନ୍ୟ କେଉଁ ବିଷୟର ଧାରଣା ସ୍ପଷ୍ଟ କରିବା ପାଇଁ କେବଳ ଗୋଟିଏ ପରଖ ବାଛି ଦେଖାଇ ପାରିବେ ।

Digitized by srujanika@gmail.com

# ଗୁଣ ହାତୀକୁ ହାତୀ କରେ?



ଛ'ଜଣ ଅନ୍ଧ ମଣିଷ ଥରେ କିପରି ଗୋଟିଏ ହାତୀକୁ ସାମନା କଲେ ସେ ବିଷୟରେ ପୁରୁଣା ଗପଟିଏ ଆମେ ଜାଣିଛେ । ପ୍ରତି ଅନ୍ଧ ଏହି ବିରାଟ ଜୀବର ଅଲଗା ଅଲଗା ଅଙ୍ଗକୁ ଛୁଇଁଲେ - ଜଣେ ତା'ର ଶୁଣ୍ଢକୁ ଛୁଇଁଲା, ଜଣେ କାନକୁ, ଜଣେ ଗୋଡ଼କୁ, ଜଣେ କଡ଼କୁ, ଜଣେ ଲାଞ୍ଜକୁ ଏବଂ ଜଣେ ତା'ର ଦାନ୍ତକୁ । ପ୍ରତି ଲୋକ ଛୁଇଁଥିବା ଅଂଶକୁ ଅଲଗା ଭାବରେ ଧାରଣା କଲେ । ଯିଏ ଗୋଡ଼ ଛୁଇଁଥିଲା ସେ ଭାବିଲା ହାତୀ ଗୋଟିଏ ବଡ଼ ଗଛ ଭଳି । ଯିଏ କଡ଼ରେ ଥିଲା ସେ ଏହାକୁ ଗୋଟିଏ କାନ୍ଥ ଭାବିଲା । ଯେଉଁ ଲୋକ ଶୁଣ୍ଢ ଧରିଥିଲା ସେ ହାତୀଟିକୁ ଗୋଟିଏ ସାପ ବୋଲି ଭାବିଲା । ଲାଞ୍ଜ ପାଖରେ ଥିବା ଲୋକ ତାକୁ ଦଉଡ଼ି ବୋଲି ଭାବିଲା ଏବଂ କାନ ଛୁଇଁଥିବା ଲୋକକୁ ତାହା ଗୋଟିଏ ପଙ୍ଖା ଭଳି ମନେହେଲା । ଯିଏ ହାତୀର ଦାନ୍ତକୁ ଛୁଇଁଥିଲା ସେ ତାକୁ ଗୋଟିଏ ବର୍ଛା ବୋଲି ଭାବିଲା । ଏହିପରି ହାତୀର ଅନେକ ରୂପ ଆସିଲା, କିନ୍ତୁ ଏସବୁକୁ ମିଶାଇ ଦେଲେ ହାତୀର ପ୍ରକୃତ ରୂପ ମିଳୁନାହିଁ ।

ତେବେ କେଉଁ ଗୁଣ ହାତୀକୁ ହାତୀ କରେ?

## ଆକାର

ଏବେ ମାଟି ଉପରେ ରହୁଥିବା ଜୀବଙ୍କ ଭିତରେ ଆଫ୍ରିକୀୟ ହାତୀ ହେଉଛି ସବୁଠାରୁ ବଡ଼ । ଅଣ୍ଡିରା ଆଫ୍ରିକୀୟ ହାତୀର ଓଜନ ୬୦୦୦ କି.ଗ୍ରା. ପର୍ଯ୍ୟନ୍ତ ଓ କାନ୍ଧ ପାଖରେ ଉଚ୍ଚତା ୪ ମିଟର ଯାଏଁ ହୋଇଥାଏ । ମାଈ ଆଫ୍ରିକୀୟ ହାତୀ ଆକାରରେ ଅଣ୍ଡିରାଠାରୁ ଛୋଟ ହୁଏ - ତା'ର ଓଜନ ୩୦୦୦ କି.ଗ୍ରା. ଯାଏଁ ଓ ଉଚ୍ଚତା ୨ରୁ ୪ ମିଟର ହୁଏ । ଏସୀୟ ହାତୀର ବିଜ୍ଞାନ ନାଁ ହେଉଛି *ଏଲିଫସ୍ ମାକ୍ସିମସ*, ଅର୍ଥାତ, ସବୁଠାରୁ ବଡ଼ ହାତୀ । ଆଫ୍ରିକୀୟ ହାତୀ ତଳକୁ ଏହା ସବୁଠାରୁ ବଡ଼ ଜୀବ । ଅଣ୍ଡିରା ଏସୀୟ ହାତୀର ଓଜନ ପ୍ରାୟ ୫୪୦୦ କି.ଗ୍ରା. ଏବଂ ଉଚ୍ଚତା ପ୍ରାୟ ୩.୨ ମିଟର ହୁଏ । ମାଈ ହାତୀର ଓଜନ ୪୦୦୦ କି.ଗ୍ରା. ଏବଂ ଠିଆରେ କାନ୍ଧ ଯାଏଁ ଉଚ୍ଚତା ପ୍ରାୟ ୨.୫ ମିଟର ହୋଇଥାଏ । (ଏସୀୟ ଏବଂ ଆଫ୍ରିକୀୟ ହାତୀ ଭିତରେ ତଫାତ ପୃଷ୍ଠା ୭ରେ ରହିଛି ।)

## ହାଡ଼

ବିରାଟ ପରିମାଣର ମାଂସ ଏବଂ ଚମ ତଳେ ରହିଛି ହାତୀର କଙ୍କାଳ ଯାହାକି ହାତୀର ଏତେ ବଡ଼ ଓଜନକୁ ସମ୍ଭାଳିପାରେ । କଙ୍କାଳଟି ଗୋଟିଏ ପୋଲ ଭଳି, ଦେହର ଦୁଇ ପଟରେ ଦୁଇଯୋଡ଼ା



Digitized by srujanika@gmail.com

ଗୋଡ଼ ଖମ୍ବ ଭଳି କାମଦିଏ । ଏଗୁଡ଼ିକ ମେରୁଦଣ୍ଡର ବଙ୍କା ହାଡ଼ ଦ୍ୱାରା ଯୋଡ଼ି ହୋଇଥାଏ ।

ମେରୁଦଣ୍ଡଟି କୋଡ଼ିଏ ଯୋଡ଼ା ପଞ୍ଜରା ହାଡ଼, ମାଂସପେଶୀ, ପାକସ୍ଥଳୀ ଏବଂ ଅନ୍ୟ ସବୁ ଅଙ୍ଗକୁ ସମ୍ଭାଳି ଧରିଥାଏ । ଉଭୟ ଏସୀୟ ଏବଂ ଆଫ୍ରିକୀୟ ହାତୀର ମେରୁଦଣ୍ଡର ମଝି ଅଂଶ ଉପରକୁ ବଙ୍କେଇ ଥାଏ । ପଥରର ତୋରଣ ଭଳି ଏହି ଆକୃତି ମେରୁଦଣ୍ଡକୁ ବହୁତ ଓଜନ ସମ୍ଭାଳିବାରେ ସାହାଯ୍ୟ କରେ ।

ଏସୀୟ ହାତୀ ସାଧାରଣତଃ ତା'ର ବେକକୁ ୪୫° କୋଣ କରି ଟେକି ରଖେ । ଫଳରେ ମୁଣ୍ଡର ଉପର ତା ଦେହର ସବୁଠାରୁ ଉଚ୍ଚ ଜାଗା ହୁଏ । ଏହାକୁ ଉଠାଇ ରଖୁଥିବା ମାଂସପେଶୀଗୁଡ଼ିକ ଖପୁରୀର ପଛପଟ ସହ ଓ ମେରୁଦଣ୍ଡର ପ୍ରତିଟି ହାଡ଼ରୁ ବାହାରିଥିବା ମୁନିଆଁ କଣ୍ଟା ସହ ଯୋଡ଼ି ହୋଇଥାଏ ।

ହାତୀ ଠିଆହେଲା ବେଳେ ବା ବିଶ୍ରାମ କରୁଥିବା ବେଳେ ପ୍ରତି ଗୋଡ଼ର ହାଡ଼ଗୁଡ଼ିକ ଗୋଟିକ ଉପରେ ଗୋଟିଏ ଖଞ୍ଜିହୋଇ ରହେ । ଫଳରେ ତାହା ଗୋଟିଏ ଶକ୍ତ ଖମ୍ବ ଭଳି ହୋଇଯାଏ । ଏହି ଅବସ୍ଥାରେ ହିଁ ହାତୀ ବିଶ୍ରାମ କରେ, ଏପରିକି ଠିଆହୋଇ ମଧ୍ୟ ସେ ଶୋଇପାରେ । ଆଫ୍ରିକୀୟ ହାତୀ ତୁଳନାରେ ଏସୀୟ ହାତୀର ଦେହ ଛୋଟ ଏବଂ ଅଧିକ ପିମ୍ପା ଆକାରର ହୋଇଥାଏ ।

## ଗୋଡ଼ ଓ ପାଦ

ଅତି ଶକ୍ତ ହାଡ଼ରେ ତିଆରି ଖମ୍ବ ଭଳି ଗୋଡ଼ ହାତୀର ବିରାଟ ଓଜନକୁ ସମ୍ଭାଳେ । ତା'ର ପାଦଗୁଡ଼ିକ ପ୍ରାୟ ଗୋଲ ଓ ପାଦର ତଳିପା ପ୍ରାୟ




ସମତଳ ହୋଇଥାଏ । ହାତୀର ପାଦ ତଳେ ପଡ଼ିଲା ମାତ୍ରେ ତା'ର ଆଙ୍ଗୁଠିଗୁଡ଼ିକ ମେଲା ହୋଇଯାଏ ଏବଂ ପୂରା ପାଦର ଆକାର ବଢ଼ିଯାଏ । ଫଳରେ ପ୍ରତି ପାଦରେ ସେ ତା'ର ଓଜନ ସମ୍ଭାଳିପାରେ । ଏହି ମେଲାଇଯିବା କାମ ପଛ ପାଦ ଅପେକ୍ଷା ଆଗ ପାଦରେ ବେଶି ହୁଏ । ଆଗ ପାଦର ଆକାର ପ୍ରାୟ ଗୋଲ ହୋଇଥିବା ବେଳେ ପଛ ପାଦର ଆକାର ଅଣ୍ଡାଳିଆ ହୁଏ ।

ସାଧାରଣତଃ ଆଗ ପାଦରେ ପାଞ୍ଚଟି ଓ ପଛ ପାଦରେ ଚାରୋଟି ଲେଖାଏଁ ଆଙ୍ଗୁଠି ରହିଥାଏ । ପାଦର ତଳିପା ବହୁତ ମୋଟା ହୋଇଥାଏ ଏବଂ ସେଥିରେ ଅନେକଗୁଡ଼ିଏ ଭାଙ୍ଗ ଥାଏ । ଏହା ସବୁପ୍ରକାରର ଭୂଇଁକୁ ଧରିରଖିପାରେ । ପଥୁରିଆ ଜାଗାରେ ଚାଲିବାରେ ଓ ଢାଲୁ ଜାଗାରେ ବା ପାହାଡ଼ ଉପରକୁ ଚଢ଼ିବାରେ ଏହା ହାତୀକୁ ବିଶେଷ ଭାବରେ ସାହାଯ୍ୟ କରେ ।

ହାତୀର ତଳିପାରେ ବହୁତ ବିଶେଷତା ରହିଛି । ସେଥିରେ ଅନେକ ଭାଙ୍ଗ ଓ ଫାଟ ଦେଖାଯାଏ । ଅଳ୍ପ ବୟସର ହାତୀର ତଳିପାରେ ଭାଙ୍ଗଗୁଡ଼ିକ ସ୍ପଷ୍ଟ ଥାଏ । କିନ୍ତୁ ବୟସ୍କ ହାତୀର ଭାଙ୍ଗଗୁଡ଼ିକ ପାଲିସ ହୋଇଯାଏ ଓ ଗୋଇଠି ଘଷରା ହୋଇଯାଇଥାଏ ।

ତୁମେ ଜାଣ କି ଯେ ହାତୀର ଆଗ ପାଦର ଗୋଲେଇର ଦୁଇଗୁଣ ସହ ତା'ର କାନ୍ଧ ଉଚ୍ଚତା ପ୍ରାୟ ସମାନ ?

## ଆଙ୍ଗୁଠି

ଜଣେ ନିଶ୍ଚୟ ଭାବୁଥିବ ଯେ ଏତେ ବଡ଼ ପାଦ ଥିବା ହାତୀ ଭଳି ବିରାଟକାୟ ଜୀବ ଚଲାବୁଲା କରିବା ବେଳେ ବେଶ ଜୋରରେ ଶବ୍ଦ ହେଉଥିବ । କିନ୍ତୁ ଏହାର ଠିକ ଓଲଟା ହିଁ ହୁଏ । ହାତୀ ଏତେ ଧୀରେ ଚାଲେ ଯେ ତା ପାଦ ତଳେ ଛୋଟିଆ ଡାଳଟିଏ ଭାଙ୍ଗିବାର ଶବ୍ଦ ବି ଶୁଣାଯାଏ ନାହିଁ । ହାତୀ କିପରି ଏହା କରିପାରେ?

ଜଣେ ଭଲକରି ଲକ୍ଷ କଲେ ଦେଖିପାରିବ ଯେ ହାତୀ ତା'ର ଗୋଡ଼ର ଆଙ୍ଗୁଠିରେ ଚାଲେ । ତା'ର ଗୋଇଠି ତନ୍ତୁ ଓ ଚର୍ବିର ଗୋଟିଏ ମୋଟା ଗଦି ଭଳି ହୋଇଥାଏ । ପାଦ ତଳେ ପଡ଼ିବାର ମାତ୍ରକୁ ଏହା ଶୋଷିନିଏ, ତେଣୁ ଚାଲିବାର ଶବ୍ଦ ବାହାରେ ନାହିଁ । ଦେଖିବାକୁ ଗଲେ ହାତୀ ତା'ର ପାଦରେ ନଚାଲି ଆଙ୍ଗୁଠିରେ ଚାଲୁଥିବାରୁ ଶବ୍ଦ ହୁଏ ନାହିଁ ।

## ଶୁଣ୍ଢ

ଶୁଣ୍ଢ ହିଁ ପ୍ରକୃତରେ ହାତୀକୁ ହାତୀ କରେ । ଶୁଣ୍ଢ ବା *ପ୍ରୋବୋସିସ୍* (ମୂଳ ଗ୍ରୀକ୍ ଶବ୍ଦର ଅର୍ଥ ହେଉଛି ପାଟିର ଆଗରେ) କେବଳ ହାତୀ ଦେହରେ ଥାଏ ଏବଂ ଏହି ଅଙ୍ଗ ଯୋଗୁଁ ହାତୀର ପର୍ବ (*ଅର୍ଡର*)ର ନାଁ *ପ୍ରୋବୋସିଡି* ଦିଆଯାଇଛି ।

ଶୁଣ୍ଢର ସବୁଠାରୁ ବଡ଼ ଗୁଣ ହେଉଛି ଏହାର ଶକ୍ତି ଏବଂ ସୂକ୍ଷ୍ମ ସମ୍ବେଦନଶୀଳତାର ମିଶ୍ରଣ । ଏହି ଅତି ନମନୀୟ ଶୁଣ୍ଢଟି ବେଳେ ବେଳେ ହାତୀର ପଞ୍ଚମ ଗୋଡ଼ ଭଳି କାମ ଦିଏ । ହାତୀ ଭଳି ବିରାଟ ଜୀବ ଶୁଣ୍ଢ ବିନା ବଞ୍ଚିପାରନ୍ତା ନାହିଁ । କାରଣ ଏହା ତାକୁ ଖାଦ୍ୟ ଓ ପାଣିର ନିତିଦିନିଆ ଚାହିଦା ଭରଣା କରିବାରେ ସାହାଯ୍ୟ କରେ ।

ହାତୀର ନାକ ଓ ଉପର ଓଠ ଏକାଠି ବଢ଼ିଯାଇ ତା'ର ଶୁଣ୍ଢ ତିଆରି ହୋଇଥାଏ । ଶୁଣ୍ଢର ନମନୀୟତା ଓ ବିଭିନ୍ନ କାମ କରିବାର ଦକ୍ଷତା ଯୋଗୁ ବୋଧହୁଏ ମଣିଷର ହାତୀ ପ୍ରତି ଏତେ ଆଗ୍ରହ ଆସିଛି । ଆମର ହାତ୍‌ରେ ଲାଗିଥିବା ମାଂସପେଶୀ ଟାଣି ହେବାରୁ ଗୋଡ଼ ଚାଲେ । କିନ୍ତୁ ହାତୀ ଶୁଣ୍ଢର ମାଂସପେଶୀ ଅନ୍ୟ ମାଂସପେଶୀକୁ ଟାଣିବା ଫଳରେ ତାହା କାମ କରେ । ଶୁଣ୍ଢର ମଝିରେ ହାଡ଼ ନଥାଏ । ତଥାପି ଏହା ଅନେକ ପ୍ରକାରର କାମ କରିପାରେ ।

ଶୁଣ୍ଢ ଭିତରେ ଦୁଇଟି ନାସାନଳୀ ଲମ୍ବିଥାଏ ଓ ତା ଚାରିପଟେ ଏକ ଲକ୍ଷରୁ ଅଧିକ ଲମ୍ବା ମାଂସପେଶୀ ଘେରି ରହିଥାଏ । ଏଥିରୁ କିଛି ମାଂଶପେଶୀ ଖପୁରୀରୁ ଶୁଣ୍ଢର ପୂରା ଶେଷ ଯାଏଁ ଲମ୍ବିଥାଏ । ଏଗୁଡ଼ିକ ସାଇକେଲ ଚକର ଷ୍ପୋକ ଭଳି ନାକପୁଡ଼ାରୁ ଚାରିଆଡ଼କୁ ବାହାରିଥିବା ଛୋଟ ମାଂସପେଶୀ ସହିତ ଯୋଡ଼ି ହୋଇଥା'ନ୍ତି ।

## କାନ

କାନର ମୂଳ କାମ ହେଉଛି ଶବ୍ଦ ଗ୍ରହଣ କରି ତାକୁ ମସ୍ତିଷ୍କକୁ ପଠାଇବା । ଶବ୍ଦ ତରଙ୍ଗ କାନର ବାହ୍ୟ ଅଂଶ ବା କର୍ଣ୍ଣପକ୍ଷରେ ଧରିହୁଏ ଓ ମଝିକାନର ହାଡ଼ ଦେଇ କମ୍ପନ ଭାବରେ ଭିତରକୁ ଯାଏ ।

କର୍ଣ୍ଣପକ୍ଷର ଏତେ ବଡ଼ କ୍ଷେତ୍ରଫଳ ହାତୀ ଦେହର ତାପମାତ୍ରା ନିୟନ୍ତ୍ରଣ କରିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିଏ । ପ୍ରକୃତରେ କହିବାକୁ ଗଲେ କାନ ଗୋଟିଏ ତାପ ବିକିରଣ ଯନ୍ତ୍ର ଭାବରେ କାମ



Digitized by srujanika@gmail.com

କରେ ଏବଂ ଦେହକୁ ଥଣ୍ଡା ରଖିବାରେ ସାହାଯ୍ୟ କରେ । କାନର ତଳ ପଟେ, ଚମର ଠିକ୍ ତଳକୁ, ଅନେକ ରକ୍ତନଳୀ ପଙ୍ଖା ଭଳି ଖେଳାଇହୋଇ ରହିଥାଏ । ହାତୀ ତା କାନ ହଲାଇଲେ ରକ୍ତନଳୀରେ ରକ୍ତ ଥଣ୍ଡା ହୁଏ ଓ ତାହା ଦେହର ଅନ୍ୟ ଅଂଶକୁ ଚାଲିଯାଏ । ରକ୍ତ ଥଣ୍ଡା କରିବାର ଦକ୍ଷତା ବଢ଼ାଇବା ପାଇଁ ହାତୀ ତା'ର କାନକୁ ଅନବରତ ହଲାଉଥାଏ । ଏହି ଦୃଷ୍ଟିରୁ ହାତୀର କାନ ତାପ ନିୟନ୍ତ୍ରଣ ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ଯନ୍ତ୍ର ।

ଆଫ୍ରିକୀୟ ହାତୀର କାନ ଏସୀୟ ହାତୀଠାରୁ ପ୍ରାୟ ଚାରିଗୁଣ ବଡ଼ । କାନର ଆକାର ଭିତରେ ଥିବା ଏହି ଫରକ ତାଙ୍କର ରହିବା ଜାଗା ଏବଂ ଚାଲିଚଳଣ ଉପରେ ନିର୍ଭର କରେ । ଏସୀୟ ହାତୀକୁ ଛାଡ଼ିଦେଲେ ସେ ଜଙ୍ଗଲ ଭିତରକୁ ଚାଲିଯାଇ ଦିନସାରା ଛାଇରେ ହିଁ ରହିବ । କିନ୍ତୁ ଆଫ୍ରିକୀୟ ହାତୀ ସାଭାନାର ତୃଣଭୂମି ଅଞ୍ଚଳରେ ରହେ । ସେଠି ଛାଇ ପ୍ରାୟ ନଥାଏ । ତେଣୁ ଦିନର ଅଧିକାଂଶ ସମୟ ଟାଣ ଖରାରେ ହିଁ ସେ କଟାଏ । ସେମାନେ ଖରାରେ ରହୁଥିବା ସମୟ ଅନୁସାରେ କାନର ଆକାର ସାନ ବଡ଼ ହୋଇଥାଏ । ଆଫ୍ରିକୀୟ ହାତୀ ଭଳି ଏସୀୟ ହାତୀର କାନ ତା'ର ବେକ ଉଚ୍ଚତାରୁ ଉପରକୁ ଉଠିନଥାଏ ।



## ଦାନ୍ତ

ଆକାର, ପ୍ରକାର ଏବଂ ବଢ଼ିବାର ଧାରା ଦୃଷ୍ଟିରୁ ହାତୀର ଦାନ୍ତ ଅନ୍ୟ ଜୀବଙ୍କ ଦାନ୍ତଠାରୁ ବେଶ୍ ଅଲଗା । ମଣିଷ ଓ ଅଧିକାଂଶ ସ୍ତନ୍ୟପାୟୀଙ୍କର ଜୀବନକାଳ ଭିତରେ ମାତ୍ର ଦୁଇ ସେଟ୍ ଦାନ୍ତ ଉଠିଥାଏ । କିନ୍ତୁ ହାତୀର ଜୀବନକାଳରେ ସବୁ ଖାଦ୍ୟ ଚୋବାଇବା କାମ କରିବା ପାଇଁ ଛ' ସେଟ୍ ପେଷଣ ବା କଳ ଦାନ୍ତ ଉଠିଥାଏ । ଏକ ସମୟରେ ହାତୀର ପାଟିରେ ଦୁଇରୁ ଅଧିକ ସେଟ୍ କଳ ଦାନ୍ତ ଦେଖାଯାଏ ନାହିଁ । ତା'ର ପାଟିରେ ତଳ ଓ ଉପର ମାଢ଼ିର ଦୁଇପଟେ ଗୋଟିଏ ଲେଖାଏଁ (ମୋଟରେ ଚାରିଟି) ପେଷଣ ଦାନ୍ତ ପ୍ରତି ସେଟ୍‌ରେ ରହିଥାଏ ।

ଆମର ଦାନ୍ତଗୁଡ଼ିକ ଉପର ମାଢ଼ିରେ ଉପରୁ ତଳ ଆଡ଼କୁ ଓ ତଳ ମାଢ଼ିରେ ତଳୁ ଉପରକୁ ବଢ଼ିଥାଏ । କିନ୍ତୁ ହାତୀ ଦେହରେ ଏଭଳି ହୋଇନଥାଏ । ହାତୀର ମାଢ଼ିରେ ଦାନ୍ତ ସବୁ ପଛରୁ ଆଗ ଆଡ଼କୁ ଘୁଞ୍ଚିଚାଲେ । ଆଗରେ ଥିବା ପୁରୁଣା ଦାନ୍ତ ଯୋରି ହୋଇଗଲେ ମାଢ଼ିର ପଛ ଆଡୁ ନୂଆ ଦାନ୍ତ ବାହାରି ଆଗ ଆଡ଼କୁ ବଢ଼ିଥାଏ । ତେଣୁ ହାତୀର ବଢ଼ିବା ସହିତ ନୂଆ ଦାନ୍ତ ସବୁ ବି ବଢ଼େ, ପୁରୁଣା ଦାନ୍ତଗୁଡ଼ିକ ଯୋରିହୋଇ ବାହାରିଯାଏ । ହାତୀ ତା'ର ତଳ ମାଢ଼ିକୁ ଆଗ ପଛ କରି ବୁଲେଇ ବୁଲେଇ ଖାଦ୍ୟ ଚୋବାଏ ।

ହାତୀ ଛୁଆ ଜନ୍ମ ହେଲାବେଳେ ତା'ର ପାଟିରେ ପ୍ରଥମ ଓ ଦ୍ୱିତୀୟ ଯୋଡ଼ା ପେଷଣ ଦାନ୍ତ ଉଠିଥାଏ । ପ୍ରଥମ ପେଷଣ ଦାନ୍ତ ଚାରିଟି ୩-୪ ବର୍ଷ ବେଳକୁ ଉଭେଇଯାଏ । ସେହି ସମୟରେ ଆଗକୁ ବାହାରି ଆସିଥିବା ଦ୍ୱିତୀୟ ଚାରୋଟି ୬-୭ ବର୍ଷ ଯାଏଁ ରହେ । ତୃତୀୟ ଚାରୋଟି ୩-୧୩ ବର୍ଷ ବୟସ ଭିତରେ କାମ କରିବାକୁ ଆରମ୍ଭ କରେ । ଚତୁର୍ଥ ଚାରୋଟି ୬-୨୬ ବର୍ଷ ଏବଂ ପଞ୍ଚମ ଚାରୋଟି ୧୬-୪୩ ବର୍ଷ ଭିତରେ କାମ କରେ । ପ୍ରାୟ ୩୩ ବର୍ଷ ବେଳକୁ ଏଗୁଡ଼ିକ ପଡ଼ିଯାଏ ଏବଂ ତା ପରେ ହାତୀର ଖାଇବା କମିଯାଏ । ବାଲିମିଶା ଘାସ ବେଶି ଖାଇଲେ ଦାନ୍ତ ଶୀଘ୍ର ଯୋରି ହୋଇଯାଏ । ସେଥିପାଇଁ ଅନ୍ୟ ଡାଳପତ୍ର ଖାଉଥିବା ହାତୀ ଅପେକ୍ଷା କେବଳ ଘାସ ଖାଉଥିବା ହାତୀ ଶୀଘ୍ର ମରିଯାଏ ।

ଦାନ୍ତର ଆକାର ଓ ତାହା କେତେ ଯୋରି ହୋଇଛି ଦେଖି ହାତୀର ବୟସ କଳନା କରାଯାଏ ।

### *ଗଜମୁକ୍ତା*

କେତେକ ଲୋକ ବିଶ୍ୱାସ କରନ୍ତି ଯେ ହାତୀର ମୁଣ୍ଡରେ *ଗଜମୁକ୍ତା* ବୋଲି ଗୋଟିଏ ଅତି ମୂଲ୍ୟବାନ ରତ୍ନ ମିଳେ । କୁହାଯାଏ ଯେ ଆକାରରେ ଏହା ଗୋଲ ବା ଅଣ୍ଡାଳିଆ ହୋଇଥାଏ । ସାଧାରଣତଃ ବିଶ୍ୱାସ କରାଯାଏ ଯେ ଯାହା ପାଖରେ ଗଜମୁକ୍ତା ଥିବ, ସେ ରାଜା ହେବ ।

ଏହାର ବୈଜ୍ଞାନିକ କାରଣ ଏପରି ହୋଇପାରେ ଯେ ବେଳେବେଳେ ହାତୀର ଲମ୍ବା ଦାନ୍ତ ଠିକ୍ ଭାବରେ ବଢ଼ିପାରେ ନାହିଁ । ଫଳରେ ଦାନ୍ତ ମୂଳରେ ଦନ୍ତଧାତୁର ଗୋଟିଏ ଛୋଟିଆ ପିଣ୍ଡ ବଢ଼େ । ଏହା କିନ୍ତୁ ଗୋଲ ବା ଅଣ୍ଡାଳିଆ ହୁଏ ନାହିଁ, ବରଂ ତାହାର କିଛି ନିର୍ଦ୍ଦିଷ୍ଟ ଆକାର ନଥାଏ । ଏଭଳି ପିଣ୍ଡ ବଢ଼ିବା ବେଶ୍ ବିରଳ ହୋଇଥାଏ, ତେଣୁ ବୋଧହୁଏ ତାହାକୁ ମୂଲ୍ୟବାନ ମନେ କରାଯାଏ । ହୁଏତ ସେହି ବିରଳତାରୁ ହିଁ ତାହା ବିଷୟରେ ଏତେ କଳ୍ପନା ରୂପ ନେଇଛି ।



Digitized by srujanika@gmail.com

# ହାତୀଦାନ୍ତ

ଅଧିକାଂଶ ମଣିଷ ହାତୀର ଆଗକୁ ବାହାରିଥିବା ଲମ୍ବା ଦାନ୍ତ ଦୁଇଟିକୁ ହିଁ ହାତୀଦାନ୍ତ (ଟସ୍କ) ଭାବରେ ଜାଣନ୍ତି। ପ୍ରକୃତରେ ଉପର ମାଢ଼ିର କର୍ତ୍ତନ ଦାନ୍ତ ଦୁଇଟି ବାହାରକୁ ବଢ଼ିଯାଇ ଏହି ରୂପ ନେଇଥାଏ। ହାତୀର ତଳ ମାଢ଼ିରେ କର୍ତ୍ତନ ଦାନ୍ତ ନଥାଏ। ଦନ୍ତଧାତୁରେ ତିଆରି ଏହି ଲମ୍ବା ଦାନ୍ତ ଦୁଇଟି ହାତୀର ଜୀବନସାରା ବଢୁଥାଏ। ଏହାର ପ୍ରାୟ ଏକତୃତୀୟାଂଶ ମାଢ଼ି ଭିତରେ ଲୁଚି ରହିଥାଏ ଏବଂ ମୂଳଟି ବେଶ୍ ଗଭୀରରେ ଖପୁରୀ ସହିତ ଯୋଡ଼ି ହୋଇଥାଏ। ଦାନ୍ତର ମୂଳ ଅଂଶଟି ଫମ୍ପା ଥାଏ ଏବଂ ଦାନ୍ତ ଭିତରେ ପ୍ରାୟ ଅଧା ଲମ୍ବ ଯାଏଁ ସଂବାହୀ ତନ୍ତୁ ଭରି ରହିଥାଏ। ଦାନ୍ତ ଭିତରେ କେତେ ଆଗକୁ ସଂବାହୀ ତନ୍ତୁ ଲମ୍ବିଥାଏ ତାହା ହାତୀର ବୟସ ଉପରେ ନିର୍ଭର କରେ।

ସବୁ ହାତୀଙ୍କର ଏହି ଲମ୍ବା ହାତୀଦାନ୍ତ ବା କିସା ନଥାଏ। ଉଭୟ ମାଈ ଓ ଅଣ୍ଡିରା ଆଫ୍ରିକୀୟ ହାତୀଙ୍କର ଲମ୍ବା ଦାନ୍ତ ଥିବାବେଳେ କେବଳ ଅଣ୍ଡିରା ଏସୀୟ ହାତୀର ଏହି ଦାନ୍ତ ଥାଏ। ଏପରିକି ସବୁ ଅଣ୍ଡିରା ଏସୀୟ ହାତୀଙ୍କର ବି ଏହି ଦାନ୍ତ ନଥାଏ। ଲମ୍ବା ଦାନ୍ତ ନଥିବା ଅଣ୍ଡିରା ହାତୀଙ୍କୁ *ମଖନା* ବୋଲି କୁହାଯାଏ। ବର୍ଷକୁ ହାରାହାରି ୧୫ରୁ ୧୮ ସେ.ମି. ହାରରେ ଏହି ଦାନ୍ତ ଦୁଇଟି ନିରନ୍ତର ବଢୁଥାଏ। ବେଳେବେଳେ ଘୋରିହୋଇ ବା ଅନ୍ୟ କାରଣରୁ ହାତୀଦାନ୍ତ ଭାଙ୍ଗି ଯାଇପାରେ।

ଏସୀୟ ମାଈ ହାତୀର ଲମ୍ବା ଦାନ୍ତ ନଥାଏ, କିନ୍ତୁ ତାଙ୍କର ଦୁଇଟି କର୍ତ୍ତନ ଦାନ୍ତ ଥାଏ। ଏଗୁଡ଼ିକୁ ଛୋଟ ହାତୀଦାନ୍ତ (*ଟସେଜ୍*) କୁହାଯାଏ। ତାହା ଲମ୍ବା ହାତୀଦାନ୍ତର ଛୋଟ ରୂପ ଭଳି। କିନ୍ତୁ ଅତି ଧୀରେ ବଢୁଥିବାରୁ ତାହା ପ୍ରାୟ ପାଟି ବାହାରକୁ ବାହାରେ ନାହିଁ, ତେଣୁ ଜଣାପଡ଼େ ନାହିଁ। କିନ୍ତୁ ଚିଡ଼ିଆଖାନାରେ କେତେ ମାଈ ହାତୀଙ୍କର ୩୦ ସେଣ୍ଟିମିଟର ଲମ୍ବା ଯାଏଁ ଛୋଟ ହାତୀଦାନ୍ତ ଥିବା ବି ଦେଖାଯାଇଛି।



ହାତୀର ଏହି ଲମ୍ବା ଦାନ୍ତ ଅନେକ ପ୍ରକାରର କାମ କରିଥାଏ। ଏଗୁଡ଼ିକ ମାଟି ଖୋଳା ଯନ୍ତ୍ର ଭାବରେ, ଅନ୍ୟ ଅଣ୍ଡିରା ହାତୀ ଓ ଶତ୍ରୁ ବିରୁଦ୍ଧରେ ଅସ୍ତ୍ର ଭଳି ଏବଂ ମାଈ ହାତୀକୁ ଆକର୍ଷଣ କରିବା କାମରେ ଲାଗେ। ଗଛର ବକଳ ଚିରିବା ପାଇଁ ବା ମାଟି ତଳୁ ମୂଳ ତାଡ଼ିକରି ଖାଇବା ପାଇଁ ମଧ୍ୟ ହାତୀଦାନ୍ତ ବ୍ୟବହୃତ ହୁଏ।

ମଣିଷ ଯେମିତି ବାଉଁଆ ବା ଡାଉଁଆ ହୋଇଥାନ୍ତି ସେହିପରି ହାତୀ ବି ବାଁ ବା ଡାହାଣ ହାତୀଦାନ୍ତିଆ ହୋଇଥାନ୍ତି। ଯେଉଁ ଦାନ୍ତଟି ବେଶି ବ୍ୟବହାର ହୁଏ ତାକୁ ମୁଖ୍ୟଦାନ୍ତ କୁହାଯାଏ। ମୁଖ୍ୟଦାନ୍ତଟି ସହଜରେ ଚିହ୍ନିହୁଏ, କାରଣ ଘୋରିହୋଇ ତାହା ଛୋଟ ହୋଇଯାଇଥାଏ ଓ ତା'ର ଅଗଟି ମୁଣ୍ଡା ହୋଇଯାଇଥାଏ।

# ଚମଡ଼ା

ସ୍ଥୂଳଚର୍ମୀ ବା *ପ୍ୟାଚିଡର୍ମ* ଶବ୍ଦଟି ହାତୀର ମୋଟା ଚମଡ଼ାକୁ ବୁଝାଇଥାଏ। *ପ୍ୟାଚି ଅର୍ଥ* ମୋଟା, *ଡର୍ମା ଅର୍ଥ* ଚମଡ଼ା। ହାତୀର ଚମଡ଼ା ଦେହର ବିଭିନ୍ନ ଜାଗାରେ ଅଲଗା ମୋଟାର ହୋଇଥାଏ। କାନର ଭିତର ପାଖ ଚମଡ଼ାର ମୋଟେଇ ୧-୨ମି.ମି. ଓ ପିଠିରେ ଓ ମୁଣ୍ଡ ଉପରେ କେତେ ଜାଗାରେ ସେ ଚମଡ଼ା ୨.୫ସେ.ମି. ମୋଟା ହୋଇଥାଏ।

ଚମଡ଼ାଟି ବହୁତ ସମ୍ବେଦୀ ଅଂଶ। ସେଥିରେ ଛୋଟ ରୁମ ବା ବାଆଁଶା ବାଳ ପତଳା ଓ ଅସମାନ ଭାବରେ ରହିଥାଏ। ହାତୀ ଛୁଆର ଦେହସାରା, ବିଶେଷ କରି ପିଠି ଏବଂ ମୁଣ୍ଡରେ, ମାଟିଆ ରଙ୍ଗର ରୁମ ଭରି ହୋଇଥାଏ। ବୟସ ବଢ଼ିବା ସହିତ ଏହି ରୁମର ପରିମାଣ କମିଯାଏ।

ହାତୀଛୁଆର ଦେହର ରଙ୍ଗ ଧୂସରିଆ କଳା ହୋଇଥାଏ। ବୟସ ବଢ଼ିଲେ ବେଳେବେଳେ ତା' ଚମଡ଼ାରେ ଗୋଲାପି ରଙ୍ଗର ଚିହ୍ନ ଦେଖାଯାଏ। ଏହି ଛିଟ ପ୍ରଥମେ ଶୁଣ୍ଢର ମୂଳ ଏବଂ ଅଗରୁ ଆରମ୍ଭ ହୋଇ ଧୀରେ ଧୀରେ କାନ ଧାର, ବେକ ଓ ଶେଷରେ ଦେହସାରା ମାଡ଼ିଯାଏ। ସାଧାରଣତଃ ଏହା ଏସୀୟ ହାତୀ ଦେହରେ ଦେଖାଯାଏ। ଆଫ୍ରିକୀୟ ହାତୀ ଦେହରେ ମଧ୍ୟ ଏହା ବେଳେ ବେଳେ ଦେଖାଯାଏ, କିନ୍ତୁ ତାହା ବେଶ୍ ବିରଳ।

# ଲାଞ୍ଜ

ହାତୀ ପିଲା ଥିବାବେଳେ ଲାଞ୍ଜ ଅଗରେ ଥିବା ରୁମ କେରାକ ଛୋଟ ଏବଂ ନରମ ହୋଇଥାଏ। ବୟସ ବଢ଼ିଲେ ଏଗୁଡ଼ିକ ଲମ୍ବା ଓ ଟାଣ ହୋଇଯାଏ ଏବଂ ତାର ଭଳି ଦେଖାଯାଏ।

# ବୃଦ୍ଧି

ହାତୀ ଗୋଟିଏ ଅସାଧାରଣ ସ୍ତନ୍ୟପାୟୀ ଜୀବ। କାରଣ ସେ ତା'ର ଜୀବନସାରା ବଢ଼ିବାରେ ଲାଗିଥାଏ। ଅବଶ୍ୟ ପ୍ରଜନନକ୍ଷମ ବୟସରେ ପହଞ୍ଚିଲେ ଏହି ବଢ଼ିବାର ବେଗ କମିଯାଏ। ତେଣୁ ହାତୀର କାନ୍ଧ ଯାଏଁ ଉଚ୍ଚତା ମାପିକରି ତା'ର ବୟସ କହି ହୁଏ।

# ଜୀବନ କାଳ

ଜଙ୍ଗଲୀ ହାତୀ ପ୍ରାୟ ୬୦-୭୦ ବର୍ଷ ବଞ୍ଚେ। ପୋଷା ହାତୀ ଆଉ ଟିକିଏ ଅଧିକା ବଞ୍ଚିପାରେ।

ହାତୀ କାନର ଅବସ୍ଥା ଦେଖି ମଧ୍ୟ ତା'ର ବୟସ ହିସାବ କରିହେବ। ହାତୀ କାନ ୬-୭ ବର୍ଷ ଯାଏଁ ଠିଆ ହୋଇରହେ। ତା'ପରେ ତଳକୁ ଝୁଙ୍କିଯାଏ। ୩୦ ବର୍ଷର ବେଳକୁ କାନ ଢିଲା ହୋଇ ଝୁଲିବାକୁ ଆରମ୍ଭ କରେ। ଆହୁରି ବୟସ ବଢ଼ିଲେ କାନର ନମନୀୟତା ଚାଲିଯାଏ ଓ ତାହା ନେସେମା ହୋଇ ଗଳିପଡ଼ିଲା ଭଳି ରହେ। ବୁଢ଼ା ହାତୀର ମୁଣ୍ଡ ଉପରେ ହାଡ଼ର ଗେଡ଼ା ବେଶୀ ଦେଖାଯାଏ।

# ଦେହ ଭିତରର ଅଙ୍ଗ

## ମସ୍ତିଷ୍କ

କୁହାଯାଏ ଯେ ହାତୀ ପ୍ରାୟ କିଛି ଭୁଲେନାହିଁ। ବୋଧହୁଏ ଏହା ସତ। କାରଣ ଜଙ୍ଗଲରେ ଅନ୍ୟ ହାତୀ ସହ ସେମାନଙ୍କ ସମ୍ପର୍କକୁ ସେମାନେ ବର୍ଷ ବର୍ଷ ଧରି ମନେ ରଖନ୍ତି। ଆହୁରି ପୁଣି ହାତୀର ମସ୍ତିଷ୍କରେ ସ୍ମୃତି କେନ୍ଦ୍ରଟି ବେଶ୍ ବଡ଼।

ଗୋଟିଏ ବୟସ୍କ ହାତୀର ମସ୍ତିଷ୍କର ଓଜନ ପ୍ରାୟ ୪.୫-୫.୫ କିଲୋଗ୍ରାମ ହୋଇଥାଏ। ମଣିଷର ମସ୍ତିଷ୍କର ଓଜନ ଦେହ ଓଜନର ଶତକଡ଼ା ଦୁଇ



Digitized by srujanika@gmail.com

ଭାଗ ହେଲାବେଳେ ହାତୀର ମାତ୍ର ୦·୧ ଭାଗ ହୁଏ । ଗୋଟିଏ ମଣିଷ ଛୁଆର ମସ୍ତିଷ୍କର ଓଜନ ଜଣେ ବୟସ୍କ ଲୋକର ମସ୍ତିଷ୍କର ଶତକଡ଼ା ପ୍ରାୟ ୨୬ ଭାଗ । କିନ୍ତୁ ହାତୀଛୁଆର ମସ୍ତିଷ୍କ ବୟସ୍କ ହାତୀର ମସ୍ତିଷ୍କର ପ୍ରାୟ ୩୫ ଶତାଂଶ ହୁଏ ।

## ହୃତପିଣ୍ଡ

ହାତୀର ହୃତପିଣ୍ଡଟି ବେଶ୍ ବଡ଼ ଏବଂ ଓଜନରେ ତାହା ୧୨-୨୧ କିଲୋଗ୍ରାମ ହୁଏ । ଏହା ତା'ର ଦେହ ଓଜନର ଶତକଡ଼ା ପ୍ରାୟ ୦·୫ ଭାଗ । ସାଧାରଣତଃ ବଡ଼ ସ୍ତନ୍ୟପାୟୀଙ୍କର ହୃତପିଣ୍ଡ ଓ ଦେହ ଓଜନର ଅନୁପାତ ଏହି ଭଳି ହୋଇଥାଏ । ଜଣେ ୭୦ କିଲୋଗ୍ରାମ ଓଜନର ବୟସ୍କ ମଣିଷର ହୃତପିଣ୍ଡ ପ୍ରାୟ ୩୦୦ ଗ୍ରାମ ହୁଏ ଯାହାକି ତା'ର ଦେହ ଓଜନର ଶତକଡ଼ା ୦·୫ ଭାଗ ।

ହାତୀର ହୃତପିଣ୍ଡକୁ ଦୁଇଟି ଶିରା ଯାଇଛି ଯାହାକି ସ୍ତନ୍ୟପାୟୀ ଜୀବଙ୍କଠାରେ ସାଧାରଣତଃ ଦେଖାଯାଏ ନାହିଁ । ଛୋଟ ସ୍ତନ୍ୟପାୟୀଙ୍କ ତୁଳନାରେ ହାତୀର ଶିରାର କାନ୍ଥଗୁଡ଼ିକ ବେଶ୍ ମୋଟା । ବିଶ୍ୱାସ କରାଯାଏ ଯେ ଉଚ୍ଚ ରକ୍ତଚାପ ଯୋଗୁଁ ଚିପି ହୋଇଯିବାରୁ ମୋଟା ଶିରାଗୁଡ଼ିକୁ ଏହା ରକ୍ଷା କରିଥାଏ । ହାତୀର ଧମନୀଗୁଡ଼ିକ ମଧ୍ୟ ଖୁବ୍ ବଡ଼ । ତା'ର ମୁଣ୍ଡକୁ ଯାଉଥିବା ଧମନୀର ମୋଟେଇ ପ୍ରାୟ ୨ ସେ.ମି. । ଧମନୀଗୁଡ଼ିକ ମିଶୁଥିବା ଜାଗାରେ ତନ୍ତୁର ବଳୟମାନ ରହି ତାହାକୁ ମଜବୁତ କରାଏ । ବୟସ ବଢ଼ିବା ସହିତ ଏଗୁଡ଼ିକ ପଥୁରିଆ ହୋଇଯାଏ । ଏଥି ଯୋଗୁ ଧମନୀରେ ରକ୍ତ ପ୍ରବାହ ବାଧା ପାଇପାରେ ଏବଂ ହୃଦରୋଗ ହୋଇପାରେ ।

ହାତୀ ମିନିଟକୁ ୧୨ ଥର ନିଶ୍ୱାସ ନିଏ ଏବଂ ତା'ର ହୃତପିଣ୍ଡ ପ୍ରାୟ ୪୦ ଥର ଧକ ଧକ ହୁଏ । ହାତୀର ଦେହର ସାଧାରଣ ତାପମାତ୍ରା ପ୍ରାୟ ୩୯·୯ ଡିଗ୍ରୀ ସେ. ହୋଇଥାଏ ।

## ହାତୀର ବିବର୍ତ୍ତନ

ଆଜି ବଞ୍ଚିଥିବା ହାତୀର ଦୁଇଟି ପ୍ରଜାତି - *ଏଲିଫସ୍ ଓ ଲୋକ୍ସୋଡୋଣ୍ଟା* - ହେଉଛନ୍ତି ଗୋଟିଏ ବିସ୍ମୟକର ବଂଶର ଶେଷ ଶାଖା । ଏହାର ଅନ୍ୟ ସବୁ ଶାଖା ମରିଗଲେଣି । ଗୋଟିଏ ବଡ଼ ବର୍ଗ *ପ୍ରୋବୋସିଡି* ବା ଶୁଣ୍ଢବାଲା ଜୀବଙ୍କର ଗୋଟିଏ ଅଂଶ ହେଉଛି *ଏଲିଫାଣ୍ଟିଡି* ବଂଶ । ପ୍ରୋବୋସିଡ଼ି ବର୍ଗରେ ୨୬ଟି ଜୀବଜାତି ରହିଛନ୍ତି ।

ପ୍ରାୟ ପାଞ୍ଚ କୋଟି ବର୍ଷର ବିବର୍ତ୍ତନ ଫଳରେ ସବୁ ଶୁଣ୍ଢ ଥିବା ଜୀବଙ୍କର ପୂର୍ବପୁରୁଷ *ମୋରିଥେରିଅମ୍* ନାମକ ଛୋଟ ଘୁଷୁରୀ ଭଳି ଜୀବଠାରୁ ଆଜିର ହାତୀ ସୃଷ୍ଟି ହୋଇଛି । ଏହି ସମୟ ଭିତରେ ଅନେକ ବଂଶ ସୃଷ୍ଟି ହୋଇ ଲୋପ ପାଇଗଲେଣି । ସବୁଠାରୁ ଆଗ *ଉଲି ମାମଥ* ଲୋପ ପାଇଥିଲା । ଏଗୁଡ଼ିକ ପ୍ରାୟ ଏସୀୟ ହାତୀ ଆକାରର (କାନ୍ଧ ଉଚ୍ଚତା ୩ମିଟର) ଥିଲେ ଏବଂ ତାଙ୍କ ଦେହ ସାରା ଗାଢ଼ ରଙ୍ଗର ଲୁମ ଭରି ହୋଇଥିଲା । ସେମାନଙ୍କ ଦାନ୍ତ ଦୁଇଟି ବହୁତ ବଡ଼, ପ୍ରାୟ ୪ମିଟର ଲମ୍ବା, ଥିଲା । ବରଫ ତଳେ ପୋତି ହୋଇ ରହିଥିବା ଡାଳପତ୍ର ଖୋଳି ବାହାର କରିବା ପାଇଁ ଏଗୁଡ଼ିକ କାମରେ ଲାଗୁଥିଲା ।

### ପ୍ରୋବୋସିଡ଼ିରେ ବିବର୍ତ୍ତନ

ପ୍ରୋବୋସିଡି ବର୍ଗର ସବୁଠାରୁ ବଡ଼ ପରିବର୍ତ୍ତନ ହେଉଛି ଆକାର ଓ ଦାନ୍ତ ବଢ଼ିବା ଏବଂ ଶୁଣ୍ଢ ଲମ୍ବିବା । ଅନ୍ୟ ପରିବର୍ତ୍ତନଗୁଡ଼ିକ ହେଉଛି:

- ଆକାରରେ ବୃଦ୍ଧି । ଅଳ୍ପ କେତେକ ପ୍ରଥମ ଜୀବଙ୍କୁ ଛାଡ଼ିଦେଲେ ଅନ୍ୟ ପ୍ରୋବୋସିଡ଼ି ବର୍ଗର ଜୀବମାନେ ଆକାରରେ ବହୁତ ବଡ଼ ।
- ଗୋଡ଼ର ଲମ୍ବା ହାଡ଼ ଏବଂ କମ୍ ଉଚ୍ଚତାର ଚଉଡ଼ା ପାଦର ବିକାଶ । ବହୁତ ବଡ଼ ସ୍ତନ୍ୟପାୟୀ ଜୀବଙ୍କର ଏହା ଏକ ସାଧାରଣ ଗୁଣ ।
- ଖପୁରୀ ଅତି ବଡ଼ ହେବା । ବିଶେଷ କରି ପବନ କୋଷ ସବୁ ବଢ଼ି କପାଳର ଆକାର ବଡ଼ ହେବା ।
- ବେକ ଛୋଟ ହେବା । ଖପୁରୀ ଓ ମୁଣ୍ଡର ଆକାର ବହୁତ ବଡ଼ ଓ ଓଜନିଆ ହୋଇଯିବାରୁ ମୁଣ୍ଡ ଏବଂ ଦେହ ଭିତରେ ଦୂରତା କମାଇବା ପାଇଁ ବେକର ଆକାର ଛୋଟ ହୋଇଗଲା ।
- ତଳ ଓଠ ଲମ୍ବିଯିବା । ପ୍ରଥମ ଅବସ୍ଥାରେ ପ୍ରୋବୋସିଡିଙ୍କର ମାଢ଼ି ବଢ଼ିଲା । କିନ୍ତୁ ପରେ ଏହି ଶ୍ରେଣୀର ଅନେକ ଜୀବଙ୍କର ତଳ ମାଢ଼ି ପୁଣି ଛୋଟ ହୋଇଗଲା ।
- ଶୁଣ୍ଢର ବିକାଶ । ତଳମାଢ଼ି ପ୍ରଥମେ ଲମ୍ବିବା ଏବଂ ପରେ ଛୋଟ ହେବା ସହିତ ଉପର ଓଠ ଓ ନାକପୁଡ଼ା ମଧ୍ୟ ଲମ୍ବିଗଲା । ଧୀର ଧୀରେ ନାକପୁଡ଼ା ଆହୁରି ଲମ୍ବିଯାଇ ଶୁଣ୍ଢ ହୋଇଗଲା ।
- ମାଢ଼ି ଛୋଟ ହୋଇଯିବା ଏବଂ ମୁଣ୍ଡର ଭାରକେନ୍ଦ୍ର ପଛକୁ ଘୁଞ୍ଚିଯିବା ।
- ଆଗକୁ/ଭୂସମାନ୍ତର ଭାବରେ କଳଦାନ୍ତ ଘୁଞ୍ଚିବା ।
- ଦାନ୍ତର ସଂଖ୍ୟା କମିଯିବା । ମୋରିଥେରିଅମଠାରୁ ଦାନ୍ତର ସଂଖ୍ୟା କମିବା ଆରମ୍ଭ ହୋଇଥିଲା । ପ୍ରୋବୋସିଡ଼ିର ପୁରା ବିବର୍ତ୍ତନ ଭିତରେ ଦାନ୍ତର ସଂଖ୍ୟା କମିଚାଲିଛି ।
- ଦ୍ୱିତୀୟ କର୍ତ୍ତନ ଦାନ୍ତ ଲମ୍ବିଯାଇ ହାତୀଦାନ୍ତ ଗଢ଼ିବା ।
- କଳଦାନ୍ତର ବୃଦ୍ଧି ଏବଂ ସ୍ୱତନ୍ତ୍ରତା । ଏଥିରେ ଭିତର ସ୍ତର ଅଧିକ ହେବାରୁ ଏନାମେଲ ସ୍ତର ପତଳା ହୋଇଯିବା ।



ଉତ୍ସ: ଏଲ୍ଟ୍ରିଙ୍ଗହାମ୍ ଏସ୍. କେ. (କନ୍ସଲ୍ଟାଣ୍ଟ), *ଦି ଇଲଷ୍ଟ୍ରେଟେଡ୍ ଏନ୍ସାଇକ୍ଲୋପିଡ଼ିଆ ଅଫ୍ ଏଲିଫାଣ୍ଟସ୍*, ସାଲାମାଣ୍ଡର ବୁକ୍ସ ଲିମିଟେଡ୍, ୟୁନାଇଟେଡ୍ କିଙ୍ଗଡମ୍, ୧୯୯୭



Digitized by srujanika@gmail.com

କହିଦିଅ ଯେ ଗୋଟିକ ପରେ ଗୋଟିଏ କରି ଉଭୟ ଦଳ ଜାମଟି କରିବେ ଏବଂ ଏହା ହେଉଛି ଏକ ପ୍ରତିଯୋଗିତା ଯାହା ଉଭୟ ବେଗ ଓ ଠିକ୍ ଉତ୍ତର ଉପରେ ନିର୍ଭର କରେ । କଳାପଟାରେ କ ଓ ଖ ଦୁଇଟି ସ୍ତମ୍ଭ କର ।

ଗୋଟିଏ ପାତ୍ରରେ ସବୁତକ ହାତୀ କାର୍ଡ଼ ରଖ । କ ଦଳର ପ୍ରତି ପିଲାଙ୍କୁ ପାତ୍ରରୁ ଗୋଟିଏ ଲେଖାଏଁ କାର୍ଡ଼ ନେବାକୁ କୁହ । ତାହା ସେମାନେ ସାବଧାନ ହୋଇ ପଢ଼ିବେ ଏବଂ ଠିକ କରିବେ ଯେ ସେଥିରେ ଥିବା ତଥ୍ୟ ଏସୀୟ ନା ଆଫ୍ରିକୀୟ ହାତୀର । ଏଥିପାଇଁ ପିଲାମାନେ ଏସୀୟ ଓ ଆଫ୍ରିକୀୟ ହାତୀଙ୍କ ତଫାତ ଚାର୍ଟ ବ୍ୟବହାର କରିପାରିବେ । ପିଲାମାନେ ନିଜ ନିଜର କାର୍ଡ କେଉଁ ହାତୀର ସ୍ଥିର କରିସାରିବା ପରେ ଠିକ୍ କୋଣକୁ ଦୌଡ଼ି ଚାଲିଯିବେ । ଏଥିପାଇଁ କ ଦଳକୁ କେତେ ସମୟ ଲାଗିଲା ତାକୁ କଳାପଟାରେ ଲେଖିରଖ ।

ପିଲାମାନେ ଏସୀୟ ବା ଆଫ୍ରିକୀୟ ହାତୀ କୋଣରେ ପହଞ୍ଚିବା ପରେ ସେମାନେ ଧରିଥିବା କାର୍ଡ଼ ଦେଖି ନିଶ୍ଚିତ କରବାକୁ ହେବ ଯେ ସେମାନେ ଠିକ୍ କୋଣରେ ଠିଆ ହୋଇଛନ୍ତି । ଏବେ କଳାପଟାରେ ସମୟ ପାଖକୁ କ ଦଳର ପିଲାମାନେ କେତେ ଭୁଲ କରିଛନ୍ତି ଟିପିରଖ ।

ଏହାପରେ କାର୍ଡ଼ଗୁଡ଼ିକ ମିଶାଇଦେଇ ଖ ଦଳର ପିଲାମାନଙ୍କୁ ମଧ୍ୟ ସେହିପରି ଖେଳିବାକୁ କୁହ । ଦୁଇ କୋଣରେ ବାଣ୍ଟିହେବା ପାଇଁ ତାଙ୍କୁ କେତେ ସମୟ ଲାଗୁଛି ଏବଂ ତାଙ୍କର କେତେ ଜଣ ଭୁଲ କୋଣକୁ ଗଲେ ତା ମଧ୍ୟ କଳାପଟାରେ ଲେଖିରଖ ।

ଯେଉଁ ଦଳ କମ ସମୟ ଭିତରେ ଏବଂ କମ୍ ଭୁଲ କରି ଦୁଇ କୋଣରେ ପହଞ୍ଚିଥିବେ ସେମାନେ ଜିତିବେ ।

## ସଂପ୍ରସାରଣ/ପରିବର୍ତ୍ତନ

ହାତୀ କୋଣ କରିବା ବଦଳରେ ପିଲାମାନେ ବଡ଼ ବଡ଼ ଏସୀୟ ଏବଂ ଆଫ୍ରିକୀୟ ହାତୀ କାଗଜରୁ କାଟିପାରେବେ ବା ଏସିଆ ଏବଂ ଆଫ୍ରିକାର ମାନଚିତ୍ର ବଡ଼ କରି ଆଙ୍କିପାରିବେ ଏବଂ କାନ୍ଥରେ ଲଗାଇ ଦେଇପାରିବେ । ସେମାନେ କାଗଜର ହାତୀ ବା ମାନଚିତ୍ରକୁ ସେମାନଙ୍କର କୋଣ ଭାବରେ ବ୍ୟବହାର କରିପାରିବେ ।

### ଏସୀୟ ଏବଂ ଆଫ୍ରିକୀୟ ହାତୀ: ତଫାତ୍

| ଗୁଣାବଳୀ | ଏସୀୟ ହାତୀ | ଆଫ୍ରିକୀୟ ହାତୀ |
|---|---|---|
| ପ୍ରଜାତି | ଏଲିଫସ୍ | ଲୋକ୍ସୋଡୋଣ୍ଟା |
| ଜାତି | ମାକ୍ସିମସ୍ | ଆଫ୍ରିକାନା ଓ ସାଇକ୍ଲୋଟିସ୍ |
| କାନ | ସାନ, କାନ୍ଧକୁ ଘୋଡ଼ାଏ ନାହିଁ | ବଡ଼, କାନ୍ଧକୁ ଘୋଡ଼ାଇ ଦିଏ |
| ହାରାହାରି ଉଚ୍ଚତା | ଅଣ୍ଡିରା ୩·୨ ମି·, ମାଈ ୨·୫ ମି· | ଅଣ୍ଡିରା ୪ ମି, ମାଈ ୨-୩ ମି· |
| ହାରାହାରି ଓଜନ | ଅଣ୍ଡିରା ୫୪୦୦ କି·ଗ୍ରା·, ମାଈ ୪୦୦୦ କି·ଗ୍ରା· | ଅଣ୍ଡିରା ୬୦୦୦ କି·ଗ୍ରା·, ମାଈ ୩୦୦୦ କି·ଗ୍ରା· |
| ଶୁଣ୍ଢ | ଅଳ୍ପ ସଂଖ୍ୟକ ବଳା, କମ୍ ନମନୀୟ, ଶୁଣ୍ଢ ଅଗରେ ଗୋଟିଏ ଅଙ୍ଗୁଳି ଥାଏ | ବେଶି ସଂଖ୍ୟାରେ ବଳା, ବେଶି ନମନୀୟ, ଶୁଣ୍ଢ ଅଗରେ ଦୁଇଟି ଅଙ୍ଗୁଳି ଥାଏ |
| କପାଳ | ଦୁଇଟି କୁଦ | କାନ୍ଧରୁ ଗଡ଼ିଆସିଥାଏ |
| ସବୁଠାରୁ ଉଚ୍ଚ ଅଞ୍ଚଳ | ମୁଣ୍ଡ ଉପର | କାନ୍ଧ ଉପର |
| ପିଠିର ଆକାର | ଉତ୍ତଳ | ଅବତଳ |
| ପଞ୍ଜରା ହାଡ଼ ସଂଖ୍ୟା | କୋଡ଼ିଏ ଯୋଡ଼ା ପାଏଁ | ଏକୋଇଶ ଯୋଡ଼ା ପାଏଁ |
| ଆଗ ଗୋଡ଼ରେ ନଖ ସଂଖ୍ୟା | ପାଞ୍ଚ | ଚାରି |
| ଚମଡ଼ା | ପାଲିସ | ଢିଲା |

ଉତ୍ସ: ଏଲଟ୍ରିଙ୍ଗହାମ୍ ଏସ୍·କେ· (କନ୍‌ସଲ୍‌ଟାଣ୍ଟ)· ଦି ଇଲଷ୍ଟ୍ରେଟେଡ୍ ଏନ୍‌ସାଇକ୍ଲୋପିଡ଼ିଆ ଅଫ୍ ଏଲିଫାଣ୍ଟସ୍, ସାଲାମାଣ୍ଡର ବୁକ୍‌ସ୍, ୟୁନାଇଟେଡ୍ କିଙ୍ଗ୍‌ଡମ୍, ୧୯୯୭·



ଏସୀୟ ହାତୀ



ଆଫ୍ରିକୀୟ ହାତୀ



Digitized by srujanika@gmail.com

# ମୋର ସ୍ଥାନ କେଉଁଠି ?

ଏସୀୟ ହାତୀ ଓ ଆଫ୍ରିକୀୟ ହାତୀ ଭିତରେ ଥିବା ଫରକ ଜାଣିବା ପାଇଁ ପିଲାମାନେ ଗୋଟିଏ ଖେଳ ଖେଳିପାରିବେ ।

| | |
|---|---|
| *ଉଦ୍ଦେଶ୍ୟ* | ଏସୀୟ ଏବଂ ଆଫ୍ରିକୀୟ ହାତୀ ଭିତରେ ଥିବା ଫରକ ଜାଣିବା |
| *ସ୍ତର* | ପ୍ରାଥମିକ, ମାଧ୍ୟମିକ |
| *ବିଷୟ* | ବିଜ୍ଞାନ |
| *ଦଳର ଆକାର* | ପୂରା ଶ୍ରେଣୀରେ ଦୁଇଟି ଦଳ |
| *ସ୍ଥାନ* | ଶ୍ରେଣୀ ଗୃହର ବାହାରେ |
| *ସମୟ ଅବଧି* | ୩୦ ମିନିଟ |
| *ସାମଗ୍ରୀ* | ହାତୀ କାର୍ଡ଼, ଏସୀୟ ଏବଂ ଆଫ୍ରିକୀୟ ହାତୀର ଫରକର ସାରଣୀ, ଛୋଟ ବୋର୍ଡ଼ |

ବର୍ତ୍ତମାନ ଦୁଇଟି ପ୍ରଜାତିର ହାତୀ ଦେଖାଯାଉଛନ୍ତି । ଏସୀୟ ହାତୀ ହେଉଛି *ଏଲିଫସ୍* ପ୍ରଜାତିର ଓ *ମାକ୍ସିମସ୍* ଜାତିର । *ଲୋକ୍ସୋଡୋଣ୍ଟା* ପ୍ରଜାତିର ଆଫ୍ରିକୀୟ ହାତୀଙ୍କର ଦୁଇଟି ଜାତି ହେଉଛି *ଆଫ୍ରିକାନା* ଓ *ସାଇକ୍ଲୋଟିସ୍* । ଆଫ୍ରିକୀୟ ଅଣ୍ଡିରା ହାତୀ ସ୍ଥଳଭାଗର ଜୀବନ୍ତ ପ୍ରାଣୀଙ୍କ ଭିତରେ ସବୁଠାରୁ ବଡ଼ । ଠିଆ ହେଲେ ତା'ର ଉଚ୍ଚତା ୪ ମିଟର ହୁଏ । ତା ତୁଳନାରେ ଏସୀୟ ଅଣ୍ଡିରା ହାତୀର ଉଚ୍ଚତା ପ୍ରାୟ ୩.୨ ମିଟର ହୁଏ ।

ଦୁଇ ପ୍ରଜାତିର ହାତୀଙ୍କ କଙ୍କାଳ ଗଠନ ବେଶ୍ ଅଲଗା । ଏସୀୟ ହାତୀର ଥାଏ ୧୯ ବା ୨୦ ଯୋଡ଼ା ପଞ୍ଜରା ହାଡ଼, କିନ୍ତୁ ଆଫ୍ରିକୀୟ ହାତୀର ପଞ୍ଜରାରେ ଥାଏ ୨୧ ଯୋଡ଼ା ହାଡ଼ ।

ଏସୀୟ ଏବଂ ଆଫ୍ରିକୀୟ ହାତୀ ଭିତରେ ଗୋଟିଏ ସ୍ପଷ୍ଟ ଫରକ ହେଉଛି କାନର ଆକାର । ଆଫ୍ରିକୀୟ ହାତୀର କାନ ଏସୀୟ ହାତୀର କାନ ଠାରୁ ପ୍ରାୟ ଚାରିଗୁଣ ବଡ଼ । ଆବାସସ୍ଥଳୀରେ ଗଛଲତାର ଘନତା ଅନୁସାରେ ହାତୀର କାନ ସାନ ବଡ଼ ହୋଇଥାଏ । ବଡ଼ ଗଛ ନଥିବା ତୃଣଭୂମି ଅଞ୍ଚଳରେ ହାତୀର କାନ ବଡ଼ ହୁଏ, କାରଣ ସେଠାରେ ହାତୀର ଦେହରୁ ବେଶି ପରିମାଣର ତାପ ଛାଡ଼ିବାକୁ ହୋଇଥାଏ ।

ଉଚ୍ଚତା, ଓଜନ, ଦେହର ଆକାର, ଶୁଣ୍ଢ ଆଗରେ ଥିବା ଅଙ୍ଗୁଳି (ଆଙ୍ଗୁଠି ଭଳି ଗଠନ)ରେ ମଧ୍ୟ ହାତୀ ଦୁଇଟି ବହୁତ ଅଲଗା । (ଏସୀୟ ଓ ଆଫ୍ରିକୀୟ ହାତୀଙ୍କ ଭିତରେ ଫରକ ବିଷୟରେ ଅଧିକ ଜାଣିବା ପାଇଁ ପୃଷ୍ଠା ୭ ଦେଖ)

## ଆରମ୍ଭ କରିବା ଆଗରୁ

କାମ ଆରମ୍ଭ କରିବା ଆଗରୁ ଏସୀୟ ଏବଂ ଆଫ୍ରିକୀୟ ହାତୀଙ୍କ ଭିତରେ ଥିବା ଫରକକୁ ନେଇ ଅଲଗା ଅଲଗା କାର୍ଡ଼ ତିଆରି କର । ଏଥିପାଇଁ ଏସୀୟ ଏବଂ ଆଫ୍ରିକୀୟ ହାତୀ ଭିତରେ ତଫାତର ସାରଣୀ ବ୍ୟବହାର କରିପାର । ପ୍ରତି ପିଲା ପାଇଁ ଗୋଟିଏ ଲେଖାଏଁ କାର୍ଡ଼ ତିଆରି ହେବା ଦରକାର । ଅନେକ ପିଲାଙ୍କ କାର୍ଡ଼ରେ ଏକା ତଥ୍ୟ ରହିପାରେ ।



## ହାତୀ କାର୍ଡ଼ର ନମୁନା

### ଏସୀୟ ହାତୀ

କାର୍ଡ଼ ୧ - ମୋ ଶୁଣ୍ଢ ଅନମନୀୟ

କାର୍ଡ଼ ୨ - ମୋ ଶୁଣ୍ଢ ଅଗରେ ଗୋଟିଏ ଅଙ୍ଗୁଳି ରହିଛି

କାର୍ଡ଼ ୩ - ମୋ ଶୁଣ୍ଢରେ ଅଳ୍ପ ବଳା ରହିଛି

### ଆଫ୍ରିକୀୟ ହାତୀ

କାର୍ଡ଼ ୧ - ମୋ ଶୁଣ୍ଢ ବେଶ୍ ନମନୀୟ

କାର୍ଡ଼ ୨ - ମୋ ଶୁଣ୍ଢ ଅଗରେ ଦୁଇଟି ଅଙ୍ଗୁଳି ରହିଛି

କାର୍ଡ଼ ୩ - ମୋ ଶୁଣ୍ଢରେ ବହୁତ ବଳା ରହିଛି

## ପରଖର ଧାରା

### ଭାଗ କ

ପିଲାମାନଙ୍କ ସହ ଏସୀୟ ହାତୀ ଏବଂ ଆଫ୍ରିକୀୟ ହାତୀ ଭିତରେ ଥିବା ତଫାତ ବିଷୟରେ ଆଲୋଚନାରୁ କାମ ଆରମ୍ଭ କରାଯାଇ ପାରିବ । ପିଲାଙ୍କ ସୁବିଧା ପାଇଁ ଏସୀୟ ଏବଂ ଆଫ୍ରିକୀୟ ହାତୀର ତଫାତ ଦେଖାଇ ଗୋଟିଏ ଚାର୍ଟ ତିଆରି କରାଯାଇପାରେ ବା କଳାପଟାରେ ଏଗୁଡ଼ିକ ଲେଖି ଦିଆଯାଇପାରେ । ପୃଷ୍ଠା ୭ରେ ଥିବା ସାରଣୀର ନକଲ ପିଲାମାନଙ୍କ ଖେଳିବା ଜାଗାରେ ଲଗାଇ ଦିଆଯାଇପାରେ ।

### ଭାଗ ଖ

ଏହି ଭାଗଟି ଶ୍ରେଣୀ ବାହାରେ ଗୋଟିଏ ଖୋଲା ଜାଗାରେ ଖେଳାଗଲେ ଭଲ ହେବ । ପଡ଼ିଆର ଗୋଟିଏ କୋଣର ନାଁ ଏସୀୟ ହାତୀ କୋଣ ରଖ ଏବଂ ଅନ୍ୟ କୋଣକୁ ଆଫ୍ରିକୀୟ ହାତୀ କୋଣ କର ।

ପୂରା ଶ୍ରେଣୀକୁ କ ଓ ଖ ଦଳ ଭାବରେ ସମାନ ଦୁଇ ଭାଗ କର । ପିଲାଙ୍କୁ



Digitized by srujanika@gmail.com

# କାଗଜର ସ୍ଥୂଳଚର୍ମା

ହାତୀର ଦେହର ବିଭିନ୍ନ ଅଂଶ ଓ ସେଗୁଡ଼ିକର କାମ ବିଷୟରେ ଜାଣିବା

| | |
|---|---|
| ଉଦ୍ଦେଶ୍ୟ | ପିଲାଙ୍କୁ ସାହାଯ୍ୟ କରିବା -<br>• ହାତୀର ଦେହର ଆକାର ସହ ମଣିଷ ଦେହର ଆକାର ତୁଳନା କରିବାରେ<br>• ହାତୀର ଶୁଣ୍ଢ, କାନ, ଲମ୍ବାଦାନ୍ତ ଆଦିର ବ୍ୟବହାର ବିଷୟରେ ବୁଝିବାରେ |
| ସ୍ତର | ପ୍ରାଥମିକ |
| ବିଷୟ | ବିଜ୍ଞାନ, କଳା ଏବଂ ହସ୍ତକର୍ମ |
| ଦଳର ଆକାର | ପାଞ୍ଚଜଣିଆ ଦଳ |
| ସ୍ଥାନ | ଶ୍ରେଣୀଗୃହ ଭିତରେ |
| ସମୟ ଅବଧି | ୪୫ ମିନିଟ |
| ସାମଗ୍ରୀ | ଖବରକାଗଜ, ଡ୍ରଇଂପିନ୍, ଟେପ୍, କଇଁଚି, ତୁଳି, ମାର୍କର କଲମ, ହାତୀ ଚିତ୍ର, ଅଠା |

ପିଲାମାନଙ୍କୁ ଆଖି ବନ୍ଦ କରି ଗୋଟିଏ ହାତୀ ବିଷୟରେ ଭାବିବାକୁ କୁହ । ସେମାନେ କେବେ ଭାବିଛନ୍ତି କି ହାତୀର ଏତେ ବଡ଼ କାନ କାହିଁକି ଅଛି । ଗୋଟିଏ ଲମ୍ବା ଶୁଣ୍ଢ, ବିରାଟ ଦେହ, ଓଜନିଆ ଗୋଡ଼ ଏବଂ ସୁନ୍ଦର ଲମ୍ବା ଦାନ୍ତ ତା'ର କାହିଁକି ରହିଛି ? ତା'ର ଏତେ ଖାଦ୍ୟ କାହିଁକି ଦରକାର ହୁଏ ଏବଂ ଯାହା ସେ ଖାଏ ସେସବୁ ଯାଏ କୁଆଡ଼େ ?

ହାତୀ ଦେହର ପ୍ରତିଟି ଅଙ୍ଗର ସ୍ୱତନ୍ତ୍ର କାମ ରହିଛି ଏବଂ ହଜାର ହଜାର ବର୍ଷ ଧରି ଏଗୁଡ଼ିକ ବିକଶିତ ହୋଇଛି । ଉଦାହରଣ ସ୍ୱରୂପ, ହାତୀର କାନ କେବଳ ଶୁଣିବା ଅଙ୍ଗଠାରୁ ବେଶ୍ ଅଧିକ କାମ କରେ । ତାପ ବିକିରଣ ଯନ୍ତ୍ର ଭଳି ହାତୀର ଦେହକୁ ଥଣ୍ଡା କରିବାରେ ସେ କାନ ସାହାଯ୍ୟ କରେ । ଦେଖାଯାଇଛି ଯେ ଗରମ ଯେତେ ବଢ଼େ ହାତୀ ତା'ର କାନକୁ ସେତେ ଜୋରରେ ହଲାଏ । ହଲୁଥିବା କାନ ପଙ୍ଖା ଭଳି କାମକରେ ଓ ଦେହର ବାହାର ଅଂଶକୁ ଥଣ୍ଡା କରିବାରେ ସାହାଯ୍ୟ କରେ । ଆହୁରି ମଧ୍ୟ କାନରେ ଥିବା ରକ୍ତନଳୀକୁ ଛୁଉଁଥିବା ପବନକୁ ବି ଏହା ଥଣ୍ଡା କରେ ।

ସେହିପରି କେବଳ ନାକ ଓ ଉପର ଓଠ ଲମ୍ବିଯାଇ ତା'ର ଶୁଣ୍ଢଟି ହୋଇନାହିଁ । ମଣିଷର ହାତ ଭଳି ଏହା ଅନେକ କାମ କରିପାରେ । ଚାରିଆଡ଼ୁ ବାସ୍ନା ବାରି ଖାଦ୍ୟ ଖୋଜିବାରେ, ପାଣି ପିଇବାରେ ଏବଂ ନିଜ ଦେହ ଉପରେ ପାଣି ଛିଞ୍ଚିବାରେ ଏହା ହାତୀକୁ ସାହାଯ୍ୟ କରେ । ଶୁଣ୍ଢଟି ଏତେ ଦକ୍ଷ ଯେ ଆଖିରେ ଅତି ଛୋଟ ଜିନିଷ କିଛି ପଡ଼ିଗଲେ ହାତୀ ତା'ର ଶୁଣ୍ଢରେ ତାହା କାଢ଼ିପାରେ ।

ହାତୀ ଗୋଟିଏ ବିରାଟକାୟ ଜୀବ । ଏତେ ବଡ଼ ଆକାରର ସୁବିଧା ହେଉଛି ଯେ ଶତ୍ରୁ ଏତେ ସହଜରେ ତାକୁ ମାରିପାରିବ ନାହିଁ । ଆହୁରି ମଧ୍ୟ ହାତୀର ଏତେ ବଡ଼ ଦେହ ଓ କୁଶଳୀ ଶୁଣ୍ଢ ନଥିଲେ ସେ ବେଶି ଉଚ୍ଚରୁ ଖାଦ୍ୟ ସଂଗ୍ରହ କରିପାରନ୍ତା ନାହିଁ । ତା'ର ଦେହର ଏତେ ବଡ଼ ଆକାର ଯୋଗୁ ସେ ଗଛ ଉପାଡ଼ି ତଳେ ପକାଇ ପାରେ । କିନ୍ତୁ ଏତେ ବଡ଼ ଦେହ ଯୋଗୁଁ ଅସୁବିଧା ବି ରହିଛି । ଏତେ ବଡ଼ ଦେହକୁ ଶକ୍ତି ଯୋଗାଇବା ପାଇଁ ତା'ର ଅଧିକାଂଶ ସମୟ, ଦିନକୁ ୧୪ରୁ ୧୮ଘଣ୍ଟା, କେବଳ ଖାଇବାରେ ଯାଏ ।

ହାତୀର ପାଦ ଏପରି ଗଢ଼ା ଯେ ତା'ର ଓଜନ ଗୋଡ଼ ଆଙ୍ଗୁଠିର ଅଗରେ ଏବଂ ତନ୍ତୁଯୁକ୍ତ ଗୋଇଠି ଉପରେ ରହେ । ପାଦର ବିଶେଷ ଗଠନ ଯୋଗୁ ଚାପ ପଡ଼ିଲେ ତାହା ମେଲାଇ ହୋଇଯାଇ ବେଶି ଓଜନ ସମ୍ଭାଳି ପାରେ ।

ହାତୀର ଲମ୍ବାଦାନ୍ତ ଦୁଇଟି କେବଳ ପ୍ରଦର୍ଶନ ବା ଦେହ ସଜାଇବା ପାଇଁ ନୁହେଁ । ଏହା ଅନେକ ଗୁରୁତ୍ୱପୂର୍ଣ୍ଣ କାମ କରିଥାଏ । ଏଗୁଡ଼ିକ ହାତୀର ଆତ୍ମରକ୍ଷାର ହତିଆର ହୁଏ । ଏଗୁଡ଼ିକ ଦରକାରୀ ହୋଇଥିଲେ ବି ହାତୀ ତା ବିନା ବଞ୍ଚିପାରେ । ଏସୀୟ ହାତୀଙ୍କ ଭିତରେ ମାଈ ହାତୀର ଏହି ଦାନ୍ତ ନଥାଏ । ଏପରିକି କିଛି ଅଣ୍ଡିରା ଏସୀୟ ହାତୀଙ୍କର ବି ଏହି ଲମ୍ବାଦାନ୍ତ ନଥାଏ । ଏମାନଙ୍କୁ ମାଖ୍ନା କୁହାଯାଏ । ହାତୀର ଏହି ଦାନ୍ତ ବର୍ଷକୁ ପ୍ରାୟ ୧୭ ସେ.ମି. ହାରରେ ଜୀବନ ସାରା ବଢ଼େ । ଦାନ୍ତର ବଢ଼ିବା ଖାଦ୍ୟରେ ଥିବା ଖଣିଜ ପଦାର୍ଥ ଉପରେ ନିର୍ଭର କରେ । ଗୋଟିଏ ସର୍ବେକ୍ଷଣରୁ ଜଣାଯାଇଛି ଯେ ଦାନ୍ତର ଆକାର ସହ ସେ ଅଞ୍ଚଳରେ ଥିବା ପ୍ରାକୃତିକ ପରଜୀବୀଙ୍କର ସମ୍ପର୍କ ରହିଛି । ପରଜୀବୀ ସଂଖ୍ୟା କମ୍ ହେଲେ ଦାନ୍ତର ଆକାର ବଡ଼ ହେବ ।

## ଆରମ୍ଭ କରିବା ଆଗରୁ

୧୦-୧୫ଟି ପୁରୁଣା ଖବର କାଗଜ, କଇଁଚି ଏବଂ ଅଠା ସଂଗ୍ରହ କର । ଏସବୁ କାଗଜ ଜନ୍ତୁ ତିଆରି କରିବାରେ ଲାଗିବ । କାମ ଆରମ୍ଭ କରିବାର ଆଗ ଦିନ ଚିତ୍ରର ମାପ ଅନୁସାରେ ଗ୍ରାଫ୍ କାଗଜରେ ବିଭିନ୍ନ ଅଂଶଗୁଡ଼ିକ ଆଙ୍କିଦିଅ ।

ପୂରା ଶ୍ରେଣୀକୁ ପାଞ୍ଚ ପାଞ୍ଚ ଜଣିଆ ଦଳରେ ଭାଗ କରିଦିଅ । ପିଲାଙ୍କୁ କହିଦିଅ ଯେ ଖଣ୍ଡଗୁଡ଼ିକ ମିଶି ଗୋଟିଏ ପ୍ରକୃତ ଆକାରର ଅଣ୍ଡିରା ଏସୀୟ ହାତୀ ତିଆରି କରିବାରେ ସାହାଯ୍ୟ କରିବ । ପ୍ରତିଦଳ ଗୋଟିଏ ଗୋଟିଏ ଖଣ୍ଡକୁ ମାପ ଅନୁସାରେ ଆଙ୍କିବେ, କାଟିବେ, ରଙ୍ଗ ଦେବେ । ଏଠାରେ ହାତୀର ଗୋଟିଏ ବାହ୍ୟରେଖା ହିଁ ତିଆରି ହେବ । ତେଣୁ ପିଲାମାନେ କେବଳ ଗୋଟିଏ କରି ଦାନ୍ତ, କାନ, ଆଗ ଗୋଡ଼ ଓ ପଛ ଗୋଡ଼ ତିଆରି କରିବା ଦରକାର । ଏଗୁଡ଼ିକୁ ଯୋଡ଼ିଦେଲେ ଗୋଟିଏ ପ୍ରକୃତ ଆକାରର ହାତୀର ବାହ୍ୟରେଖା ମିଳିଯିବ ।



Digitized by srujanika@gmail.com

# ପରଖର ଧାରା

### ଭାଗ କ

ପ୍ରତିଦଳକୁ ଗୋଟିଏ ଲେଖାଏଁ ଅଂଶ ବାଣ୍ଟିଦିଅ । ମାପ ଅନୁସାରେ ଅଂଶଗୁଡ଼ିକ କାଗଜରେ ଆଙ୍କିକରି କାଟିବା ପାଇଁ ପ୍ରତି ଦଳକୁ କହିଦିଅ । ହାତୀର ମାପ ବହୁତ ବଡ଼ ହୋଇଥିବାରୁ କୌଣସି ନିର୍ଦ୍ଦିଷ୍ଟ ଅଙ୍ଗ କାଟିବା ପାଇଁ ପିଲାମାନଙ୍କୁ ଦୁଇଟି ବା ଅଧିକା ଖବରକାଗଜ ଯୋଡ଼ିବାକୁ ହେବ । ପିଲାମାନେ କାଟିସାରି ଅଠା ଦେଇ ଯୋଡ଼ିବା ପରେ ସେଗୁଡ଼ିକୁ ରଙ୍ଗ କରିପାରିବେ ।

ଏବେ ଶୁଣ୍ଢ, ଲାଞ୍ଜ, ଦାନ୍ତ ଭଳି ହାତୀର ଅଙ୍ଗ ସବୁକୁ କାନ୍ଥରେ ଲଗାଇ ଧର । ତା ପରେ ପ୍ରତି ପିଲା ସେସବୁ ଅଙ୍ଗ ସହ ନିଜ ଉଚ୍ଚତା ତୁଳନା କରିପାରିବେ । ସେହିପରି ପିଲାମାନେ ହାତୀର ଗୋଡ଼ ଧରି ତା ପାଖରେ ଠିଆହୋଇ ନିଜ ଗୋଡ ସହିତ ତୁଳନା କରିବେ । ହାତୀର କାନକୁ ତଳେ ପାରିଦେଇ ଦେଖ କେତେଜଣ ପିଲା ତା ଉପରେ ବସିପାରିବେ ବା ଶୋଇପାରିବେ ।

ହାତୀର ବିଭିନ୍ନ ଅଙ୍ଗ ସହ ନିଜକୁ ମାପି ପାରିବା ପରେ ଚଟାଣ ଉପରେ ଖଣ୍ଡଗୁଡ଼ିକୁ ହାତୀର ସଠିକ୍ ଆକାରରେ ସଜାଇବାକୁ ପିଲାମାନଙ୍କୁ କୁହ । ପିଲାମାନେ ଖଣ୍ଡଗୁଡ଼ିକୁ ସେଲୋଟେପ୍ ବା ଅଠା ସାହାଯ୍ୟରେ ଯୋଡ଼ିପାରିବେ ଏବଂ ଯୋଡ଼ିବା ପରେ ତାକୁ ଉଠାଇ କାନ୍ଥରେ ଲଗାଇବେ । ଏବେ ପିଲାମାନଙ୍କ ସହ କାନ, ଶୁଣ୍ଢ ଆଦି ହାତୀର ବିଭିନ୍ନ ଅଙ୍ଗର କାମ ଏବଂ ବ୍ୟବହାର ବିଷୟରେ ଆଲୋଚନା କରାଯାଇ ପାରିବ ।

### ଭାଗ ଖ

କାମର ଏହି ଭାଗ ପାଇଁ ପ୍ରତି ଦଳକୁ ଗୋଟିଏ ଅଂଶର ନାଁ ଦିଅ, ଯେପରି କାନ, ଶୁଣ୍ଢ ଆଦି । ଏବେ ସେମାନଙ୍କୁ ସେହି ଅଙ୍ଗ ଉପରେ ଗୋଟିଏ କବିତା ଲେଖିବା ପାଇଁ କୁହ । ତଳେ ଦିଆଯାଇଥିବା କବିତା ଭଳି ଲେଖିବା ପାଇଁ ସେମାନଙ୍କୁ ବାଟ ବତେଇଦିଅ । ଏହି କବିତାଗୁଡ଼ିକୁ ପଞ୍ଚପଦୀ ବା ପାଞ୍ଚଧାଡ଼ିଆ କବିତା କୁହାଯାଏ । ଏହି କାମ ଯେ କୌଣସି ଭାଷାରେ ବି କରାଯାଇ ପାରିବ ।

### ପଞ୍ଚପଦୀ ଲେଖା:

- ପ୍ରଥମ ଧାଡ଼ିରେ ଅଙ୍ଗର ନାଁ ଲେଖ (କର୍ତ୍ତା/ବିଶେଷ୍ୟ)
- ଦ୍ୱିତୀୟ ଧାଡ଼ିରେ ଗୁଣ ବର୍ଣ୍ଣନା କରି ଦୁଇଟି ଶବ୍ଦ ଲେଖ (ବିଶେଷଣ)
- ତୃତୀୟ ଧାଡ଼ିରେ ଅଙ୍ଗର କାମ ବିଷୟରେ ତିନୋଟି ଶବ୍ଦ ଲେଖ, ଅର୍ଥାତ ଅଙ୍ଗଟି କଣ କରେ (କ୍ରିୟା)
- ଚତୁର୍ଥ ଧାଡ଼ିରେ ତୁମକୁ ସେ ଅଙ୍ଗ କିପରି ଲାଗିଲା ସେ ବିଷୟରେ ଚାରୋଟି ଶବ୍ଦ ଲେଖ (ଖଣ୍ଡବାକ୍ୟ, ବାକ୍ୟ, ପରିପ୍ରକାଶ)
- ପଞ୍ଚମ ଏବଂ ଶେଷ ଧାଡ଼ିରେ ପ୍ରଥମ ବିଶେଷ୍ୟର ଗୋଟିଏ ପ୍ରତିଶବ୍ଦ ଲେଖ ।

ଏବେ ପ୍ରତି ଦଳ ତାଙ୍କ କବିତା ପଢ଼ି ଶୁଣାଇବେ । ଏଠାରେ ଗୋଟିଏ ଉଦାହରଣ ଦେଖିବା ।

ଶୁଣ୍ଢ<br>
ଲମ୍ବା, କର୍ମକୁଶଳୀ<br>
ଧରେ, ଶୁଙ୍ଘେ, ପିଏ<br>
ମୋ ଆଙ୍ଗୁଠି ଭଳି ନମନୀୟ<br>
ହାତ ।

## ସଂପ୍ରସାରଣ/ପରିବର୍ତ୍ତନ

- ପିଲାମାନେ ଶ୍ରେଣୀଗୃହରେ ବିଭିନ୍ନ ଜନ୍ତୁଙ୍କର ଗୋଟିଏ ଉଚ୍ଚତା ସାରଣୀ ରଖିପାରିବେ ।
- ପିଲାମାନେ ସେମାନଙ୍କ ନିଜ ଉଚ୍ଚତା ଅନ୍ୟ ଜନ୍ତୁଙ୍କ ସହ ତୁଳନା କରି ଦେଖିପାରିବେ କେଉଁ ଜନ୍ତୁ ତାଙ୍କ ଉଚ୍ଚତା ସହ ପ୍ରାୟ ସମାନ ।

ଏଠାରେ ଗୋଟିଏ ବାର ବର୍ଷ ବୟସର ଅଣ୍ଡିରା ହାତୀର ବିଭିନ୍ନ ଅଂଶ ସେସବୁର ମାପ ସହିତ ଦେଖାଯାଇଛି ।






Digitized by srujanika@gmail.com

## ପରଖ

# ଶୁଣ୍ଢ ପ୍ରହେଳିକା

ହାତୀ ଶୁଣ୍ଢର ଗୁଣ ଜାଣିବା ଏବଂ ଶୁଣ୍ଢ କାମକୁ ନକଲ କରିବା ।

| | |
|---|---|
| ଉଦ୍ଦେଶ୍ୟ | ହାତୀ ଶୁଣ୍ଢକୁ ଲକ୍ଷ୍ୟ କରିବା ଏବଂ ହାତୀ ଶୁଣ୍ଢର ବିଭିନ୍ନ କାମକୁ ବୁଝିବା |
| ସ୍ତର | ପ୍ରାଥମିକ, ମାଧ୍ୟମିକ |
| ବିଷୟ | ବିଜ୍ଞାନ, ଭାଷା |
| ସ୍ଥାନ | ଶ୍ରେଣୀଗୃହ ଭିତରେ |
| ସମୟ ଅବଧି | ୩୦ ମିନିଟ |
| ସାମଗ୍ରୀ | ହାତୀ ଶୁଣ୍ଢ କାର୍ଡ, ହାତୀ ଶୁଣ୍ଢରେ କରୁଥିବା ବିଭିନ୍ନ କାମର ଚିତ୍ର |

ହାତୀର ଶୁଣ୍ଢଟି ବେଶ୍ ବହୁକୁଶଳୀ ଓ ସମ୍ବେଦନଶୀଳ ଅଙ୍ଗ । ବୋଧହୁଏ ଶୁଣ୍ଢର କର୍ମ ନିପୁଣତା ଏବଂ ବିଭିନ୍ନ କାମ କରିବାର ଦକ୍ଷତା ଯୋଗୁଁ ମଣିଷର ତା ପ୍ରତି ଏତେ ଆକର୍ଷଣ । ହାତୀ ତା ଶୁଣ୍ଢକୁ ବାସ୍ନା ଓ ସ୍ପର୍ଶ ବାରିବାରେ ଲଗାଏ । ମୁଣ୍ଡର ବେଶ୍ ଉପରେ ଥିବା, ଏପରିକି ସେ ଦେଖି ନପାରୁଥିବା, ଜିନିଷକୁ ବି ହାତୀ ତା'ର ଶୁଣ୍ଢ ବଢ଼ାଇ ଛୁଇଁପାରେ । ଉଭୟ ମାଟି ଉପରୁ ଓ ଉଚ୍ଚ ଗଛ ଉପରୁ ଖାଦ୍ୟ ସଂଗ୍ରହରେ ଶୁଣ୍ଢଟି ହାତୀକୁ ସାହାଯ୍ୟ କରେ । ହାତୀର ଶୁଣ୍ଢ ଗୋଟିଏ ଅମୂଲ୍ୟ ସମ୍ପଦ । କାରଣ ହାତୀର ଦୃଷ୍ଟିଶକ୍ତି ଏତେ ଭଲ ନୁହେଁ । ଶୁଣ୍ଢ ଯୋଗାଯୋଗ ପାଇଁ ମଧ୍ୟ କାମରେ ଲାଗେ । ହାତୀ ତା ଶୁଣ୍ଢ ବାଟେ ଜୋରରେ ପବନ ଛାଡ଼ି ବିଭିନ୍ନ ପ୍ରକାରର ଧ୍ୱନି ବାହାର କରିପାରେ । ଦେହକୁ ଥଣ୍ଡା କରିବାର ଗୋଟିଏ ଅଙ୍ଗ ଭଳି ମଧ୍ୟ ଏହା କାମ କରେ । ଶୁଣ୍ଢର ବିରାଟ ଚମଡ଼ା ପୃଷ୍ଠ ବାଟେ ହାତୀ କିଛି ତାପ ଛାଡ଼ିପାରେ ।

## ଆରମ୍ଭ କରିବା ଆଗରୁ

କାମ ଆରମ୍ଭ କରିବା ଆଗରୁ ହାତୀ ତା ଶୁଣ୍ଢରେ ବିଭିନ୍ନ କାମ କରୁଥିବାର ଚିତ୍ର ସଂଗ୍ରହ କର । ହାତୀ ତା ଶୁଣ୍ଢରେ କରୁଥିବା କାମ ସବୁର ବିବରଣୀ ଲେଖି ହାତୀ ଶୁଣ୍ଢ କାର୍ଡ଼ ବି ତିଆରି କର । ଏଥିପାଇଁ ତଳେ ଦିଆଯାଇଥିବା ତାଲିକା ବ୍ୟବହାର କରିପାରିବ । ତାଲିକାରେ ଆଉ କିଛି ଅଧିକା ମିଶାଯାଇ ପାରେ । ପ୍ରତି କାର୍ଡ଼ରେ ଗୋଟିଏ କାମ ଲେଖାଥିବା ଜରୁରୀ । ଯେତେ ଅଧିକ କାର୍ଡ଼ ସମ୍ଭବ ତିଆରି କର ।

କାମ ଆରମ୍ଭରେ ହାତୀ ଶୁଣ୍ଢର କାମ ବିଷୟରେ ପିଲାମାନେ କେତେ ଜାଣିଛନ୍ତି ତାହା ଆଗ ପଚରାଯିବ । ପିଲାମାନେ ଯାହା କହିବେ ତାକୁ କଳାପଟାରେ ଲେଖିରଖ । ଏହାପରେ ହାତୀ ତା'ର ଶୁଣ୍ଢରେ କରୁଥିବା ବିଭିନ୍ନ କାମର ଚିତ୍ର ପିଲାଙ୍କୁ ଦେଖାଯିବ ।

(ହାତୀ ଶୁଣ୍ଢ ବିଷୟରେ କିଛି ଅଧିକ କଥା ପୃଷ୍ଠା ୧୧ରେ ଥିବା ତଥ୍ୟ ଭଣ୍ଡାରରେ ଦିଆଯାଇଛି)

ଏସୀୟ ଓ ଆଫ୍ରିକୀୟ ହାତୀର ଶୁଣ୍ଢ ଭିତରେ ଥିବା ତଫାତ ବିଷୟରେ ପିଲାଙ୍କ ସହିତ ଆଲୋଚନା କରାଯାଇପାରେ ।

## ପରଖର ଧାରା

ପିଲାମାନଙ୍କୁ ଦୁଇ ଭାଗ କର । ପ୍ରଥମେ ଗୋଟିଏ ଦଳର ଜଣେ ପିଲା ଆସି ଗୋଟିଏ କାର୍ଡ଼ ନେବ ଏବଂ ସେଥିରେ ଲେଖାଥିବା କାମକୁ ବିନା କଥାରେ ଅଭିନୟ କରି ଦେଖାଇବ । ପିଲାମାନଙ୍କୁ କହିଦେବାକୁ ହେବ ଯେ ସେମାନେ ନିଜକୁ ହାତୀ ମନେକରି ହାତୀ ସେ କାମଟି କିପରି ତା ଶୁଣ୍ଢରେ କରିଥାନ୍ତା ତା'ର ଅଭିନୟ କରିବେ । ସେହି ଦଳର ଅନ୍ୟ ପିଲାମାନେ କହିବେ ଯେ କେଉଁ ପ୍ରକାରର କାମ ସେ କରୁଛି । ଯଦି ସେମାନେ କାମଟି କ'ଣ ତାହା ଠିକ୍ କହିଦେଇ ପାରିବେ ତେବେ ତାଙ୍କ ଦଳ ଗୋଟିଏ ପଏଣ୍ଟ ପାଇବ । ଏବେ ଅନ୍ୟ ଦଳର ଜଣେ ପିଲା ଆସିବ ଏବଂ ଆଗ ଭଳି ଖେଳ ଚାଲିବ ।

ସବୁ କାମଗୁଡ଼ିକର ଅଭିନୟ ହୋଇସାରିବା ପରେ ଯେଉଁ ଦଳର ଅଧିକା ପଏଣ୍ଟ ହୋଇଥିବ, ସେ ଦଳ ଜିତିବ ।

### ମୂକ ଅଭିନୟ ପାଇଁ କାମର ତାଲିକା

- ମନ୍ଦିର ବୁଲି ଯାଉଥିବା ପିଲାଙ୍କୁ ଆଶୀର୍ବାଦ ଦେବା
- ଅନ୍ୟ ହାତୀମାନଙ୍କୁ ସମ୍ଭାଷଣ ଜଣାଇବା
- ଆଖିରୁ କିଛି କାଢ଼ିବା
- ମାଟି ଉପରୁ ପଇସା ଉଠାଇବା
- ଗାଧୋଇବା
- ଗଛରୁ ଫଳ ତୋଳିବା
- ଛୋଟ ଛୁଆକୁ ଗେଲ କରିବା
- ଖାଇବା
- କାଠଗଣ୍ଡି ବୋହିବା
- ଜିନିଷ ଫିଙ୍ଗିବା
- ଗଛ ଉପାଡ଼ିବା
- ପହଁରିଲା ବେଳେ ନିଶ୍ୱାସ ନେବା
- ପିଠି ଉପରକୁ ଧୂଳି ଫିଙ୍ଗିବା





Digitized by srujanika@gmail.com

# ତଥ୍ୟ ଭଣ୍ଡାର

ହାତୀର ଶୁଣ୍ଢଟି ଉପର ଓଠ ଏବଂ ନାକ ମିଶିଯାଇ ଗଢ଼ା ହୋଇଥାଏ । ହାତୀର ଶୁଣ୍ଢଟି ପ୍ରକୃତରେ ଗୋଟିଏ ନାକ । ତାହା ଭିତରେ ନାସାନଳୀ ଦୁଇଟି ଶୁଣ୍ଢର ଆରମ୍ଭରୁ ଶେଷ ଯାଏଁ ଲମ୍ବି ରହିଥାଏ । ନାକପୁଡ଼ା ଦୁଇଟି ଶୁଣ୍ଢର ଅଗରେ, ମୁଣ୍ଡଠାରୁ ପ୍ରାୟ ୨୪୦ ସେ.ମି. ଦୂରରେ, ରହିଥାଏ । ଗୋଟିଏ ଲମ୍ବା ମାଂସଳ ପଟ୍ଟା ନାକପୁଡ଼ା ଦୁଇଟିକୁ ଅଲଗା କରି ରଖିଥାଏ ।

ହାତୀର ଶୁଣ୍ଢରେ ହାଡ଼ ନଥାଏ । ତାହା ୧୩୦ କିଲୋଗ୍ରାମ ଓଜନର କେବଳ ସଂଯୋଜକ ତନ୍ତୁ, ବାଳ, ଚମ, ଚର୍ବି, ରକ୍ତନଳୀ ଏବଂ ମାଂସପେଶୀରେ ଗଢ଼ା ହୋଇଥାଏ । ଗୋଟିଏ ହାତୀର ଶୁଣ୍ଢରେ ଚାଳିଶ ହଜାର ମାଂସପେଶୀ ଥାଏ ।

ଶୁଣ୍ଢରେ ପାଣି ଆଣି ହାତୀ ତା'ର ଦେହ ଉପରକୁ ଫୁଆରା ଭଳି ପକାଏ । ହାତୀ ତା ଶୁଣ୍ଢରେ ପାଣି ଶୋଷିପାରେ ଏବଂ ନିଜ ଦେହ ବା ଅନ୍ୟ କିଛିର ଉପରକୁ ଫିଙ୍ଗିପାରେ । ଗୋଟିଏ ଏସୀୟ ହାତୀର ଶୁଣ୍ଢରେ ପ୍ରାୟ ସାଢ଼େ ଆଠ ଲିଟର ପାଣି ଧରେ । ହାତୀ ପୋକ କାମୁଡ଼ାରୁ ରକ୍ଷା ପାଇବା ପାଇଁ ଶୁଣ୍ଢରେ ଧୂଳି, ଘାସ ଆଣି ଦେହ ଉପରେ ପକାଏ ।

ହାତୀର ଶୁଣ୍ଢ ଅଗରେ ବହୁତଗୁଡ଼ିଏ ସ୍ନାୟୁ ଓ ସ୍ପର୍ଶସମ୍ବେଦୀ ଗୁମ ରହିଥିବାରୁ ତାହା ବହୁତ ସମ୍ବେଦନଶୀଳ ହୋଇଥାଏ । ହାତ ଭଳି ମଧ୍ୟ ଏହା ବ୍ୟବହୃତ ହୁଏ ଏବଂ ଅତି ସୂକ୍ଷ୍ମ କାମ ପାଇଁ ଏହା ଆଙ୍ଗୁଠି ଭଳି ମଧ୍ୟ କାମ ଦିଏ । ଏହା ସାହାଯ୍ୟରେ ହାତୀ ଖଣ୍ଡେ ନଡ଼ା ଉଠାଇ ପାରେ, ପଇସା ଗୋଟାଇ ପାରେ ଏବଂ ବଡ଼ ଗଛ ମଧ୍ୟ ଉପାଡ଼ି ପାରେ ।

ଏସୀୟ ହାତୀର ଶୁଣ୍ଢ ଅଗରେ ଗୋଟିଏ ଆଙ୍ଗୁଠି ଭଳି ଅଙ୍ଗ ବା ଅଙ୍ଗୁଳି ରହିଥାଏ । କିନ୍ତୁ ଆଫ୍ରିକୀୟ ହାତୀର ଦୁଇଟି ଅଙ୍ଗୁଳି ଥାଏ । ଏସୀୟ ହାତୀ ଯେତେବେଳେ ଜିନିଷ ଉଠାଏ, ସେ ଶୁଣ୍ଢର ଅଗକୁ ମୋଡ଼ି ଜିନିଷଟିକୁ ଧରେ । କିନ୍ତୁ ଆଫ୍ରିକୀୟ ହାତୀ ତା'ର ଶୁଣ୍ଢର ଦୁଇ ଅଙ୍ଗୁଳିକୁ ଲଗାଇ ଜିନିଷ ଉଠାଇପାରେ । ଠିକ୍ ଯେପରି ମଣିଷ ବୁଢ଼ା ଆଙ୍ଗୁଠି ଏବଂ ବିଶି ଆଙ୍ଗୁଠିରେ ଧରାଧରି କରେ ।

ଏସୀୟ ହାତୀର ଶୁଣ୍ଢ ବେଶ୍ ମସୃଣ । ଏଥିରେ ଅଳ୍ପ ଭାଙ୍ଗ ବା ବଳି ଦେଖାଯାଏ । ଏହା ଆଫ୍ରିକୀୟ ହାତୀର ଶୁଣ୍ଢଠାରୁ କମ୍ ନମନୀୟ ହୋଇଥାଏ । ଆଫ୍ରିକୀୟ ହାତୀର ଶୁଣ୍ଢରେ ଅଧିକ ସଂଖ୍ୟାର ବଳି ଦେଖାଯାଏ ।

ହାତୀମାନେ ଅନେକ ସମୟରେ ଶୁଣ୍ଢ ମିଳାନ୍ତି । ଠିକ୍ ଯେମିତି ମଣିଷମାନେ ହାତ ମିଳାଇଥାନ୍ତି । ବୋଧହୁଏ ସେଇ ଏକା କାମ ପାଇଁ ବି ସେମାନେ ଏହା କରନ୍ତି - ସମ୍ଭାଷଣ ଜଣାଇବା ପାଇଁ । ନିଜ ନିଜର ଶକ୍ତି କଳନା କରିବାର ବି ଏହା ଗୋଟିଏ ବାଟ ହୋଇପାରେ ।



ଆଫ୍ରିକୀୟ ହାତୀ ଶୁଣ୍ଢର ଅଗ



ଏସୀୟ ହାତୀ ଶୁଣ୍ଢର ଅଗ


ଆଫ୍ରିକୀୟ ହାତୀ


ଏସୀୟ ହାତୀ



Digitized by srujanika@gmail.com

**ପରଖ**

# ହାତୀର ଉଚ୍ଚତା

| ହାତୀର ଉଚ୍ଚତା ମାପିବାର ଗୋଟିଏ ବାଟ ଶିଖିବେ । | |
|---|---|
| *ଉଦ୍ଦେଶ୍ୟ* | ଏସୀୟ ହାତୀର ଆଗ ଖୋଜର ଗୋଲେଇ ଏବଂ ଉଚ୍ଚତା ସହ ଥିବା ସମ୍ପର୍କକୁ ପିଲାମାନେ ଧାରଣା କରିବେ |
| *ସ୍ତର* | ଉଚ୍ଚତର |
| *ବିଷୟ* | ଗଣିତ |
| *ଦଳର ଆକାର* | ପାଞ୍ଚ ଜଣିଆ ଦଳ |
| *ସ୍ଥାନ* | ଶ୍ରେଣୀଗୃହ ଭିତରେ |
| *ସମୟ ଅବଧି* | ୩୦ ମିନିଟ |
| *ସାମଗ୍ରୀ* | ହାତୀ ଖୋଜର ନକଲ, ମୋଟା ସୂତା, ଲେଖିବା ସାମଗ୍ରୀ |

ହାତୀମାନେ ବିରାଟକାୟ ଜୀବ । ହାତୀକୁ ଦେଖିଲେ ବିଶ୍ୱାସ ହୁଏନାହିଁ ଯେ କାନ୍ଧଠାରେ ତା'ର ଉଚ୍ଚତା ତା ଆଗ ପାଦର ଗୋଲେଇର ମାତ୍ର ଦୁଇଗୁଣ । ପିଲାମାନେ ଗୋଟିଏ କାମ କରି ଏହା ନିଜେ ଜାଣିପାରିବେ ।

## ଆରମ୍ଭ କରିବା ଆଗରୁ

ଏହି କାମଟି କରିବାର ଆଗଦିନ ହାତୀର ଆଗ ଖୋଜର ଛବି ନକଲ କର (ପୃଷ୍ଠା ୧୩ ଦେଖ) । ଯଦି ଦଶଟି ଦଳ ଅଛନ୍ତି ତେବେ ପୃଷ୍ଠାଟିର ପାଞ୍ଚଟି ନକଲ କର । କୋଣୁଆ ଗାର ଉପରେ ପ୍ରତିଟିକୁ କାଟିଦିଅ । ପିଲାମାନଙ୍କୁ କହିଦିଅ ଯେ ଏହି କାମ ମାଧ୍ୟମରେ ସେମାନେ ହାତୀର ଆଗ ପାଦର ଗୋଲେଇ ଏବଂ ଉଚ୍ଚତା ଭିତରେ ଥିବା ସମ୍ପର୍କକୁ ବୁଝିପାରିବେ ।

## ପରଖର ଧାରା

### ଭାଗ କ

ପିଲାମାନଙ୍କୁ ପାଞ୍ଚଜଣିଆ ଦଳରେ ବାଣ୍ଟିଦିଅ । ପ୍ରତି ଦଳକୁ ଖୋଜର ଗୋଟିଏ ଲେଖାଏଁ ନକଲ ଦିଅ । ସେମାନଙ୍କୁ କହିଦିଅ ଯେ ଏହା ଗୋଟିଏ ପ୍ରକୃତ ଖୋଜ, କେବଳ ଏହାର ଆକାର ଚାରିଭାଗରୁ ଭାଗେ କରିଦିଆ ଯାଇଛି । ହାତୀର ପ୍ରକୃତ ଉଚ୍ଚତା ବି ଖୋଜର ନକଲରେ ଲେଖାଯାଇଛି ।

ପିଲାମାନଙ୍କୁ କହିଦିଅ ଯେ ଜଙ୍ଗଲରେ ହାତୀର ଖୋଜ ପାଇବା ବହୁତ କଷ୍ଟ । କାରଣ ହାତୀ ଚାଲିଲା ବେଳ ତା ପଛ ପାଦକୁ ଠିକ୍ ଆଗ ପାଦ ପକାଇଥିବା ଜାଗାରେ ହିଁ ପକାଏ । କେବଳ କୌଣସି ଜଳାଶୟ ପାଖରେ ପାଣି ପିଉଥିବା ବେଳେ ପଡ଼ିଥିବା ଆଗ ପାଦର ଖୋଜ ହିଁ ମିଳିପାରିବ ।

ପିଲାମାନଙ୍କୁ ହାତୀର ଖୋଜକୁ ଗୋଟିଏ ଗ୍ରାଫ୍ କାଗଜରେ ବଡ଼ କରି ପ୍ରକୃତ ଆକାର (ଚାରିଗୁଣ) କରିବା ପାଇଁ କୁହ । ତା'ପରେ ଖଣ୍ଡେ ମୋଟ୍ୟ ସୂତା ବ୍ୟବହାର କରି ଖୋଜର ଗୋଲେଇକୁ ସେମାନେ ମାପିବେ । ଖୋଜର ଗୋଲେଇ ମାପିସାରିବା ପରେ ଦିଆଯାଇଥିବା ଉଚ୍ଚତା ସହ ଗୋଲେଇର କିଛି ସମ୍ପର୍କ ସେମାନେ ଜାଣିପାରୁଛନ୍ତି କି? ଯଦି ଜାଣିପାରୁ ନାହାନ୍ତି, ତେବେ ସେମାନଙ୍କୁ କହିଦିଅ ଯେ ହାତୀର ଉଚ୍ଚତା ଆଗ ପାଦର ଗୋଲେଇର ପ୍ରାୟ ଦୁଇଗୁଣ ସହ ସମାନ । ପ୍ରତିଟି ଖୋଜରେ ଥିବା ଉଚ୍ଚତା ସହ ଗୋଲେଇର ଏହି ସମ୍ପର୍କ କିପରି ରହିଛି ତାହା ପିଲାମାନେ ଦେଖିବେ ।

### ଭାଗ ଖ

ଏବେ ପିଲାମାନେ ଆଗ ଖୋଜ ଓ ଉଚ୍ଚତା ଭିତରେ ଥିବା ସମ୍ପର୍କକୁ ବୁଝିଯିବେଣି । ତେଣୁ ତାଙ୍କୁ ତଳ ପ୍ରଶ୍ନଗୁଡ଼ିକର ଉତ୍ତର ଦେବାକୁ କୁହ ।

### ପ୍ରଶ୍ନ

- ଯଦି ଗୋଟିଏ ଅଣ୍ଡିରା ହାତୀର ଆଗ ଖୋଜର ଗୋଲେଇ ୧୦୩.୫ ସେ.ମି. ହୁଏ, ତେବେ ହାତୀଟିର ଉଚ୍ଚତା କେତେ?
- ଗୋଟିଏ ୨.୧ ମିଟର ଉଚ୍ଚ ମାଈ ହାତୀର ଆଗ ଖୋଜର ଗୋଲେଇ କେତେ ହେବ?
- ୦.୯୫ ମିଟର ଉଚ୍ଚ ହାତୀ ଛୁଆର ଆଗ ଖୋଜର ଗୋଲେଇ କେତେ ?

## ସଂପ୍ରସାରଣ/ପରିବର୍ତ୍ତନ

- ପୋଷା ହାତୀର ଉଚ୍ଚତା ମାପିବା ପାଇଁ ତାକୁ ଗୋଟିଏ କାଠ ଖୁଣ୍ଟକୁ ଲଗାଇ ଛିଡ଼ା କରାଯାଏ ଏବଂ ତା'ର କାନ୍ଧ ଉପରେ ଖୁଣ୍ଟକୁ ଛୁଆଁଇ ଖଣ୍ଡେ ବାଉଁଶ ଭୂସମାନ୍ତରାଳ ଭାବରେ ରଖାଯାଏ । ମାଟି ଉପରୁ ଖୁଣ୍ଟ ଦେହରେ ବାଉଁଶ ଛୁଉଁଥିବା ଜାଗାର ଉଚ୍ଚତା ହେଉଛି ହାତୀର ଉଚ୍ଚତା ।
- ପିଲାମାନେ ଚିଡ଼ିଆଖାନା, ମନ୍ଦିର ବା ସର୍କସରେ ମାହୁନ୍ତକୁ ହାତୀର ଆଗ ଖୋଜର ଗୋଲେଇ ମାପିବାକୁ କହିପାରିବେ ଏବଂ ସେଥିରୁ ହାତୀର ଉଚ୍ଚତା ବାହାର କରିବେ । ସେମାନେ ମାହୁନ୍ତ ବା ଚିଡ଼ିଆଖାନାର ଲୋକଙ୍କଠାରୁ ପୋଷା ହାତୀଙ୍କର ଉଚ୍ଚତା କିପରି ମପାଯାଏ ପଚାରି ବୁଝିପାରିବେ ।





Digitized by srujanika@gmail.com

# ତଥ୍ୟ ଭଣ୍ଡାର

ଅହମଦାବାଦର କମଳା ନେହେରୁ ଚିଡ଼ିଆଖାନାର ମାଇ ଓ ଅଣ୍ଠିରା ହାତୀଙ୍କର ଆଗ ଖୋଜର ମାପକୁ ଚାରିଭାଗ ଛୋଟ କରାଯାଇ ତଳେ ଛପାଯାଇଛି । ଏହାକୁ ଚାରିଗୁଣ ବଡ଼କରି ପ୍ରକୃତ ମାପରେ ଆଙ୍କ ଓ ସେଥିରୁ ହାତୀ ଦୁଇଟିର ଉଚ୍ଚତା ବାହାର କର । ତୁମର ଉତ୍ତର ସହିତ ତୁଳନା କରିବା ପାଇଁ ହାତୀ ଦୁଇଟିର ପ୍ରକୃତ ଉଚ୍ଚତା ମଧ୍ୟ ଚିତ୍ର ଭିତରେ ଦିଆଯାଇଛି ।






Digitized by srujanika@gmail.com

**ପରଖ**

# ହାତୀକୁ ଭେଟିବା

| **ଗୋଟିଏ ତଥ୍ୟମୂଳକ ହାତୀ ସାଇନ୍‌ବୋର୍ଡ ପ୍ରସ୍ତୁତ କରିବା** | |
|---|---|
| *ଉଦ୍ଦେଶ୍ୟ* | ଦର୍ଶକମାନଙ୍କୁ ଜଣାଇବା ପାଇଁ ଚିଡ଼ିଆଖାନାରେ ଲଗାଇବା ପାଇଁ ଗୋଟିଏ ତଥ୍ୟମୂଳକ ସାଇନ୍ ବୋର୍ଡ ପ୍ରସ୍ତୁତ କରିବା |
| *ସ୍ତର* | ମାଧ୍ୟମିକ |
| *ବିଷୟ* | ବିଜ୍ଞାନ, ଭାଷା |
| *ଦଳର ଆକାର* | ପାଞ୍ଚ ଛଅ ଜଣିଆ ଦଳ |
| *ସ୍ଥାନ* | ଶ୍ରେଣୀଗୃହ ଭିତରେ |
| *ସମୟ ଅବଧି* | ୩୦ ମିନିଟ |
| *ସାମଗ୍ରୀ* | ଲେଖିବା ଜିନିଷ, ଡ୍ରଇଁ ସିଟ୍, କଲମ |

## ଆରମ୍ଭ କରିବା ଆଗରୁ

ପିଲାମାନଙ୍କୁ କହିଦିଅ ଯେ ସେମାନେ ଚିଡ଼ିଆଖାନାର ହାତୀ ଖୁଆଡ଼ ପାଖରେ ଲଗାଇବା ପାଇଁ ଗୋଟିଏ ତଥ୍ୟମୂଳକ ସାଇନବୋର୍ଡ଼ ପ୍ରସ୍ତୁତ କରିବେ । ପ୍ରଥମ ଭାଗରେ ପିଲାମାନଙ୍କ ସହ ଆଲୋଚନା କରି କେଉଁ ତଥ୍ୟ ସବୁ ରହିବ ତାହା ସ୍ଥିର କର ଏବଂ ଏପରି ସାଇନବୋର୍ଡ଼ ତିଆରି କରିବା ପାଇଁ କେଉଁ ସବୁ ଦିଗ ପ୍ରତି ଧ୍ୟାନ ଦେବାକୁ ହେବ ତାହା ପିଲାଙ୍କ ଦୃଷ୍ଟିକୁ ଆଣ । ସେମାନେ ତଳ ବିଷୟଗୁଡ଼ିକ ଉପରେ ଆଲୋଚନା କରିବା ଉଚିତ ।

- ଏପରି ଏକ ବୋର୍ଡ଼ ଲଗାଇବାର ଉଦ୍ଦେଶ୍ୟ
- ସାଇନବୋର୍ଡ଼ର ଆକାର
- ଲେଖାରେ କେତେ ଶବ୍ଦ ରହିବ
- କେଉଁ କେଉଁ ତଥ୍ୟ ରହିବ
- କିଭଳି ଲେଖାଯିବ - ଅକ୍ଷରର ଆକାର କେତେ ବଡ଼ ଆଦି

ଏହିସବୁ ବିଷୟରେ ପିଲାମାନଙ୍କ ମତ ଓ ପରାମର୍ଶକୁ କଳାପଟାରେ ଲେଖିଦିଅ । ତା'ପରେ ସାଇନବୋର୍ଡ଼ରେ ତଳଭଳି ଯେଉଁ ମୁଖ୍ୟ କଥାଗୁଡ଼ିକ ରହିବା ଦରକାର ସେ ବିଷୟରେ ତାଙ୍କୁ ବୁଝାଅ ।

- ଗୋଟିଏ ମନଛୁଆଁ ଶୀର୍ଷକ
- ଜୀବର ସାଧାରଣ ନାଁ
- ବିଜ୍ଞାନ ନାଁ
- ତଥ୍ୟ ବାକ୍ସ

  ହାତୀ କ'ଣ ଖାଏ

  କେଉଁଠି ଦେଖାଯାଏ
- ହାତୀର ଗୋଟିଏ ଆକର୍ଷଣୀୟ ଫଟୋ ବା ଚିତ୍ର
- ପ୍ରାୟ ୮୦ ଶବ୍ଦରେ ହାତୀ ବିଷୟରେ ମଜା ତଥ୍ୟର ଛୋଟ ଲେଖା

ଏକ ଉଦାହରଣ ଭାବରେ ତଳର ସାଇନବୋର୍ଡ଼ଟି ପିଲାଙ୍କୁ ଦେଖାଯାଇପାରେ ।

### ହନୁ ମାଙ୍କଡ଼

*ପ୍ରେସ୍‌ବାଇଟିସ୍ ଏଣ୍ଟେଲସ୍*

କେବଳ ପଶ୍ଚିମଘାଟକୁ ଛାଡ଼ିଦେଲେ ହିମାଳୟଠାରୁ କନ୍ୟାକୁମାରୀ ଯାଏଁ ଭାରତର ପ୍ରାୟ ସବୁ ଅଞ୍ଚଳରେ ହନୁମାଙ୍କଡ଼ ଦେଖାଯା'ନ୍ତି । ସେମାନେ ଜଙ୍ଗଲରେ ରହନ୍ତି, ମନ୍ଦିର ପାଖର ଝଙ୍କାଳିଆ ତୋଟାରେ ବି ଦେଖାଯାନ୍ତି ଏବଂ ଗାଁ ବା ସହର ଭିତରେ ଖୁସିରେ ରହିଥା'ନ୍ତି । ଏମାନେ ପୁରା ତୃଣଭୋଜୀ ଏବଂ ଅଧିକାଂଶ ସମୟ ଗଛ ଉପରେ କଟାନ୍ତି । ସବୁ ବୟସର ମାଈ ଓ ଅଣ୍ଡିରା ମିଶିକରି ୧୫-୩୦ ଜଣିଆ ଦଳରେ ରହନ୍ତି । କେନ୍ଦୁଆ ବା ବାଘ ଦେଖିଲେ ଏମାନେ ଅନ୍ୟ ଜୀବଙ୍କୁ ସତର୍କ କରିଦିଅନ୍ତି ।



| | |
|---|---|
| ପୋଷା ହନୁର ଖାଦ୍ୟ | ଅଙ୍ଗୁର, ଭାତ, କଦଳୀ, କମଳା, ଆମ୍ବ, ପିଜୁଳି, ଭିଜାମୁଗ, ବନ୍ଧାକୋବି, ଗାଜର ଓ ପାଉଁରୁଟି |
| ବୟଃପ୍ରାପ୍ତି | ୪ରୁ ୫ ବର୍ଷ |
| ପ୍ରଜନନ ଋତୁ | ଜାନୁଆରୀ-ଫେବୃଆରୀ |
| ଗର୍ଭଧାରଣ ସମୟ | ୧୫୦ରୁ ୧୮୦ ଦିନ |
| ଛୁଆ ସଂଖ୍ୟା | ଏକ |
| ଜୀବନକାଳ | ୨୦ରୁ ୩୧ ବର୍ଷ |



Digitized by srujanika@gmail.com

## ପରଖର ଧାରା

ପୂରା ଶ୍ରେଣୀକୁ ପାଞ୍ଚ ଛଅ ଜଣିଆ ଦଳରେ ଭାଗ କର । ପ୍ରତି ଦଳକୁ ହାତୀ ଖୁଆଡ଼ ପାଇଁ ଗୋଟିଏ ତଥ୍ୟମୂଳକ ପାଇନ୍‌ବୋର୍ଡ଼ ତିଆରି କରିବା ପାଇଁ କୁହ । ସେମାନେ ଆଲୋଚନା କରିଥିବା ସବୁ ବିଷୟ ପ୍ରତି ଧ୍ୟାନ ଦେବାକୁ ପିଲାମାନଙ୍କୁ ଚେତାଇଦିଅ । ପ୍ରଥମେ ସେମାନେ ସବୁ ତଥ୍ୟ ଏକାଠି କରି ତାକୁ ପରେ ପୁଣିଥରେ ଭଲକରି ଲେଖିବେ । ଗୋଟିଏ ଡ୍ରଇଁସିଟ୍‌ରେ ସାଇନବୋର୍ଡ଼ଟି କରିବା ପାଇଁ ପିଲାମାନଙ୍କୁ କୁହ । ଚିଡ଼ିଆଖାନା ଗଲାବେଳେ ପିଲାମାନେ ସବୁଠାରୁ ଭଲ ସାଇନବୋର୍ଡ଼ ଦୁଇଟି ବାଛି ସାଙ୍ଗରେ ନେଇପାରିବେ । ଚିଡ଼ିଆଖାନା ନିର୍ଦ୍ଦେଶକଙ୍କୁ ତାହା ଦେଖାଇ ଯଦି ସମ୍ଭବ ହୁଏ ଚିଡ଼ିଆଖାନାରେ ଲଗାଇବା ପାଇଁ କହିପାରିବେ । ହାତୀ ମେଳା ସମୟରେ ସବୁତକ ସାଇନବୋର୍ଡ଼ ପ୍ରଦର୍ଶନ ମଧ୍ୟ କରାଯାଇ ପାରିବ ।



## ସଂପ୍ରସାରଣ/ପରିବର୍ତ୍ତନ

- ପିଲାମାନେ ଗୋଟିଏ ତଥ୍ୟମୂଳକ ସାଇନବୋର୍ଡ଼ ତିଆରି କରି ସ୍କୁଲ ନୋଟିସ୍ ବୋର୍ଡ଼ରେ ଲଗାଇ ପାରିବେ ।

## ହାତୀଙ୍କ ଶ୍ରେଣୀ ବିଭାଗ

ଆମ ଚାରିପାଖରେ କୋଟି କୋଟି ଉଦ୍ଭିଦ ଓ ପ୍ରାଣୀ ରହିଛନ୍ତି । ଯଦି ତାଙ୍କର କୌଣସି ଶ୍ରେଣୀ ବିଭାଗ କରାନଯାଏ ତେବେ ସେମାନଙ୍କ ବିଷୟରେ ବୁଝିବା, ସେମାନଙ୍କୁ ଭଲ ଭାବରେ ଜାଣିବା ଏବଂ ସଂରକ୍ଷିତ କରିବା ପ୍ରାୟ ଅସମ୍ଭବ ହୋଇପଡ଼ିବ ।

ଜୀବ ବିଜ୍ଞାନର ଶ୍ରେଣୀ ବିଭାଗ ଧାରାରେ ଏକା ଭଳି ଜୀବଙ୍କୁ ସଜାଇ ଦଳ କରାଯାଏ । ଏକା ଗୁଣ ଥିବା ପ୍ରାଣୀ ଓ ଉଦ୍ଭିଦମାନଙ୍କୁ ଗୋଟିଏ ଗୋଟିଏ ଦଳରେ ଏକାଠି ରଖାଯାଏ । ଏହି ଏକକକୁ ବର୍ଗକ କୁହାଯାଏ ।

ଜୀବମାନେ କିପରି ପରସ୍ପର ସହ ସମ୍ପର୍କିତ ଶ୍ରେଣୀ ବିଭାଗର ପ୍ରଣାଳୀ ତାହା ଦେଖାଏ ଏବଂ ଜୀବଟି ବିଷୟରେ କିଛି ତଥ୍ୟ ମଧ୍ୟ ତାହା ଜଣାଏ । ଉଦାହରଣ ସ୍ୱରୂପ, ଯେତେବେଳେ ଜଣେ ଜୀବବିଜ୍ଞାନୀଙ୍କୁ କୁହାଯାଏ ଯେ 'କ' ଗୋଟିଏ ସ୍ତନ୍ୟପାୟୀ, ସେ ସାଙ୍ଗେ ସାଙ୍ଗେ ଜାଣିପାରିବେ 'କ'ର ଲୋମ ଅଛି, ସେ ଛୁଆକୁ କ୍ଷୀର ଦିଏ ଏବଂ ତା'ଠାରେ ସ୍ତନ୍ୟପାୟୀଙ୍କର ଅନ୍ୟ ଗୁଣ ସବୁ ରହିଛି ।

ଜୈବ ଶ୍ରେଣୀ ବିଭାଗ ଦୁଇଟି କାମ କରେ । ପ୍ରଥମଟି ହେଉଛି କୌଣସି ଜୀବକୁ ଚିହ୍ନଟ କରେ ଏବଂ ଯେତେଦୂର ସମ୍ଭବ ସେହି ଜୀବଜାତି ବିଷୟରେ ବିସ୍ତୃତ ସୂଚନା ଦିଏ । ଦ୍ୱିତୀୟରେ ଜୀବମାନଙ୍କ ଭିତରେ ଥିବା ସାମଞ୍ଜସ୍ୟ ଏବଂ ସଂପର୍କକୁ ନେଇ କିପରି ଦଳ କରାଯାଇ ପାରିବ ତା'ର ବାଟ ଦେଖାଏ ।

ଜୀବଜାତି ବା *ସ୍ପିସିଜ୍* ହେଉଛି କୌଣସି ପ୍ରକାରର ଜୀବଙ୍କର ମୌଳିକ ଏକକ । ପାଖାପାଖି ଗୁଣ ଥିବା ଜାତି ସବୁ ଏକା ପ୍ରଜାତି ବା *ଜିନସ୍*‌ରେ ରହନ୍ତି । ଏକାଭଳି ପ୍ରଜାତିଗୁଡ଼ିକ ମିଶି ବଂଶ ବା *ଫାମିଲି*, ଏକା ପ୍ରକାରର ବଂଶ ମିଶି ବର୍ଗ ବା *ଅର୍ଡର୍*, ଏହିପରି ଶ୍ରେଣୀ, ପର୍ବ ଏବଂ ଶେଷରେ ଜଗତ ଗଢ଼ନ୍ତି । ଉପରକୁ ଯିବା ସହିତ ପ୍ରତି ସ୍ତରରେ ବିଭାଗର ସଂଖ୍ୟା କମିଚାଲେ । ସେଥିପାଇଁ ଜୀବଜାତିଙ୍କ ସଂଖ୍ୟା କୋଟି କୋଟି ହୋଇଥିଲାବେଳେ ଜଗତର ସଂଖ୍ୟା ହେଉଛି ମାତ୍ର ପାଞ୍ଚ ।

ବର୍ଗୀକରଣ ଚାବି ହେଉଛି ଏପରି ଏକ ବ୍ୟବସ୍ଥା ଯାହା ସାହାଯ୍ୟରେ ଅନେକ ଦଳ ଭିତରୁ କୌଣସି ଗୋଟିଏ ଦଳକୁ ଚିହ୍ନଟ କରିହେବ । ଏପରି ଏକ ଚାବି ପ୍ରସ୍ତୁତ କରିବା ପାଇଁ ଆମକୁ ଦଳର ପ୍ରତି ଜୀବଙ୍କର ନିର୍ଦ୍ଦିଷ୍ଟ ଗୁଣ ସବୁ ଚିହ୍ନଟ କରିବାକୁ ହେବ । ତା ପରେ ଆମେ ସେମାନଙ୍କ ବିଷୟରେ ଏପରି ପ୍ରଶ୍ନ ପଚାରିବା ଯାହାର ଉତ୍ତର କେବଳ ହଁ ବା ନାଁ ହେବ ।

| **ଏସୀୟ** ହାତୀ | **ଆଫ୍ରିକୀୟ** ହାତୀ |
|---|---|
| **ଜଗତ** ପ୍ରାଣୀ | **ଜଗତ** ପ୍ରାଣୀ |
| **ପର୍ବ** କର୍ଡାଟା | **ପର୍ବ** କର୍ଡାଟା |
| **ଶ୍ରେଣୀ** ସ୍ତନ୍ୟପାୟୀ | **ଶ୍ରେଣୀ** ସ୍ତନ୍ୟପାୟୀ |
| **ବର୍ଗ** ପ୍ରୋବୋସିଡି | **ବର୍ଗ** ପ୍ରୋବୋସିଡି |
| **ବଂଶ** ଏଲିଫାଣ୍ଟିଡେ | **ବଂଶ** ଏଲିଫାଣ୍ଟିଡେ |
| **ପ୍ରଜାତି** ଏଲିଫସ୍ | **ପ୍ରଜାତି** ଲୋକ୍ସୋଡୋଣ୍ଟା |
| **ଜାତି** ମାକ୍ସିମସ୍ | **ଜାତି** ଆଫ୍ରିକାନା |



Digitized by srujanika@gmail.com

# ଘର ସଂସାର

'ମା ସବୁଠୁ ଭଲ ଜାଣେ' - ଏହି କଥାଟି ହାତୀ ସମାଜ ପାଇଁ ପୁରା ଠିକ୍ । ଦଳର ସବୁଠାରୁ ବୟସ୍କା ହାତୀ ଦଳର ମୁଖିଆ ହୋଇଥାଏ । ହାତୀମାନଙ୍କର ମାତୃପ୍ରଧାନ ଦଳରେ ରହିଥା'ନ୍ତି ମୁଖିଆର ଭଉଣୀ, ଝିଅ, ମାଈ ବନ୍ଧୁ, ଛୁଆ ଏବଂ ଅଳ୍ପ ବୟସ୍କ ମାଈ ଓ ଅଣ୍ଡିରା ହାତୀ । ଚାରୋଟି ଯାଏଁ ପିଢ଼ିର ହାତୀ ଗୋଟିଏ ଦଳରେ ରହିପାରନ୍ତି । ମାଈ ଦଳପତି ବୁଢ଼ୀ ଓ ଦୁର୍ବଳ ହୋଇଗଲେ ବି ତା'ର ସ୍ଥାନ ସବୁବେଳେ ବେଶ୍ ସମ୍ମାନଜନକ ହୋଇଥାଏ ।



## ଦଳର ମୁଖିଆ

ଅଧିକାଂଶ ହାତୀ ସେମାନଙ୍କ ଜୀବନର ବେଶି ଭାଗ ସମୟ ଗୋଟିଏ ମାତୃପ୍ରଧାନ ଦଳରେ କଟାଇଥାନ୍ତି । ଗୋଟିଏ ପରିବାର ଭିତରେ ପ୍ରତ୍ୟେକଙ୍କର ନିର୍ଦ୍ଦିଷ୍ଟ କାମ ରହିଥାଏ । ପରିବାରର ସଫଳତା ପାଇଁ ସେହି ଦଳର ସବୁଠାରୁ ବୟସ୍କା ହାତୀର ଭୂମିକା ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ । ଦଳର ବିଚରଣ ଏବଂ ସ୍ଥିରତାକୁ ସେ ହିଁ ପ୍ରଭାବିତ କରେ । ଦଳକୁ ସୁରକ୍ଷା ଏବଂ ଯଥେଷ୍ଟ ଖାଦ୍ୟ ଓ ପାଣି ଯୋଗାଇବା ପାଇଁ ସେ ଦାୟୀ ରହେ । ନୂଆ ଚାରଣ ଭୂମି ଖୋଜିବା ପାଇଁ ଦଳଟି କେଉଁ ଦିଗରେ ଓ କେତେ ବାଟ ଯିବ ସେ ବିଷୟରେ ମଧ୍ୟ ମା ହାତୀ ନିଷ୍ପତ୍ତି ନିଏ । ଯଦି ଦଳପତି ଅଳ୍ପବୟସ୍କା ହୋଇଥା'ନ୍ତି ତେବେ ସେ ଦଳ ଶୀଘ୍ର ଭାଙ୍ଗିଯାଇପାରେ । କାରଣ ଅଳ୍ପବୟସ୍କା ଦଳପତିର ଅନଭିଜ୍ଞତା ଯୋଗୁଁ ଅଭାବ ସମୟରେ ଯଥେଷ୍ଟ ଖାଦ୍ୟ, ପାଣି ଆଦି ମିଳିବା କଷ୍ଟ ହୋଇପାରେ ।

ଗୋଟିଏ ବଡ଼ ପରିବାର ଦଳରେ ୩-୬ ଜଣିଆ ଛୋଟ ଦଳ ସବୁ ରହିଥାଏ । ଅବଶ୍ୟ ୧୦-୨୦ ଜଣଙ୍କ ଭିତରେ ନିରବଚ୍ଛିନ୍ନ ସମ୍ପର୍କ ରହିଥାଏ । ଦଳର ସବୁ ହାତୀ ଶତକଡ଼ା ପ୍ରାୟ ୭୦-୯୦ ଭାଗ ସମୟ ଏକାଠି କଟାନ୍ତି । ବେଳେ ବେଳେ ସେମାନେ ଅଲଗା ହୋଇଯା'ନ୍ତି ଏବଂ କେତେ ଘଣ୍ଟା ବା କେତେ ଦିନ ଛଡ଼ାରେ ପୁଣି ଏକାଠି ହୁଅନ୍ତି । ଏଭଳି ଅଲଗା-ଏକାଠି ହେବା ଖାଦ୍ୟ, ପାଣି ମିଳିବା ଉପରେ ଏବଂ ଦଳର ସଦସ୍ୟମାନଙ୍କର କାର୍ଯ୍ୟକଳାପ ଉପରେ ନିର୍ଭର କରେ । ଶୁଖିଲା ବା ମରୁଡ଼ି ସମୟରେ ଗୋଟିଏ ମା ତା ଛୁଆକୁ ନେଇ ଅନ୍ୟଆଡ଼େ ଖାଦ୍ୟ ଖୋଜିବାକୁ ଯାଇପାରେ । ତେଣୁ ପରିବାରଟି ସାମୟିକ ଭାବରେ ଭାଙ୍ଗିଯାଇପାରେ ।

## ଛୁଆ ଜନ୍ମ ଦେବା

ମାଈ ହାତୀ ୧୦-୧୫ ବର୍ଷ ବେଳକୁ ବୟଃପ୍ରାପ୍ତ ହୁଏ । ଏହି ସମୟରେ ତା'ର ମିଳନ ହୁଏ ଏବଂ ସେ ତା'ର ମା'ର ଦଳରେ ରହି ଛୁଆ ଜନ୍ମ କରେ ।

ହାତୀର ଋତୁଚକ୍ର ପ୍ରାୟ ଚାରିମାସ ଲମ୍ବା ହୁଏ । କିନ୍ତୁ ଏହା ଭିତରେ ମାତ୍ର ଅଳ୍ପ ଦିନ ପାଇଁ ସେ ଗର୍ଭସଞ୍ଚାରକ୍ଷମ ରହିଥାଏ । ଯେଉଁ ଦଳରେ ଅଧିକ ଅଣ୍ଡିରା ହାତୀ ଥା'ନ୍ତି ସେଠି ମାଈ ହାତୀ ସହ ମିଳନ ପାଇଁ ସେମାନେ ନିଜ ନିଜ ଭିତରେ ଲଢ଼େଇ କରନ୍ତି । ଅଣ୍ଡିରା ହାତୀ କୌଣସି ଗର୍ଭସଞ୍ଚାରକ୍ଷମ ମାଈ ହାତୀକୁ ଦେଖିଲେ ତା ସହ ମିଳନ କରେ । ତା'ପରେ ଋତୁଚକ୍ର ପୂରା ହେବା ପର୍ଯ୍ୟନ୍ତ ସେ ମାଈ ହାତୀ ପାଖରେ ରହି ତାକୁ ସୁରକ୍ଷା ଦିଏ ଏବଂ ଅନ୍ୟ ଅଣ୍ଡିରା ହାତୀଙ୍କ ଠାରୁ ଜଗିରଖେ । ହାତୀଙ୍କ ଗର୍ଭଧାରଣ ସମୟ ୧୮ରୁ ୨୨ ମାସ ହୁଏ । ମାଈ ହାତୀର ବିରାଟ ଚେହେରା ଯୋଗୁଁ ଗର୍ଭଧାରଣ ଏତେ ସହଜରେ ଜଣାପଡ଼େ ନାହିଁ ।

ମାଈ ହାତୀ ୧୮-୨୦ ବର୍ଷ ବୟସ ବେଳକୁ ଛୁଆ ଦେବା ଆରମ୍ଭ କରେ ଏବଂ ଜୀବନ କାଳ ଭିତରେ ୪-୫ ବର୍ଷ ଛଡ଼ାରେ ୧୦-୧୨ଟି ଛୁଆ ଜନ୍ମ କରିପାରେ । ଏହା ସେ ରହୁଥିବା ଅଞ୍ଚଳ ଉପରେ ନିର୍ଭର କରେ । ପ୍ରତିକୂଳ ଅବସ୍ଥାରେ ଦୁଇଟି ଛୁଆ ଭିତରେ ବ୍ୟବଧାନ ଅଧିକ ହୋଇପାରେ ।



Digitized by srujanika@gmail.com

## ପ୍ରସବର ବେଳ

ହାତୀଛୁଆ ଜନ୍ମ ହେବାର ବେଳ ଆସିଗଲେ ଦଳର ସବୁ ମାଈ ଓ ଯୁବା ହାତୀ ତାହା ଜାଣିପାରନ୍ତି । ଛୁଆ ଜନ୍ମ ହେବାଟା ଦଳ ପାଇଁ ଗୋଟିଏ ଖୁବ୍ ବଡ଼ ଘଟଣା । ଛୁଆ ଜନ୍ମ ସମୟ ପାଖେଇ ଆସିଲେ ଦଳର ସମସ୍ତେ ମା' ହାତୀ ଉପରେ ନଜର ରଖନ୍ତି ଏବଂ ତା'ର ନିକଟତମ ସମ୍ପର୍କୀୟମାନେ ସବୁ ପ୍ରକାରର ବିପଦରୁ ତାକୁ ସୁରକ୍ଷା ଦିଅନ୍ତି ।

ପିଲା ଜନ୍ମ ପାଇଁ ପ୍ରତି ମାଈ ହାତୀର ପସନ୍ଦ ଅଲଗା ହୁଏ । କିଏ ଦଳ ଛାଡ଼ି ଚାଲିଯାଇ ଏକ ସୁରକ୍ଷିତ ଜାଗାରେ ଜନ୍ମ ଦିଏ । ଆଉ କିଏ ଦଳ ଭିତରେ ହିଁ ରହି ଜନ୍ମ କରେ । ଦଳ ଭିତରେ ରହି ଛୁଆ ଜନ୍ମ ଦେଲେ ଅନ୍ୟ ହାତୀମାନେ ଖୁସିରେ ଜୋରରେ ଶବ୍ଦ କରି ତାକୁ ସ୍ୱାଗତ କରନ୍ତି ।

## ଜନ୍ମଦିନର ତଥ୍ୟ

ଜନ୍ମ ବେଳେ ହାତୀଛୁଆ ଗୋଟିଏ ସାଧାରଣ ବୟସ୍କ ମଣିଷଠାରୁ ବି ଅଧିକ ଓଜନର ହୋଇଥାଏ । ମାଈ ହାତୀଛୁଆ ପ୍ରାୟ ୯୦-୧୦୦ କି.ଗ୍ରା. ଓ ଅଣ୍ଡିରା ହାତୀଛୁଆ ପ୍ରାୟ ୧୨୦ କି.ଗ୍ରା. ପାଏଁ ଓଜନ ହୁଅନ୍ତି । ଛୁଆ ହାତୀର ଦେହ ତୁଳନାରେ ଶୁଣ୍ଢଟି ବେଶ୍ ଛୋଟ ହୋଇଥାଏ । ଜନ୍ମବେଳେ ତା'ର କାନ୍ଧ ଉଚ୍ଚତା ପ୍ରାୟ ୧ମିଟର ହୁଏ । ଜନ୍ମ ହେବାର ଅଳ୍ପ କେତେ ଘଣ୍ଟା ପରେ ସେ ତା ନିଜ ଗୋଡ଼ରେ ଠିଆ ହୋଇପାରେ । ତଥାପି ଧୀର ଗତିରେ ଯାଉଥିବା ଦଳ ସହ ଯିବା ପାଇଁ ତାକୁ ୪୮ ଘଣ୍ଟା ଲାଗିଯାଏ ।

ଜନ୍ମର ବେଶ୍ କିଛି ବର୍ଷ ଯାଏଁ ମା ଓ ଛୁଆ ପ୍ରତି ଦଳର ଯତ୍ନ ଅଧିକ ଥାଏ । କାରଣ ଛୁଆର ନିଜର ଆତ୍ମରକ୍ଷା ପାଇଁ ପ୍ରସ୍ତୁତ ହୋଇନଥାଏ, ତେଣୁ ଶତ୍ରୁ ଆଡୁ ତା ପାଇଁ ବିପଦ ବେଶୀ । ଏସୀୟ ହାତୀଛୁଆ ପାଇଁ ବାଘ ଓ କୁମ୍ଭୀର ଏବଂ ଆଫ୍ରିକୀୟ ହାତୀ ପାଇଁ ସିଂହ ବିପଦର ମୁଖ୍ୟ କାରଣ ହୋଇଥାଏ ।

ହାତୀଛୁଆ ବେଶ୍ ଜୋରରେ ବଢ଼େ । ୫-୬ ବର୍ଷର ହେଲାବେଳକୁ ତା'ର ଓଜନ ପ୍ରାୟ ଏକ ଟନ୍ ହୋଇଯାଏ । ହାତୀ ଏହି ଦୃଷ୍ଟିରୁ ଅସାଧାରଣ ଯେ ସେ ତା'ର ଜୀବନ ସାରା ବଢୁଥାଏ ।

## ଛୁଆ ପାଳିବା

ହାତୀ ଛୁଆର ବଢ଼ିବା ମା ଓ ଦଳର ଯତ୍ନ ଉପରେ ନିର୍ଭର କରେ । ନିଜର ଚାରିପାଖ ବିଷୟରେ ଜାଣିବା ପାଇଁ ଥିବା ସ୍ୱାଭାବିକ କୌତୂହଳରୁ ହିଁ ହାତୀଛୁଆ ବିଭିନ୍ନ କଥା ଶିଖେ । ଛୁଆ ପାଖରେ ଥିବା ଅଭିଜ୍ଞ ଏବଂ ବେଶୀ ଜାଣିଥିବା ହାତୀମାନେ ତାକୁ ଏଥିରେ ସାହାଯ୍ୟ ଓ ନିୟନ୍ତ୍ରଣ କରନ୍ତି । ନଈକୂଳିଆ କାଦୁଅରେ ଲାଖିଯିବା ଠାରୁ ଶତ୍ରୁ ଆକ୍ରମଣ ଯାଏଁ ଛୁଆ ପାଇଁ ଅନେକ ବିପଦ ଥାଏ । କିନ୍ତୁ ଯତ୍ନଶୀଳ ଦଳରେ ସବୁବେଳେ ଜଣେ ମାଉସୀ ବା ବଡ଼ ଭଉଣୀ ଶୁଣ୍ଢ ବଢ଼ାଇ ଛୁଆକୁ ସାହାଯ୍ୟ କରିବା ପାଇଁ ପ୍ରସ୍ତୁତ ଥାଏ ।

ବୟସ୍କା ହାତୀ ତୁଳନାରେ ଅନଭିଜ୍ଞ ଅଳ୍ପବୟସ୍କା ହାତୀ ଛୁଆ ପାଳିବାରେ କମ୍ ସଫଳ ହୁଅନ୍ତି । ଦଳର ସବୁଠାରୁ ବଡ଼ କାମ ହେଉଛି ଛୁଆ ପାଇଁ ପ୍ରତିରକ୍ଷା ବଳୟ ଯୋଗାଇବା । ଦଳର ଯୁବା, ମା ହୋଇନଥିବା, ମାଈ ହାତୀମାନେ ଛୁଆ କଥା ବେଶୀ ବୁଝନ୍ତି । ତାଙ୍କୁ ସମମାତା (*ଆଲୋମଦର*) କୁହାଯାଏ ଏବଂ ହାତୀଛୁଆକୁ ବିପଦରେ ସାହାଯ୍ୟ କରିବା ପାଇଁ ସେମାନେ ସବୁବେଳେ ପ୍ରସ୍ତୁତ ଥା'ନ୍ତି । ପୂରା ଦଳ ଏକାଠି ହୋଇ ହାତୀଛୁଆର ବୁଲିବାରେ ଏବଂ ଖାଦ୍ୟ ସଂଗ୍ରହ କରିବାରେ ସାହାଯ୍ୟ କରେ । ଏମାନେ ଛୁଆକୁ ବିଭିନ୍ନ ବିପଦରୁ ରକ୍ଷା କରନ୍ତି ଏବଂ ସାମାଜିକ ଅନୁଭୂତି ସବୁ ଦେଇଥାନ୍ତି । ଛୁଆର ବଞ୍ଚିବା ଦଳରେ ଥିବା ସମମାତାଙ୍କ ସଂଖ୍ୟା ଉପରେ ନିର୍ଭର କରେ । ଦଳରେ ଯେତେ ବେଶୀ ସମମାତା ଥିବେ ଛୁଆ ବଞ୍ଚିବାର ସମ୍ଭାବନା ସେତେ ଅଧିକ ହେବ । ଏହା କିନ୍ତୁ ଦଳର ଆକାର ଉପରେ ନିର୍ଭର କରେନାହିଁ ।

## ବଢ଼ିବା

ବଡ଼ ହେବା ଆଗରୁ ହାତୀଛୁଆର ଅନେକ କିଛି ଶିଖିବାର ଥାଏ । ସେ ତା'ର ନିଜ ଚାରିପାଖ ବିଷୟରେ ବହୁତ କୌତୂହଳୀ ଥାଏ ଏବଂ ଶୁଣ୍ଢ ସାହାଯ୍ୟରେ ସବୁକିଛି ଖେଳାଇ ଜାଣିବାକୁ ଚେଷ୍ଟା କରେ । କିନ୍ତୁ ହାତୀଛୁଆର ବଡ଼ ଅସୁବିଧା ଏହା ଯେ ସେ ତା'ର ଶୁଣ୍ଢକୁ ଠିକ୍ ଭାବରେ ଚଳାଇ ପାରେ ନାହିଁ କି ନିୟନ୍ତ୍ରଣ କରିପାରେ ନାହିଁ । ମାସ ମାସ ଧରି ଅଭ୍ୟାସ କରି ସେ ଏହା ଶିଖିପାରେ ।



ହାତୀଛୁଆ ତା ମା ଓ ଦଳ ଉପରେ ଅନେକ ବର୍ଷ ପାଇଁ ନିର୍ଭର କରେ । ପ୍ରଥମ ବର୍ଷରେ ସେ ପ୍ରାୟ ମା'ର ପାଖେ ପାଖେ ରହିଥାଏ । ଦ୍ୱିତୀୟ ବର୍ଷରେ କିଛିଟା ସ୍ୱାଧୀନ ହୋଇ ବୁଲିବାକୁ ଆରମ୍ଭ କରେ । ୩ରୁ ୫ ବର୍ଷ ଯାଏଁ ସେ ମା'ଠାରୁ କ୍ଷୀର ଖାଏ ଏବଂ ପ୍ରଥମ ଦୁଇବର୍ଷ ଯାଏଁ ଏହା ତା'ର ଖାଦ୍ୟର ମୁଖ୍ୟ ଭାଗ ହୋଇଥାଏ । ପ୍ରଥମ ୩-୪ ମାସ ଭିତରେ ସେ କଠିନ ଖାଦ୍ୟ ଖାଇବାକୁ ଆରମ୍ଭ କରେ । କିନ୍ତୁ ଶୁଣ୍ଢ ଉପରେ ନିୟନ୍ତ୍ରଣ ନଥିବାରୁ ସେ ଖାଦ୍ୟ ସଂଗ୍ରହ କରିପାରେ ନାହିଁ । ତେଣୁ ସେ କେବଳ ଘାସ ଖାଏ । ବେଳେ ବେଳେ ସେ ମା ବା ଅନ୍ୟ କାହା ମୁହଁରୁ ଛୋଟ ଡାଳ ଭିଡ଼ି ନେଇ ଖାଏ ।

କେବଳ ମା କ୍ଷୀର ଖାଉଥିବା ହାତୀଛୁଆକୁ ବୟସ୍କ ହାତୀର ଗୋବର କିଛି ଖାଇବାକୁ ହୁଏ । କାରଣ ପେଟରେ ସେଲୁଲୋଜ ହଜମ କରୁଥିବା ଦରକାରୀ ଅଣୁଜୀବ ତାକୁ ଗୋବରରୁ ମିଳେ ।

ହାତୀଛୁଆ ଶତକଡ଼ା ପାଞ୍ଚ ଭାଗ ସମୟ ଖେଳରେ କଟାଇଥାଏ । ସେ କିଛି ଜିନିଷକୁ ଟାଣି, ଫିଙ୍ଗି ମାଟିରେ ଗଡ଼େଇ ଖେଳିବାକୁ ଭଲ ପାଏ । ହାତୀର ଖେଳ ବେଶ୍ ଜଟିଳ ଏବଂ ଏଥିରୁ ସେ ଅନେକ ଫଳ ପାଇଥାଏ । ଖେଳ ଜିନିଷଟିକୁ ଜାଣିବାରେ ତାକୁ ଏହା ସାହାଯ୍ୟ କରେ, ତା'ର ମାଂସପେଶୀର ଦକ୍ଷତା ବଢ଼ାଏ ଏବଂ ଅନ୍ୟ ଛୁଆଙ୍କର କ୍ଷମତା କଳିବାରେ ସାହାଯ୍ୟ କରେ । ତେଣୁ ସେ କେବଳ ମଜା ପାଇଁ ଖେଳେ ନାହିଁ । ବରଂ ଏହା ତା'ର ଦକ୍ଷତା, ଶକ୍ତି ଏବଂ ଜ୍ଞାନ ବଢ଼ାଇଥାଏ ।

ଶାରୀରିକ ଦକ୍ଷତା ବଢ଼ିବା ସହିତ ଛୁଆଟିର ଅନେକ ସାମାଜିକ ଆଦାନ ପ୍ରଦାନ ବି ହୋଇଥାଏ । ପାଞ୍ଚ ବର୍ଷର ହେବା ଯାଏଁ ଛୁଆଟିର ବଞ୍ଚି ରହିବାର ଏବଂ ସାମାଜିକ ଦକ୍ଷତା ବଢ଼ିଥାଏ । ଏହି ସମୟରେ ସେମାନେ ଖାଦ୍ୟ ଉପଯୋଗୀ ଗଛ, ଖାଦ୍ୟ ଓ ପାଣିର ଉତ୍ସ ଆଦି ବିଷୟରେ ଏବଂ ଦଳର ଅନ୍ୟମାନଙ୍କ ବିଷୟରେ ବିଭିନ୍ନ କଥା ମଧ୍ୟ ଶିଖିଥା'ନ୍ତି ।

# ଅଳ୍ପବୟସ୍କ ଅଣ୍ଡିରା ହାତୀ

ଗୋଟିଏ ମହିଳାଙ୍କ ରାଜ୍ୟରେ ଜନ୍ମ ହୋଇଥିବା ଅଣ୍ଡିରା ହାତୀଛୁଆ ସମୟ କ୍ରମେ ସ୍ୱାଧୀନ ହୁଏ । ବେଶ୍ ପିଲାବେଳରୁ ଅଣ୍ଡିରା ହାତୀଛୁଆ ମାଈଛୁଆ ତୁଳନାରେ ମା ଉପରେ କମ୍ ନିର୍ଭର କରେ ଏବଂ



Digitized by srujanika@gmail.com

ଅନେକ ସମୟରେ ମା'କୁ ଛାଡ଼ି ସ୍ୱାଧୀନ ଭାବରେ ଖେଳିବାକୁ ବା ଖାଦ୍ୟ ଖୋଜିବାକୁ ଚାଲିଯାଏ । ଛଅବର୍ଷର ହେଲାବେଳକୁ କେବେ କେବେ ସେମାନେ ନିଜ ଦଳ ଛାଡ଼ି ଅନ୍ୟ କେଉଁ ଦଳରେ କିଛି ସମୟ କଟାନ୍ତି । ୧୪-୧୫ ବର୍ଷ ବେଳକୁ ଏହା ଆହୁରି ବଢ଼ିଯାଏ ଓ ଶତକଡ଼ା ପ୍ରାୟ ୮୦ ଭାଗ ସମୟ ସେମାନେ ନିଜ ଦଳ ବାହାରେ କଟାନ୍ତି । ଶେଷରେ ପୂରା ବାହାରିଯା'ନ୍ତି ।

ବେଳେ ବେଳେ ମାଈ ହାତୀମାନେ ଅଳ୍ପବୟସ୍କ ଅଣ୍ଡିରା ହାତୀଙ୍କୁ ଆକ୍ରମଣ କରନ୍ତି । ସାଧାରଣତଃ ଅଣ୍ଡିରା ହାତୀ ଅନ୍ୟ ଦଳରେ ମିଶିଲେ ବା ତା'ର ମା ମରିଯାଇଥିଲେ ଏପରି ଅବସ୍ଥା ହୁଏ ।

## ଅଣ୍ଡିରା ହାତୀର ଜୀବନ

ଅଣ୍ଡିରା ହାତୀର ଜୀବନ ଧାରା ମାଈ ହାତୀଠାରୁ ବହୁତ ଅଲଗା । ଅଣ୍ଡିରା ହାତୀ ମାଈ ହାତୀ ଅପେକ୍ଷା ଅଧିକ ଶକ୍ତି ଦରକାର କରେ । ତେଣୁ ସେମାନେ ଦଳ ଛାଡ଼ିବାକୁ ବାଧ୍ୟ ହୁଅନ୍ତି । ଆହୁରି ମଧ୍ୟ ଅଣ୍ଡିରା ହାତୀର ଦେହର ଆକାର ବଡ଼ ହୋଇଥିବାରୁ ସେ ପ୍ରତିକୂଳ ପରିବେଶରେ ବେଶି ସହଜରେ ଚଳିପାରେ, ତେଣୁ ନୂଆ ନୂଆ ଜାଗା ଖୋଜି ସେସବୁର ସୁବିଧା ନେବାରେ ତା ପ୍ରତି ବେଶି ବିପଦର ସମ୍ଭାବନା ନଥାଏ । ପ୍ରାୟ ଯୁବା ଅବସ୍ଥାରେ ପହଞ୍ଚିଲା ବେଳକୁ ଅଣ୍ଡିରା ହାତୀ ଦଳ ଛାଡ଼ି ଏକା ବୁଲେ ବା ତା'ଭଳି ଅନ୍ୟ ଅଳ୍ପବୟସ୍କ ହାତୀ ଦଳରେ ମିଶେ ।

ଅଣ୍ଡିରା ହାତୀ ତା ଛୁଆ ପ୍ରତି ପ୍ରାୟ କିଛି ଆଗ୍ରହ ଦେଖାଏ ନାହିଁ । ସାଧାରଣତଃ ସେମାନେ ତାଙ୍କ ପାରିବାରିକ ଦଳରୁ ଅଲଗା ରହନ୍ତି ଏବଂ ଦଳର ଅନ୍ୟ ଅଣ୍ଡିରା ହାତୀଙ୍କ ଭିତରେ ନିଜର ସମ୍ମାନ ବଜାୟ ରଖିବା ଦିଗରେ ବେଶି ଧ୍ୟାନ ଦିଅନ୍ତି ।

## ଦଳ ଛାଡ଼ି ଯିବା

ବୟସ୍କ ଅଣ୍ଡିରା ହାତୀ ଏକା ରହିବାକୁ ଭଲପାଏ । ସେମାନେ ଅଳ୍ପସଂଖ୍ୟକ ଅଣ୍ଡିରା ହାତୀଙ୍କ ସହ ମିଶି କିଛିଦିନ ପାଇଁ ଦଳ ଗଢ଼ିପାରନ୍ତି । ୧୦-୧୫ ବର୍ଷର ହେଲାବେଳକୁ ଯୁବା ହାତୀ ଦଳ ଛାଡ଼ିଦିଅନ୍ତି ଏବଂ ନିଜର ଇଲାକା ସ୍ଥିର କରନ୍ତି । ଏହାକୁ ବିକ୍ଷେପଣ ବା *ଡିସ୍‌ପର୍‌ସାଲ୍* କୁହାଯାଏ ଏବଂ ହାତୀମାନଙ୍କ ଭିତରେ ଏହା ଅତି ଗୁରୁତ୍ୱପୂର୍ଣ୍ଣ । ବିକ୍ଷେପଣର ମୂଳ କାରଣ ହେଉଛି ସମ୍ଭୋଗ ପାଇଁ ମାଈ ଓ ଅଣ୍ଡିରାଙ୍କ ଭିତରେ ପ୍ରତିଯୋଗିତା । କିନ୍ତୁ ଏହା ଗୋଟିଏ ଲାଭ ହେଉଛି ଯେ ଏହା ସମ୍ପର୍କୀୟ ହାତୀମାନଙ୍କର ନିଜ ନିଜ ଭିତରେ ମିଳନର ସମ୍ଭାବନାକୁ କମ୍ କରିଦିଏ । ହାତୀମାନଙ୍କର ଆନୁବଂଶିକ ବିବିଧତା ବଜାୟ ରଖିବାରେ ଏହା ସାହାଯ୍ୟ କରେ । ସେଥିପାଇଁ ବିଭିନ୍ନ ହାତୀ ଦଳ ରହୁଥିବା ଅଞ୍ଚଳ ଭିତରେ ସଂଯୋଗ ପଥ ରହିବା ଅତି ଜରୁରୀ । (ସଂଯୋଗ ପଥ ବିଷୟରେ ପୃଷ୍ଠା ୩୦ରେ ଅଧିକ ରହିଛି)

ଅଣ୍ଡିରା ହାତୀ ତା ମାଆର ଦଳ ଛାଡ଼ି ଯିବାପରେ ଖେଳ ଲଢ଼େଇ ସାହାଯ୍ୟରେ ଅନ୍ୟ ଅଣ୍ଡିରା ହାତୀଙ୍କ ବଳ କଷିଥାଏ । ଏହା ଫଳରେ କେହି ବିଶେଷ ଆଘାତ ନପାଇ ଅଣ୍ଡିରାଙ୍କ ଭିତରେ ବରିଷ୍ଠତାର ସ୍ତର ସ୍ଥିର ହୋଇପାରେ । ଆହୁରି ମଧ୍ୟ ଅଣ୍ଡିରାମାନଙ୍କର ସାମାଜିକ ଶୃଙ୍ଖଳା ଗଢ଼ିବାରେ ମଧ୍ୟ ଏହା ସାହାଯ୍ୟ କରିଥାଏ ।

ଅଣ୍ଡିରା ହାତୀ ମାଈ ହାତୀର ପରିସ୍ରା ପ୍ରତି ବହୁତ ଆଗ୍ରହ ଦେଖାଇଥାଏ । ପରିସ୍ରାର ଗନ୍ଧରୁ ସେ ଜାଣିପାରେ ଯେ ମାଈ ହାତୀଟି ଋତୁଚକ୍ରରେ ଅଛି ବା ମିଳନ ପାଇଁ ପ୍ରସ୍ତୁତ କି ନୁହେଁ । କାରଣ ମାଈ ହାତୀର ଋତୁଚକ୍ର ବେଳର ପରିସ୍ରାର ଗନ୍ଧ ସାଧାରଣ ବେଳ ଠାରୁ ଅଲଗା ହୋଇଥାଏ ।

# ଯୋଗାଯୋଗ ରଖିବା

ହାତୀମାନେ ଅନେକ ବାଟରେ ନିଜ ନିଜ ଭିତରେ ଯୋଗାଯୋଗ ରଖନ୍ତି । ଏଥିପାଇଁ ତାଙ୍କର ସବୁ ଇନ୍ଦ୍ରିୟ କାମରେ ଲାଗିଥାଏ । ମଣିଷ ଭଳି ହାତୀ ଆଖି ଉପରେ ଏତେ ନିର୍ଭର କରେନାହିଁ । ତା'ର ଘ୍ରାଣଶକ୍ତି ବହୁତ ଭଲ । ସେ ଶୁଙ୍ଘିକରି ଅନ୍ୟ ହାତୀର ସ୍ୱାସ୍ଥ୍ୟ ଓ ଲିଙ୍ଗୀୟ ଅବସ୍ଥା ଜାଣିପାରେ । ସ୍ପର୍ଶ ଦ୍ୱାରା ମଧ୍ୟ ସେ ଯୋଗାଯୋଗ କରିଥାଏ । ସ୍ପର୍ଶ ଦ୍ୱାରା ଜଣେ ଅନ୍ୟ ଜଣକୁ ସାନ୍ତ୍ୱନା ଦେଇଥାଏ । ହାତୀଛୁଆ ତା ମାଆର ପରଶ ପାଇ ନିଜକୁ ସୁରକ୍ଷିତ ମନେକରେ ।

## ଦୂରସଂଚାର

ବିଭିନ୍ନ ସୂଚନା ଦେବା ପାଇଁ ହାତୀ କେତେ ରକମର ଶବ୍ଦ କରେ । ଅଳ୍ପ ଆବୃତ୍ତି (*ଫ୍ରିକ୍ୱେନ୍‌ସି*) ବିଶିଷ୍ଟ ଶବ୍ଦ (ଅବଶବ୍ଦ ବା *ଇନ୍‌ଫ୍ରାସାଉଣ୍ଡ* ଧ୍ୱନିର ଆବୃତ୍ତି ୪-୧୫ ହର୍ଜ ଭିତରେ) କରି ସେ ଦୂରକୁ ଖବର ପଠାଇଥାଏ । ଏହି ଶବ୍ଦର ଆବୃତ୍ତି ଏତେ ଅଳ୍ପ ଯେ ମଣିଷ ଏହାକୁ ଶୁଣିପାରେନାହିଁ । ମଣିଷ ଶୁଣିପାରିବା ପାଇଁ ଆବୃତ୍ତି ୨୦ ହର୍ଜ ଠାରୁ ଅଧିକ ହେବା ଦରକାର । ଦେଖାଯିବା ବା ବାସ୍ନା ବାରିହେବା ଦୂରତାର ବାହାରେ ଥିବା ସାଥୀମାନଙ୍କ ପାଖକୁ ଖବର ପଠାଇବାରେ ଏହି କମ୍ ଆବୃତ୍ତିର ଶବ୍ଦ କାମ ଦେଇଥାଏ । କିଏ କେଉଁଠି ଅଛି, ତା'ର ପରିଚୟ ଏବଂ ସେ କ'ଣ କରୁଛି ଆଦି ଜଣାଇବା ପାଇଁ ଏହା ସାହାଯ୍ୟ କରେ । ଅନ୍ୟ ହାତୀଙ୍କୁ ବିପଦ ବିଷୟରେ ସତର୍କ କରିବାରେ ମଧ୍ୟ ଏହା କାମ ଦେଇଥାଏ ।

## ଶୁଣ୍ଢରେ ଅଭିନନ୍ଦନ

ମଣିଷ ଭଳି ହାତୀ ବି ତା'ର ସାଙ୍ଗମାନଙ୍କୁ ଦେଖିଲେ ଲମ୍ବାଚଉଡ଼ା ଅଭିନନ୍ଦନ ଜଣାଏ । ଶୁଣ୍ଢକୁ ଶୁଣ୍ଢରେ ଛନ୍ଦି, ପରସ୍ପରର ମୁହଁ, ଦେହ ଶୁଙ୍ଘି, ଲାଳ ଚାଖି ସେମାନେ ନିଜର ଖୁସି ଜଣାନ୍ତି । ଏହି ସମୟରେ ବାସ୍ନା, ସ୍ପର୍ଶ, ସ୍ୱାଦ ଏବଂ ଶବ୍ଦର ଆଦାନ ପ୍ରଦାନ ହୋଇଥାଏ ।

## ପୁନର୍ମିଳନ

ପୁରୁଣା ସାଙ୍ଗ ଓ ସମ୍ପର୍କୀୟମାନଙ୍କ ସହ ଦେଖାହେଲେ ହାତୀ ପୁଣିଥରେ ତା'ର ସମ୍ପର୍କ ଯୋଡ଼ିଥାଏ । ସେ ୨୦ ମିନିଟ ପାଇଁ ହେଉ ବା କେତେଦିନ ପାଇଁ ଅଲଗା ହେଉଥାଉ ପଛେ, ଛଡ଼ାଛଡ଼ି ପରେ ପୁଣି ଥରେ ଏକାଠି ହେଲାବେଳେ ହାତୀ ପରସ୍ପର ଆଡ଼କୁ ଧାଇଁ ଆସିବା, ମଳତ୍ୟାଗ ବା ପରିସ୍ରା କରିବା ଏବଂ ଜୋରରେ ଶବ୍ଦ ବାହାର କରିବା ଆଦି କରିଥାଏ । ସାଧାରଣତଃ ସେମାନେ ପରସ୍ପରର ପାଟି, ମୁହଁ, ଜନନାଙ୍ଗ, ଦାନ୍ତ ଆଦିକୁ ଛୁଇଁଥାନ୍ତି ଏବଂ ମୁଣ୍ଡ ଓ ଦେହ ଘଷି ହୋଇଥାନ୍ତି । ହାତୀମାନଙ୍କର ଅଭିନନ୍ଦନ ସାଧାରଣତଃ ହୋହଲ୍ଲା ଏବଂ ଉଚ୍ଚ ଶବ୍ଦ ମାଧ୍ୟମରେ ବେଶ୍ ଆବେଗଭରା ହୋଇଥାଏ ।

## ମୃତ୍ୟୁର ସୂଚନା

ହାତୀ ଗୋଟିଏ ଖୁବ୍ ସମ୍ବେଦନଶୀଳ ଜୀବ । ସେମାନଙ୍କର ହାବଭାବ ଅନେକ ଦୃଷ୍ଟିରୁ ମଣିଷର ବ୍ୟବହାର ଭଳି । ସେମାନଙ୍କ ଭିତରେ ମାନସିକ ବନ୍ଧନ ମଧ୍ୟ ବହୁତ ଶକ୍ତ ହୋଇଥାଏ । ମଣିଷ କ୍ଷେତ୍ରରେ ଦେଖାଯାଉଥିବା ଭଳି କାହାର ମୃତ୍ୟୁ ସେମାନଙ୍କ ମନରେ ବି ବେଶ୍ ଛାପ ପକାଏ । ହାତୀମାନେ ସାଥି ବା ସମ୍ପର୍କୀୟ ମରିଥିବା ଜାଗାକୁ ବର୍ଷକ ପରେ ଫେରିଯାଇ ତା'ର ହାଡ଼ ଆଦିକୁ ଛୁଇଁବାର ଦୃଷ୍ଟାନ୍ତ ବି ରହିଛି ।



Digitized by srujanika@gmail.com

## ମସ୍ତ

ଅଣ୍ଡିରା ହାତୀର ଶାରୀରିକ, ଶରୀର କ୍ରିୟାତ୍ମକ, ଏବଂ ବ୍ୟବହାରିକ ପରିବର୍ତ୍ତନକୁ ମସ୍ତ କୁହାଯାଏ । ମସ୍ତ ବେଳେ ଆଖି ଏବଂ କାନ ମଝିରେ ଥିବା ଗ୍ରନ୍ଥି ଫୁଲିଯାଏ ଏବଂ ତାହା ଖୋଲିଯାଇ ସେଥିରୁ *ମଦ* ବା *ମସ୍ତ* ରସ ବୁହେ । ସାଧାରଣ ସମୟରେ ଏହି ଗ୍ରନ୍ଥିଟି ବନ୍ଦ ଥାଏ ଏବଂ ପ୍ରାୟ ଦେଖାଯାଏ ନାହିଁ । ତେଲିଆ, ଗାଢ଼ ମାଟିଆ ରଙ୍ଗର ଏହି ମସ୍ତ ରସ ବଡ଼ କଡ଼ା ଗନ୍ଧ ହୁଏ । ହାତୀର ବୟସ ଅନୁସାରେ ମସ୍ତ ରସର ରଙ୍ଗ ଏବଂ ବାସ୍ନା ଅଲଗା ହୋଇଥାଏ । ମଧ୍ୟବୟସ୍କ ଓ ବୁଢ଼ାହାତୀଙ୍କ କ୍ଷେତ୍ରରେ ଏହା ପ୍ରାୟ କଳା ରଙ୍ଗର ହୋଇଥିଲା ବେଳେ ଅଳ୍ପବୟସ୍କ ହାତୀଙ୍କ ପାଇଁ ଏହା ସାଧାରଣତଃ ମାଟିଆ ରଙ୍ଗର ହୋଇଥାଏ । ମସ୍ତ ବେଳେ ହାତୀ ତା'ର ପରିସ୍ରା ଅଟକାଇ ରଖିପାରେ ନାହିଁ । ଏହା ବୁନ୍ଦା ବୁନ୍ଦା ହୋଇ ସବୁବେଳେ ପଡୁଥାଏ ।

ଅଣ୍ଡିରା ହାତୀ ୧୫-୨୦ ବର୍ଷ ବୟସ ଭିତରେ ପ୍ରଥମେ ମସ୍ତ ଅବସ୍ଥାକୁ ଆସିଥାଏ । ଏହି ସମୟରେ ଖୁବ୍ ଅଳ୍ପ ପରିମାଣର ମସ୍ତ ରସ ଝରେ । ମୁହଁର ମାତ୍ର ୨୫ ସେ.ମି. ତଳକୁ ବି ଏହା ପହଞ୍ଚେ ନାହିଁ । ଏହି ସମୟରେ ମୁଣ୍ଡର ଗ୍ରନ୍ଥି ଫୁଲିନଥାଏ ବା ପରିସ୍ରା ବୁନ୍ଦା ବୁନ୍ଦା ହୋଇ ଝରେ ନାହିଁ । ପ୍ରଥମ କେତେ ମସ୍ତ ବେଳେ ସେ ଅନ୍ୟ ବୟସ୍କ ଅଣ୍ଡିରା ହାତୀ ସହ ଯୁଦ୍ଧରେ ଜିତିପାରୁ ନଥିବାରୁ ମାଈ ହାତୀ ସହ ପ୍ରାୟ ମିଶିପାରେ ନାହିଁ । ବୟସ ବଢ଼ିବା ସହିତ ମସ୍ତ ଅବସ୍ଥାର ସମୟ କାଳ ବଢ଼ିଚାଲେ । ୨୫-୩୦ ବର୍ଷର ହେଲାବେଳକୁ ମୁଣ୍ଡ ଉପର ଫୁଲିବା ସ୍ପଷ୍ଟ ଜଣାପଡ଼େ । ଏବେ ବେଶ୍ ପରିମାଣର ମସ୍ତ ରସ ଝରେ ଓ ପରିସ୍ରା ବୁନ୍ଦା ବୁନ୍ଦା ହୋଇ ପଡ଼େ । ଏହାପରେ ହାତୀ ପ୍ରାୟ ବର୍ଷକୁ ଥରେ ମସ୍ତ ଅବସ୍ଥାକୁ ଆସେ । ହାତୀମାନେ ଏହି ଅବସ୍ଥାରେ ୪ରୁ ୬ ସପ୍ତାହ ଯାଏଁ ରହନ୍ତି । ପୂରା ମସ୍ତ ଅବସ୍ଥାରେ ଏତେ ରସ ଝରେ ଯେ ତାହା ବୋହିଆସି ମାଟିରେ ପଡ଼େ । ହାତୀ ରାଗିଗଲେ ଝରୁଥିବା ମସ୍ତ ରସର ପରିମାଣ ବଢ଼ିଯାଏ । ୪୦ ବର୍ଷ ବୟସରେ ପହଞ୍ଚିଲା ବେଳକୁ ହାତୀର ଦେହ ପୂରା ବଢ଼ିଯାଇଥାଏ ଏବଂ ତା ଦେହରୁ ଖୁବ୍ ବେଶି ପରିମାଣର ମସ୍ତ ରସ ଝରିଥାଏ ।



ମସ୍ତ ରସ ଝରିବାର ବେଗ ଓ ପଡୁଥିବା ପରିସ୍ରାର ପରିମାଣ ମସ୍ତ ଅବସ୍ଥାରେ ଆଭ୍ୟନ୍ତରୀଣ ପରିବର୍ତ୍ତନର କେବଳ ବାହ୍ୟ ସୂଚନା ମାତ୍ର । ମସ୍ତ ସମୟରେ ହାତୀ ଦେହର ଅସଲ ପରିବର୍ତ୍ତନ ହେଉଛି ତା'ର ରକ୍ତରେ ଟେଷ୍ଟୋଷ୍ଟେରନ୍ ନାମକ ହରମୋନର ପରିମାଣରେ ଅତ୍ୟଧିକ ବୃଦ୍ଧି । ଟେଷ୍ଟୋଷ୍ଟେରନ ବଢ଼ିବା ଫଳରେ ହାତୀର ଶୁକ୍ରାଣୁ ତିଆରି ବଢ଼ିଯାଏ, କାମ ଇଚ୍ଛା ବଢ଼େ ଏବଂ ସେ ଉଗ୍ର ହୋଇଯାଏ । ସଫଳ ବଂଶବିସ୍ତାର ପାଇଁ ଏସବୁ ଗୁଣ ଖୁବ୍ ଗୁରୁତ୍ୱପୂର୍ଣ୍ଣ । ହାତୀର ଶରୀର କ୍ରିୟାରେ ଏହି ପରିବର୍ତ୍ତନ ତା'ର ଚାଲିଚଳଣକୁ ବଦଳାଇ ଦେଇଥାଏ ।

ମସ୍ତ ଅବସ୍ଥାରେ ଅଣ୍ଡିରା ହାତୀ ବେଶ୍ ଉଗ୍ର ଥାଏ । ଏହି ସମୟରେ ସେ ମୁଣ୍ଡ ଉପରକୁ ଉଠାଇ, ଦାନ୍ତ ଆଗକୁ କାଢ଼ି, କାନ ମେଲାଇ ମାଈ ହାତୀ ଖୋଜିବୁଲେ । ଉଗ୍ର ଅର୍ଥ ନୁହେଁ ଯେ ସେ ଯୁଦ୍ଧ କରେ । କିନ୍ତୁ ତା'ର ଏହି ଭଙ୍ଗୀ ତା'ର ଦୃଢ଼ ଆତ୍ମବିଶ୍ୱାସ ଓ ଦରକାର ପଡ଼ିଲେ ସେ ଯୁଦ୍ଧ କରିବା ପାଇଁ ପ୍ରସ୍ତୁତ ଥିବା କଥା ଜଣାଇଦିଏ । ମସ୍ତ ସମୟରେ ଗୋଟିଏ ଅଳ୍ପ ବୟସର ହାତୀ ବୟସ୍କ ହାତୀକୁ ଯୁଦ୍ଧର ଡାକରା ଦେଇପାରେ । ମସ୍ତରେ ନଥିବା ହାତୀ ମସ୍ତ ହାତୀଠାରୁ ଦୂରେଇ ରହନ୍ତି । କାରଣ ମସ୍ତ ସମୟରେ ହାତୀର ବ୍ୟବହାର ବିଷୟରେ କିଛି ନିର୍ଦ୍ଦିଷ୍ଟ କହିହୁଏ ନାହିଁ ।

ମସ୍ତ ଅବସ୍ଥାରେ ଥିଲାବେଳେ ହାତୀଟି ତା'ର ସାଧାରଣ ବିଚରଣ ଅଞ୍ଚଳଠାରୁ ବେଶ୍ ଅଧିକ ଅଞ୍ଚଳରେ ଘୂରିବୁଲେ, କିନ୍ତୁ କମ୍ ଖାଏ । ଅନବରତ ପରିସ୍ରା ପଡୁଥିବାରୁ ହାତୀ ଦେହରୁ ବେଶ୍ ପାଣି ଚାଲିଯାଏ । ପରିସ୍ରା ଓ ମସ୍ତ ରସର ବାସ୍ନା ଖୁବ୍ କଡ଼ା ଓ ତାହା ମାଈ ହାତୀକୁ ଆକର୍ଷିତ କରେ । ପାଣିରେ ପଶିଲେ ଏହି ବାସ୍ନା ଧୋଇଯିବା ଡରରେ ପୂରା ମସ୍ତରେ ଥିବା ହାତୀ ଗାଧୁଆ ଛାଡ଼ିଦିଏ । ପରିସ୍ରାରେ ଦେହରୁ ପାଣି ଚାଲିଯାଉଥିବାରୁ ଏବଂ ନଗାଧୋଇବାରୁ ଦେହର ଗରମ କମୁନଥିବାରୁ ହାତୀକୁ ବାଧା ଆସିଯାଏ ।

ଏହି ସବୁ ସାଙ୍ଗକୁ ହାତୀର ମନୋଭାବ ଓ ବ୍ୟବହାର ମଧ୍ୟ ବଦଳିଯାଏ ଏବଂ ସେସବୁର ଫଳାଫଳ ଗୁରୁତର ହୋଇପାରେ । ମସ୍ତ ରସ ଝରିବାର ୪୦ ଦିନ ଆଗରୁ ହାତିର ଚାଲିଚଳଣିରେ ପରିବର୍ତ୍ତନ ଆସେ ଏବଂ କ୍ଷରଣ ବନ୍ଦ ହେବା ପରେ ୪୦ ଦିନ ଯାଏଁ ରହିଥାଏ । ତେଣୁ ହାତୀର ମସ୍ତ ଅବସ୍ଥା ମୋଟରେ ପ୍ରାୟ ୧୨୦ ଦିନ ପର୍ଯ୍ୟନ୍ତ ରହିପାରେ । ମସ୍ତ ରସ ଝରିବାର ବେଗ ବଢ଼ିବା ସହିତ ହାତୀଟି ବେଶି ପ୍ରତିକ୍ରିୟାଶୀଳ ଓ ଆକ୍ରମଣାତ୍ମକ ହୋଇଉଠେ । ମସ୍ତ ସମୟରେ ହାତୀର ବଳ ଅସାଧାରଣ ଭାବରେ ବଢ଼ିଯାଏ, ତେଣୁ ଅନ୍ୟ ପୁରୁଷ ହାତୀମାନେ ଏହି ସମୟରେ ତା'ଠାରୁ ଦୂରେଇ ରହନ୍ତି ।

ପୋଷା ହାତୀର ମସ୍ତ ରସ ଝରିବାର ବେଶ୍ ଆଗରୁ ମସ୍ତ ଅବସ୍ଥା ଆସୁଥିବା କଥା ତା'ର ମାହୁନ୍ତ ଜାଣିପାରେ । ହାତୀର ହାବଭାବ ବଦଳିବା ଲକ୍ଷ କରି ମାହୁନ୍ତ ଏହାର ସୂଚନା ପାଇଯାଏ । ହାତୀର ଆଖିଗୁଡ଼ିକ ଅଲଗା ଦେଖାଯାଏ ଓ ତାହା ଏକ ବିଦ୍ରୋହୀ ମନୋବୃତ୍ତିର ସୂଚନା ଦିଏ । ତା'ର ଚାଲିଚଳଣ କିଛି ଠିକ୍ ରହେନାହିଁ । ସାଧାରଣ ଅବସ୍ଥାଠାରୁ ସେ ଅନେକ ଅଲଗା ଲାଗେ । ବେଶ୍ ଶାନ୍ତ ସରଳ ହାତୀଟିଏ ମସ୍ତ ଅବସ୍ଥାରେ ମାହୁନ୍ତ କଥା ନ ମାନିବାର ଅନେକ ଦୃଷ୍ଟାନ୍ତ ରହିଛି । ମସ୍ତ ଅବସ୍ଥାରେ ନିୟନ୍ତ୍ରଣ ବାହାରକୁ ଯିବା ଆଗରୁ ଅଭିଜ୍ଞ ମାହୁନ୍ତ ହାତୀକୁ ବାନ୍ଧିଦିଏ । ମସ୍ତ ଅବସ୍ଥା ଶାନ୍ତ ନହେବା ଯାଏଁ ତାକୁ ଦୂରରୁ ଖାଦ୍ୟ ଦିଆଯାଏ । ମସ୍ତ ଅବସ୍ଥାରେ ହାତୀକୁ ଖୁଆଡ଼ରେ ରଖାଯାଏ ଏବଂ କମ୍ ଖାଦ୍ୟ ଦିଆଯାଏ । ଆଗ କାଳରେ ମାହୁନ୍ତ ମସ୍ତ ଅବସ୍ଥାର ହାତୀକୁ ଅଟାଗୁଳା ଭିତରେ ଅଫିମ ପୂରାଇ ଖାଇବାକୁ ଦେଉଥିଲେ । ଏବେ ବେଶ୍ ପରିମାଣର ବ୍ରୋମାଇଡ୍ ଦିଆଯାଉଛି । ତମ୍ବାଖୁ ମଧ୍ୟ ମସ୍ତ ଅବସ୍ଥାରେ ଭଲ ସାହାଯ୍ୟ କରେ ।



Digitized by srujanika@gmail.com

# ହାତୀଛୁଆର ଜନ୍ମ ଘୋଷଣା

| ହାତୀଛୁଆ ଆସିବାର ଘୋଷଣା | |
|---|---|
| *ଉଦ୍ଦେଶ୍ୟ* | ହାତୀଛୁଆର ଗୁଣଧର୍ମ ଓ ହାତୀଙ୍କ ପାରିବାରିକ ଜୀବନ ବିଷୟରେ ପିଲାମାନେ ଜାଣିବେ |
| *ସ୍ତର* | ମାଧ୍ୟମିକ |
| *ବିଷୟ* | ବିଜ୍ଞାନ, କଳା ଏବଂ ହସ୍ତକର୍ମ |
| *ଦଳର ଆକାର* | ୨-୩ ଜଣିଆ ଦଳ |
| *ସ୍ଥାନ* | ଶ୍ରେଣୀଗୃହ ଭିତରେ |
| *ସମୟ ଅବଧି* | ୩୦ ମିନିଟ |
| *ସାମଗ୍ରୀ* | ଲେଖା ସାମଗ୍ରୀ, ରଙ୍ଗ, କ୍ରେୟନ, ହାତୀଛୁଆର ଚିତ୍ର |

ହାତୀଛୁଆଟିଏ ଜନ୍ମ ହେବା ପୂରା ଦଳ ପାଇଁ ଖୁସିର ସମୟ । ଜନ୍ମ ସମୟରେ ଛୁଆ ଦେହ ସାରା ନରମ ଲୁମ ଭରି ହୋଇଥାଏ ଏବଂ ସେ ପ୍ରାୟ ୧୦୦ କି.ଗ୍ରା. ଓଜନର ହୋଇଥାଏ । ଠିଆହେଲେ ତା'ର କାନ୍ଧର ଉଚ୍ଚତା ପ୍ରାୟ ୧ମିଟର ହୁଏ ଏବଂ ଦେହ ତୁଳନାରେ ଶୁଣ୍ଢ ଛୋଟ ଥାଏ । ଜନ୍ମ ହେବାର ଅଧଘଣ୍ଟା ଭିତରେ ସେ ତା'ର ମା ସାହାଯ୍ୟରେ ଠିଆ ହୋଇପାରେ । ପ୍ରଥମ କିଛିଦିନ ସେ ମାଆର ପାଖେ ପାଖେ (ସାଧାରଣତଃ ତାକୁ ଛୁଇଁ କରି) ରହେ ଏବଂ ମା'ର ଦୁଇ ଆଗ ଦୁଇଗୋଡ଼ ମଝିରେ ଠିଆ ହୁଏ ।

ହାତୀର କ୍ଷୀର ପତଳା ଓ ପାଣିଆ, କିନ୍ତୁ ବହୁତ ପୁଷ୍ଟିକର । ଜନ୍ମ ପରେ ପ୍ରଥମ କିଛି ଦିନ ହାତୀଛୁଆ ମାସକୁ ୧୦-୧୨ କି.ଗ୍ରା. ହାରରେ ବଢ଼ିଥାଏ । ପ୍ରଥମ କିଛି ମାସ ପାଏଁ ଛୁଆ ତା'ର ଶୁଣ୍ଢକୁ ନିୟନ୍ତ୍ରଣ କରିପାରେ ନାହିଁ ଏବଂ ତାହା ଶକ୍ତ ହୋଇନଥାଏ । ସେଥିପାଇଁ ସେ କେବଳ ନିଶ୍ୱାସ ନେବା ପାଇଁ ତା'ର ଶୁଣ୍ଢକୁ ବ୍ୟବହାର କରେ ।

ଏହି କାମ ମାଧ୍ୟମରେ ପିଲାମାନେ ନିଜର ହାତୀଛୁଆ ଜନ୍ମ ଘୋଷଣା କାର୍ଡ଼ ତିଆରି କରିପାରିବେ ।

## ଆରମ୍ଭ କରିବା ଆଗରୁ

ପୃଷ୍ଠା ୨୨ରେ ଥିବା ହାତୀଛୁଆ ଘୋଷଣା କାର୍ଡ଼ର ଗୋଟିଏ ନକଲ ନୋଟିସ ବୋର୍ଡରେ ଲଗାଇ କାମ ଆରମ୍ଭ କର । ଏହା ସହିତ ହାତୀଛୁଆର ଜନ୍ମ, ତାହାର ପ୍ରଥମ କେତେ ଦିନର ଘଟଣା, ପାରିବାରିକ ଜୀବନ ଆଦି ବିଷୟରେ କିଛି ତଥ୍ୟ ମଧ୍ୟ ବୋର୍ଡ଼ରେ ଲଗାଇଦିଅ (ଅଧିକ ତଥ୍ୟ ପାଇଁ ପୃଷ୍ଠା ୨୩ରେ ଥିବା ତଥ୍ୟ ଭଣ୍ଡାର ଦେଖ) । ପୁସ୍ତକାଳୟରୁ ମଧ୍ୟ ପିଲାମାନେ ଅଧିକ ତଥ୍ୟ ସଂଗ୍ରହ କରିପାରିବେ ।

## ପରଖର ଧାରା

ପୂରା ଶ୍ରେଣୀକୁ ଦୁଇତିନିଜଣିଆ ଦଳରେ ଭାଗ କରି ପ୍ରତି ଦଳକୁ ଗୋଟିଏ ହାତୀଛୁଆ ଜନ୍ମ ଘୋଷଣା କାର୍ଡ଼ ତିଆରି କରିବା ପାଇଁ କୁହ । ଭୋର ଦିଅ ସେପରି ସବୁ ତଥ୍ୟ ଠିକ୍ ରହିବ ଏବଂ ଉପସ୍ଥାପନାଟି ମଜାଳିଆ ହେବ ।

ଜନ୍ମ ଘୋଷଣା କାର୍ଡ଼ ପୂରଣ କରିବାର ଧାରା ଶିଖାଇବା ପାଇଁ ଅନ୍ୟ ଅନ୍ୟ କେଉଁ ପ୍ରାଣୀର ଛୁଆ ପାଇଁ ଏପରି କାର୍ଡ଼ ପୂରଣ କରି ପିଲାଙ୍କୁ ଦେଖାଇ ଦିଅ ବା ତଳର ଉଦାହରଣ ବ୍ୟବହାର କର । ନହେଲେ, କୌଣସି ମଣିଷ ପିଲାର ବିବରଣୀ ଭରିକରି ଗୋଟିଏ ଜନ୍ମ ଘୋଷଣା କାର୍ଡ଼ ବୋର୍ଡ଼ରେ ଲଗାଇଦିଅ ।

### ଛୁଆ ଘୋଷଣା କାର୍ଡ଼ ପୂରଣ

ପିଲାଙ୍କୁ କୁହ ସେ ଅଭ୍ୟାସ ପାଇଁ ସେମାନେ ଗୋଟିଏ ବଘିଆ ଛୁଆର ଜନ୍ମ ଘୋଷଣା କାର୍ଡ଼ ପୂରଣ କରିବେ । ପ୍ରଥମ ଖାଲି (ଘୋଷଣାକାରୀଙ୍କ ନାଁ) ଜାଗାରେ ସେମାନେ ଶ୍ରୀମତି ଓ ଶ୍ରୀ ଫ୍ୟାଙ୍ଗସ୍ ଲେଖିପାରିବେ । କାରଣ ଛୁଆ ବଢ଼ାଇବାରେ ଉଭୟ ମାଈ ଅଣିରା ବଘିଆଙ୍କ ଦାୟିତ୍ୱ ରହିଛି ।

ଦ୍ୱିତୀୟ ଖାଲି ଜାଗାରେ (ଯେଉଁଠି ଛୁଆ ଜନ୍ମ ବିଷୟରେ ଲେଖାଯିବ) ଥରକେ କେତୋଟି ଛୁଆ ହେଲା ତାହା ଲେଖିବାକୁ ପିଲାଙ୍କୁ କୁହ । ବଘିଆର ଥରକେ ୩ରୁ ୯ଟି ପାଏଁ ଛୁଆ ହୋଇପାରେ ।

ଜନ୍ମ ସମୟ ଜାଗାରେ ପିଲାମାନେ ଛୁଆ ଜନ୍ମ ହେବାର ସମୟ ବା ଋତୁ ଲେଖିପାରିବେ । ସାଧାରଣତଃ ଡିସେମ୍ବର ମାସରେ ବଘିଆର ଛୁଆ ହୁଏ ।





Digitized by srujanika@gmail.com

ଜନ୍ମର ସ୍ଥାନ ଜାଗାରେ ଛୁଆଟି କେଉଁଠି ଜନ୍ମ ହେଲା ସେ ଜାଗାର ନାଁ ଲେଖିବେ । ଏଠି ପିଲାମାନେ ଗୁମ୍ଫା, ପଥର ଖୋଲ, ବାପା ମା'ଙ୍କ ଦ୍ୱାରା ଖୋଳା ଯାଇଥିବା ଗାତ ଆଦି ଲେଖିପାରିବେ ।

ଖାଲି ଚାରିକୋଣିଆ ଘରେ ପିଲାମାନେ ଛୁଆର ଗୋଟିଏ ଚିତ୍ର ଆଙ୍କିପାରିବେ ବା ଫଟୋ ଲଗାଇପାରିବେ ।

ଛୁଆ ବିଷୟରେ କିଛି ମଜା ତଥ୍ୟ ଦେବା ପାଇଁ ପିଲାଙ୍କୁ କୁହ । ଯେପରି, ଗଧିଆ ଛୁଆ ଜନ୍ମ ବେଳେ ଅନ୍ଧ ଓ ଅସହାୟ ଥାଏ, କିଛି ବି କାମ କରିପାରେ ନାହିଁ ଏବଂ ସବୁକଥା ପାଇଁ ମାଆର ସାହାଯ୍ୟ ଦରକାର କରେ । କିନ୍ତୁ ଅଳ୍ପ କେତେ ସପ୍ତାହର ହୋଇଗଲେ ଗଧିଆ ଛୁଆ ଶିକାର କରିବା ଆରମ୍ଭ କରେ ।

ପିଲାମାନେ ମା ଓ ବାପା ଗଧିଆର ଚିତ୍ର ବି ଆଙ୍କିପାରିବେ ।

ଏହିଭଳି କାର୍ଡ଼ ପୂରଣ କରି ଅଭ୍ୟାସ କରିବା ପରେ ଶ୍ରେଣୀର ପ୍ରତିଟି ଦଳ ହାତୀଛୁଆ ପାଇଁ କାର୍ଡ଼ ପୂରଣ କରିବେ । ଶେଷରେ, ପ୍ରଦର୍ଶନ ପାଇଁ ସବୁତକ କାର୍ଡ଼ ଶ୍ରେଣୀରେ ଲଗାଯାଇ ପାରିବ ।



## ଜନ୍ମ ଘୋଷଣା କାର୍ଡ଼

________________ ଘୋଷଣା କରୁଛନ୍ତି

________________ ଙ୍କ ଜନ୍ମ

ମୋର ପ୍ରଥମ ଫଟୋ

ଜନ୍ମ ସମୟ ________ ଜନ୍ମ ସ୍ଥାନ ________

ଉଚ୍ଚତା ________ ଓଜନ ________

ପିଲା ତଥ୍ୟ ________________

________________

ଗର୍ବିତ ବାପା ମା



Digitized by srujanika@gmail.com

## ହାତୀଛୁଆ ବିଷୟରେ

- ହାତୀଛୁଆ ସାଧାରଣତଃ ଘଞ୍ଚ ଜଙ୍ଗଲ ଭିତରେ ଜନ୍ମ ହୋଇଥାଏ ।
- କିଛି ମାଈ ହାତୀ ଛୁଆ ଜନ୍ମ କରିବା ସମୟରେ ଦଳ ଛାଡ଼ି ଚାଲିଯାଆନ୍ତି । ଆଉ କେତେକ ଦଳରେ ରହି ଛୁଆ ଜନ୍ମ କରନ୍ତି ।
- ଜନ୍ମ ବେଳେ ହାତୀଛୁଆର ଉଚ୍ଚତା ପ୍ରାୟ ୧ ମିଟର ହୁଏ ।
- ଜନ୍ମ ବେଳେ ହାତୀଛୁଆର ଓଜନ:
  ମାଈ : ୯୦-୧୦୦ କି.ଗ୍ରା.
  ଅଣ୍ଡିରା : ୧୨୦ କି.ଗ୍ରା.
- ଜନ୍ମର ଅଧଘଣ୍ଟା ଭିତରେ ହାତୀଛୁଆ ଟଳମଳ ହୋଇ ଠିଆ ହେବାକୁ ଆରମ୍ଭ କରେ ।
- ଧୀର ଗତିରେ ଯାଉଥିବା ଦଳ ସହିତ ଚାଲିବା ଭଳି ଦମ୍ଭହେବା ପାଇଁ ହାତୀଛୁଆକୁ ଅତି କମ୍‌ରେ ୪୮ ଘଣ୍ଟା ଲାଗେ ।
- ଦଳର ଅଳ୍ପବୟସ୍କା ମାଈ ହାତୀମାନେ ଛୁଆର ଯତ୍ନ ନେବାରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥା'ନ୍ତି । ସେମାନଙ୍କୁ ସମମାତା (*ଆଲୋମଦର*) କୁହାଯାଏ ।
- ପ୍ରଥମ ତିନି ଚାରି ବର୍ଷ ଧରି ହାତୀଛୁଆ ମା କ୍ଷୀର ଖାଇଥାଏ । ପ୍ରଥମ ଦୁଇବର୍ଷରେ ମା କ୍ଷୀର ହିଁ ତା'ର ମୁଖ୍ୟ ଖାଦ୍ୟ ହୋଇଥାଏ ।
- ହାତୀ କ୍ଷୀର ପତଳା ଓ ପାଣିଆ, କିନ୍ତୁ ଖୁବ ପୁଷ୍ଟିକର । ହାତୀଛୁଆ ମାସକୁ ୧୦-୧୨ କି.ଗ୍ରା. ହାରରେ ବଢ଼େ ।
- ହାତୀଛୁଆର ଦେହ ତୁଳନାରେ ଶୁଣ୍ଢର ଲମ୍ବ ଛୋଟ ଥାଏ । ଜନ୍ମର କେତେ ମାସ ପର ଯାଏଁ ଶୁଣ୍ଢ ଉପରେ ତା'ର ଭଲ ନିୟନ୍ତ୍ରଣ ନଥାଏ ।
- ତିନି ଚାରି ମାସର ହେଲାବେଳକୁ ହାତୀଛୁଆ କଠିନ ଖାଦ୍ୟ ଖାଇବାକୁ ଆରମ୍ଭ କରେ ।
- ପ୍ରାୟ ଏକ ବର୍ଷ ଯାଏ ସେ ତା'ର ମାଆର ହେପାଜତରେ ରହେ ।
- ହାତୀଛୁଆ ଦିନ ସାରା ଖେଳୁଥାଏ ।
- ଭାରତୀୟ ଜଙ୍ଗଲରେ ହାତୀଛୁଆର ବଡ଼ ଶତ୍ରୁ ହେଉଛନ୍ତି ବାଘ ଓ କୁମ୍ଭୀର ।
- ଛୁଆ ବଢ଼ାଇବାରେ ବାପା ହାତୀର କୌଣସି ଭୂମିକା ନଥାଏ ।





Digitized by srujanika@gmail.com

**ପରଖ**

# ଏକାଠି ରହିବା

**ଜଣେ ସମ୍ପାଦକ ହୁଅ ଏବଂ ଏସୀୟ ହାତୀର ଜୀବନ ବିଷୟରେ ଜାଣ ।**

| | |
|---|---|
| ***ଉଦ୍ଦେଶ୍ୟ*** | ଦଳ କାମରେ ପିଲାମାନଙ୍କୁ ସାହାଯ୍ୟ କରିବା -<br>• ହାତୀ ବିଷୟରେ ତଥ୍ୟ ଠିକ୍ ବା ଭୁଲ ତାହା ନିର୍ଣ୍ଣୟ କରିବା<br>• ସାମ୍ବାଦିକତା କ୍ଷେତ୍ରରେ ସଠିକତା କାହିଁକି ଜରୁରୀ ତାହା ବୁଝିବା |
| ***ସ୍ତର*** | ମାଧ୍ୟମିକ |
| ***ବିଷୟ*** | ବିଜ୍ଞାନ, ଭାଷା |
| ***ଦଳର ଆକାର*** | ଜଣିକିଆ ଦଳ |
| ***ସ୍ଥାନ*** | ଶ୍ରେଣୀଗୃହ ଭିତରେ |
| ***ସମୟ ଅବଧି*** | ୩୦ ମିନିଟ |
| ***ସାମଗ୍ରୀ*** | ପୃଷ୍ଠା ୨୫ରେ ଥିବା 'ହାତୀ: ଏକ ପ୍ରତ୍ୟକ୍ଷ ବିବରଣୀ' ଲେଖାର ନକଲ, ଲେଖିବା ସାମଗ୍ରୀ |

ହାତୀଙ୍କ ଦଳରେ ସବୁଠାରୁ ବୟସ୍କା ମାଈ ହାତୀ ଦଳପତି ହୁଏ ଏବଂ ଦଳରେ ଅନ୍ୟ ମାଈ ହାତୀ, ସେମାନଙ୍କ ଛୁଆ ଓ ଅଳ୍ପବୟସ୍କ ମାଈ ଓ ଅଣ୍ଡିରା ହାତୀମାନେ ରହିଥା'ନ୍ତି । ମାତୃମୁଖ୍ୟ ହେଉଛି ଶକ୍ତି ଏବଂ ନିୟନ୍ତ୍ରଣର ପ୍ରତୀକ । ଛୁଆ ପାଳିବାରେ ଏବଂ ଦଳର ଭଲ ମନ୍ଦ ପାଇଁ ମାଈ ହାତୀମାନଙ୍କର ଭୂମିକା ବହୁତ ଗୁରୁତ୍ୱପୂର୍ଣ୍ଣ । ପରିବାର ଦଳରେ ଅଣ୍ଡିରା ହାତୀର କିଛି ଭୂମିକା ନଥାଏ । ମାଈ ହାତୀ ଋତୁଚକ୍ରରେ ଥିବାବେଳେ ହିଁ କେବଳ ସେମାନେ ଦଳକୁ ଆସନ୍ତି । ଛୁଆ ବଢ଼ାଇବାରେ ସେମାନେ କୌଣସି ଦାୟିତ୍ୱ ନିଅନ୍ତି ନାହିଁ । ୧୦-୧୫ ବର୍ଷର ହେଲାବେଳକୁ ଅଣ୍ଡିରା ହାତୀ ଦଳ ଛାଡ଼ି ଚାଲିଯାଏ ଓ ଏକା ଏକା ରହେ ।

ହାତୀ ବେଶ୍ ଦକ୍ଷ ପହଁରାଳୀ । ସେମାନେ ଇଚ୍ଛା କରି ପାଣିରେ ପଶନ୍ତି । ଉଭୟ ଏସୀୟ ଏବଂ ଆଫ୍ରିକୀୟ ହାତୀ ଭଲ ପହଁରି ପାରନ୍ତି । ଉଭୟ ପ୍ରକାରର ହାତୀଙ୍କ କ୍ଷେତ୍ରରେ ଦେଖାଯାଇଛି ଯେ ଜୋର ସୁଅ ଥିବା ନଈ ପାରିହେବା ବେଳେ ମା ହାତୀଟି ସୁଅର ତଳପଟେ ପହଁରେ । ଫଳରେ ସୁଅର ଚାପରେ ଛୁଆଟି ମା ଦେହରେ ଲାଗି ରହେ ।

ହାତୀର ଆକାର ଏତେ ବଡ଼ ହୋଇଥିବାରୁ ପ୍ରତିଦିନ ତାର ବେଶ୍ ପରିମାଣର ଖାଦ୍ୟ ଓ ପାଣି ଦରକାର ହୁଏ । ଦିନକୁ ୧୨-୧୪ ଘଣ୍ଟା କେବଳ ସେ ଖାଇବାରେ କଟାଇଥାଏ । ଅବଶ୍ୟ ଦିନସାରା ସେ ଏକା ବେଗରେ ଖାଏ ନାହିଁ । ସେମାନେ ରହୁଥିବା ଅଞ୍ଚଳ ଏବଂ ବୟସ ଉପରେ ସେମାନଙ୍କ ଖାଦ୍ୟର ପ୍ରକାର ନିର୍ଭର କରେ ।

## ଆରମ୍ଭ କରିବା ଆଗରୁ

ହାତୀର ଜୀବନ ବିଷୟରେ ପିଲାଙ୍କ ସହ ଆଲୋଚନା କର । ତାଙ୍କୁ ଜଣାଅ ଯେ ତଳର କାମରୁ ସେମାନେ ହାତୀ ବିଷୟରେ କେତେ ଜାଣିଛନ୍ତି ତାହା ଜଣାପଡ଼ିବ । ସେଥିପାଇଁ ଗୋଟିଏ ଲେଖାରେ ଥିବା ହାତୀ ବିଷୟରେ ଭୁଲ ତଥ୍ୟ ସବୁ ତାଙ୍କୁ ଚିହ୍ନଟ କରିବାକୁ ପଡ଼ିବ ।

ପିଲାମାନଙ୍କୁ କୁହ ଯେ ସେମାନେ ଏକ ଜନପ୍ରିୟ ବିଜ୍ଞାନ ଓ ପ୍ରକୃତି ପତ୍ରିକାର ସମ୍ପାଦକର ଭୂମିକା ନେବେ । ପ୍ରତି ପତ୍ରିକା ପାଇଁ ତଥ୍ୟଗତ ସଠିକତା ଥିବା ଭଲ ଲେଖାମାନ ଦରକାର । ପତ୍ରିକା ପାଇଁ ପ୍ରତି ସପ୍ତାହରେ ଅନେକ ପ୍ରବନ୍ଧ ଓ ଗପ ମିଳୁଛି । ସମ୍ପାଦକ ଭାବରେ କେଉଁ ପ୍ରବନ୍ଧ ଓ ଗପ ତାଙ୍କ ପତ୍ରିକାରେ ଛପାଯିବ ତାହା ସେମାନେ ସ୍ଥିର କରିବେ ।

କୌଣସି ଲେଖାର ତଥ୍ୟ ସବୁ ଠିକ୍ ଅଛି କି ନାହିଁ ଜାଣିବା ପାଇଁ ସମ୍ପାଦକଙ୍କୁ ସେ ବିଷୟରେ ଗବେଷଣା କରିବାକୁ ହେବ । ଏଥିପାଇଁ ସେହି ବିଷୟରେ ବହି ଓ ଅନ୍ୟ ପ୍ରବନ୍ଧ ସବୁ ପଢ଼ିବା ଜରୁରୀ । ଲେଖାର ସଠିକତା ଦେଖିବା ସମ୍ପାଦକ ପାଇଁ କାହିଁକି ଜରୁରୀ ତାହା ପିଲାଙ୍କ ସହ ଆଲୋଚନା କର ।

## ପରଖର ଧାରା

ପୃଷ୍ଠା ୨୫ରେ ଥିବା 'ହାତୀ: ଏକ ପ୍ରତ୍ୟକ୍ଷ ବିବରଣୀ' ପ୍ରବନ୍ଧଟିକୁ ନିଜ ଖାତାରେ ଲେଖିବା ପାଇଁ ପିଲାମାନଙ୍କୁ କୁହ । ସେମାନେ ମନେକରନ୍ତୁ ଯେ ଜଣେ ଲେଖକ ଏହି ଲେଖାଟି ପ୍ରକାଶନ ପାଇଁ ପଠାଇଛନ୍ତି । ସମ୍ପାଦକ ଭାବରେ ସେମାନେ ପ୍ରବନ୍ଧଟିର ସଠିକତା ଦେଖିବେ ଏବଂ ତାଙ୍କ ପତ୍ରିକାରେ ଏହା ଛପାଯିବ କି ନାହିଁ ତାହା ସ୍ଥିର କରିବେ ।

ପ୍ରବନ୍ଧଟିକୁ ଭଲ କରି ପଢ଼ି ଭୁଲ ଥିବା ଶବ୍ଦ, ବାକ୍ୟାଂଶ ବା ବାକ୍ୟ ତଳେ ଗାର ପକାଇବା ପାଇଁ ପିଲାମାନଙ୍କୁ କୁହ । ସେମାନେ ଚିହ୍ନଟ କରିଥିବା ଶବ୍ଦ, ବାକ୍ୟାଂଶ ସବୁ ପାଇଁ ଗୋଟିଏ ଗୋଟିଏ ସୂଚକ ସଂଖ୍ୟା ଦେବାକୁ ଏବଂ ସେଗୁଡ଼ିକ କାହିଁକି ଭୁଲ, ତାହାର କାରଣ ସଂଖ୍ୟା କ୍ରମରେ ଲେଖିବାକୁ କୁହ । ଏଥିପାଇଁ ପିଲାମାନେ ଶ୍ରେଣୀରେ ଆଲୋଚନାର ବା ନିଜ ଗବେଷଣାର ସାହାଯ୍ୟ ନେଇପାରିବେ ।

ହାତୀର ରହିବା ଜାଗା, ଚାଲିଚଳନ, ଖାଦ୍ୟ, ସାମାଜିକ ଏବଂ ପାରିବାରିକ ଜୀବନ ବିଷୟରେ ତଥ୍ୟ ଖୋଜିବା ପାଇଁ ପିଲାଙ୍କୁ କୁହାଯାଇ ପାରିବ ।

ସବୁ ପିଲାଙ୍କର ଲେଖା ସରିଗଲା ପରେ ସମସ୍ତଙ୍କୁ ଏକାଠି କରି ପ୍ରବନ୍ଧଟିରେ



Digitized by srujanika@gmail.com

ଥିବା ଭୁଲ୍ ବିଷୟରେ ଆଲୋଚନା କରିପାରିବ । ସୁବିଧା ପାଇଁ ଏଠି ଭୁଲଗୁଡ଼ିକ ବଙ୍କା ଅକ୍ଷରରେ ଛପାଯାଇଛି । ପ୍ରତି ଭୁଲ ପାଇଁ ଗୋଟିଏ ସଂଖ୍ୟା ଦିଆଯାଇଛି ଏବଂ ତଳେ ସେହି ସଂଖ୍ୟା ଅନୁସାରେ ଭୁଲର କାରଣ ଦିଆଯାଇଛି ।

## ହାତୀ: ଏକ ପ୍ରତ୍ୟକ୍ଷ ବିବରଣୀ

ଜଙ୍ଗଲରେ ସୂର୍ଯ୍ୟଙ୍କର ପ୍ରଥମ କିରଣ ପଡ଼ିବା ମାତ୍ରେ *୬୦ରୁ ଅଧିକ* (୧) ହାତୀ ଥିବା ଗୋଟିଏ ଦଳ ଲମ୍ବା ଘାସ ଭିତରୁ ମାଡ଼ିଆସିଲେ । ଶୁଣ୍ଢକୁ ଉପରକୁ ଟେକି ସେମାନେ ତଳେ ତାଙ୍କ *ଗୋଡ଼ କଚାଡ଼ି ଯୋର ଶବ୍ଦ କଲେ* (୨) । ଯତେ ଯେପରି ସେମାନେ ଗଲା ରାତିର କଥା ଅନ୍ୟମାନଙ୍କୁ ଜଣାଇବାକୁ ଚାହୁଁଛନ୍ତି । ଦୁଇଟି ଅଳ୍ପବୟସ୍କ ଅଣ୍ଡିରା ହାତୀ ତାଙ୍କ *ଲାଞ୍ଜକୁ ପରସ୍ପର ସହ ଛନ୍ଦି* (୩) ଅଭିନନ୍ଦନ ଜଣାଇଲେ । ଗୋଟିଏ *ବିରାଟ ଅଣ୍ଡିରା ହାତୀ ସେ ଦଳର ଦଳପତି ଥିଲା* (୪) । ସେଦିନ *ଖାଦ୍ୟ ଖୋଜିବା ପାଇଁ କେଉଁ ଦିଗରେ କେତେ ବାଟ ଯାଏଁ ଯିବେ ତାହା ଏହି ଦଳପତି ହିଁ ଠିକ୍ କରିବ* (୫) । ସବୁଦିନ ଭଳି ହାତୀଦଳଟି *ଖାଦ୍ୟ ସଂଗ୍ରହ କରି ଖାଇବାରେ ପ୍ରାୟ ଦୁଇ ତିନି ଘଣ୍ଟା କଟାଇବେ* (୬) ।

*ମାଈ ହାତୀମାନେ ଦଳର ଶେଷରେ ଆରାମରେ ଆସୁଥିଲେ । କାରଣ ସେମାନେ ନିଶ୍ଚିନ୍ତ ଥିଲେ ଯେ ଆଗରେ ଥିବା ଦଳପତି ଓ ଅନ୍ୟ ଅଣ୍ଡିରା ହାତୀମାନେ ଛୁଆ ହାତୀଙ୍କୁ ରକ୍ଷା କରିବେ ଏବଂ ଖାଦ୍ୟ ସଂଗ୍ରହ ବିଷୟରେ ଶିଖାଇବେ* (୭) ।

ସୂର୍ଯ୍ୟ ଯେତେବେଳେ ମୁଣ୍ଡ ଉପରକୁ ଉଠିଲେ ଏବଂ *ସେମାନଙ୍କ ଦେହରୁ ବହୁତ ଝାଳ ବାହାରିଲା* (୮), ହାତୀ ଦଳ ଜଙ୍ଗଲ ଭିତରେ ଛାଇ ଅଞ୍ଚଳକୁ ଯାଇ *୮-୧୦ ଘଣ୍ଟା ଶୋଇଗଲେ* (୯) । ଲମ୍ବା ସମୟ ଶୋଇବା ପରେ ସେମାନେ ଜଙ୍ଗଲରେ ଥିବା ପୋଖରୀରୁ ପାଣି ପିଇବାକୁ ଗଲେ । ସେମାନେ ପୋଖରୀ କୂଳର କାଦୁଅ ଅଞ୍ଚଳକୁ ଏଡ଼ାଇଯାଇ ସିଧା ପାଣିରେ ଧସେଇ ପଶିଗଲେ । କାରଣ *ସେମାନେ ଧୂଳି କାଦୁଅ ବୋଳି ହେବାକୁ ଭଲ ପାଆନ୍ତି ନାହିଁ* (୧୦) । ଗାଧୋଇବା ପରେ ସେମାନେ ନିଜ ପାଇଁ ଖାଦ୍ୟ ଖୋଜିବାକୁ ବାହାରିଲେ ।

## ହାତୀ ବିଷୟରେ ସଠିକ ତଥ୍ୟ *(ଉପରର ସୂଚକ ସଂଖ୍ୟା କ୍ରମରେ)*

୧· ଏସୀୟ ହାତୀ ୪-୮ ଜଣିଆ ପରିବାର ଦଳ ବା ୧୦-୨୦ ଜଣିଆ ବଡ଼ ଦଳରେ ରହେ ।

୨· ହାତୀ ଅନେକ ବାଟରେ ଯୋଗାଯୋଗ କରୁଥିଲେ ବି କେବେ ଗୋଡ଼ କଚାଡ଼ି ନଥାଏ । ସେମାନଙ୍କ କାନ ଏବଂ ଶୁଣ୍ଢର ଅବସ୍ଥା ସେମାନଙ୍କ ମାନସିକ ସ୍ଥିତି ବିଷୟରେ ଜଣାଇଥାଏ । ଏମାନେ ଶୁଙ୍ଘିଂକରି ମଧ୍ୟ ନିଜ ନିଜ ବିଷୟରେ ଜାଣିଥା'ନ୍ତି । ହାତୀ ଅତି ଧୀର ଶବ୍ଦରୁ ଆରମ୍ଭ କରି ଜୋର ଶବ୍ଦ କରି ମଧ୍ୟ ଯୋଗାଯୋଗ କରିଥାଏ । କେତେକ ଶବ୍ଦ ଏତେ ଧୀର ହୋଇଥାଏ ଯେ ତାହା ମଣିଷକୁ ଶୁଣାଯାଏ ନାହିଁ ।

୩· ଦେଖାହେଲେ ସେମାନେ ନିଜ ନିଜର ଶୁଣ୍ଢକୁ ଛନ୍ଦି, ମୁହଁ, ଦେହକୁ ଶୁଙ୍ଘିଂ ଏବଂ ଶବ୍ଦ କରି ସମ୍ଭାଷଣ ଜଣାଇଥାନ୍ତି ।

୪· ହାତୀ ଦଳ ଅଣ୍ଡିରା ନୁହେଁ, ସବୁଠାରୁ ବୟସ୍କା ମାଈ ଦ୍ୱାରା ପରିଚାଳିତ ହୁଏ ।

୫· ଦଳପତି ହିସାବରେ ମାଈ ହାତୀ ହିଁ ନିଷ୍ପତ୍ତି ନିଏ କେଉଁ ଦିଗରେ କେତେ ବାଟ ଖାଦ୍ୟ ପାଇଁ ଯିବାକୁ ହେବ ।

୬· ହାତୀ ଦିନରାତି ଭିତରେ ୧୨-୧୮ ଘଣ୍ଟା ଖାଦ୍ୟ ଖୋଜିବା, ସଂଗ୍ରହ କରିବା ଏବଂ ଖାଇବାରେ ବିତାଇଥାଏ । ଗୋଟିଏ ବୟସ୍କ ହାତୀ ଦିନକୁ ୧୦୦-୨୦୦ କି·ଗ୍ରା· ଡାଳପତ୍ର ଖାଇଥାଏ ।

୭· ୧୪-୧୫ ବର୍ଷର ହେଲାବେଳକୁ ଅଣ୍ଡିରା ହାତୀ ଦଳ ଛାଡ଼ି ଚାଲିଯାଏ । ସେ ଅନ୍ୟ ଅଣ୍ଡିରା ହାତୀଙ୍କ ସହ ମିଶି ସାମୟିକ ଭାବରେ ଦଳ ଗଢ଼େ ବା ଏକାକୀ ରହେ । ଏମାନେ ଦଳରେ ନଥାନ୍ତି କି ଛୁଆଙ୍କର ଯତ୍ନ ନିଅନ୍ତି ନାହିଁ । ଦଳରେ ଥିବା ଜେଜେମା, ମା, ମାଉସୀ, ଭଉଣୀ ଆଦି ମାଈ ହାତୀମାନେ ହିଁ ଛୁଆର ଯତ୍ନ ନିଅନ୍ତି । ଦଳର ସବୁ ମାଈ ହାତୀ ମିଶି ଏହି ଦାୟିତ୍ୱ ତୁଲାନ୍ତି । ଦଳପତି ଭାବରେ ଦଳର ସୁରକ୍ଷା ଏବଂ ଖାଦ୍ୟ, ପାଣି ଯୋଗାଇବା ନାରୀମୁଖ୍ୟର ହିଁ ଦାୟିତ୍ୱ ହୁଏ ।

୮· ହାତୀଙ୍କର ସ୍ୱେଦଗ୍ରନ୍ଥି ନଥାଏ । ତେଣୁ ଝାଳ ବୁହାଇ ସେମାନେ ତାଙ୍କ ଦେହର ତାପମାତ୍ରା କମାଇପାରନ୍ତି ନାହିଁ । ତାପ କମାଇବା ପାଇଁ ସେମାନେ ଶୁଣ୍ଢରେ ପାଣି ନେଇ ଦେହ ଉପରେ ଛିଞ୍ଚନ୍ତି । ତାଙ୍କର ବିରାଟ କାନ ହଲାଇଲେ ପଙ୍ଖା ଭଳି ପବନ ହୁଏ । ଫଳରେ କାନରେ ଥିବା ରକ୍ତନଳୀ ପାଖର ପବନ ଥଣ୍ଡା ହୋଇ ଦେହକୁ ଥଣ୍ଡା ରଖେ ।

୯· ହାତୀ ପାହାନ୍ତା ଆଗରୁ ମାତ୍ର ୨-୪ ଘଣ୍ଟା ପାଇଁ ଶୁଏ ।

୧୦· ହାତୀ ଧୂଳି କାଦୁଅକୁ ବହୁତ ଭଲପାଏ । ସେମାନେ ଖରା ତାଉରୁ ଏବଂ ପୋକ କାମୁଡ଼ାରୁ ରକ୍ଷା ପାଇବା ପାଇଁ ଦେହସାରା ଧୂଳି ବୋଳି ହୁଅନ୍ତି । କାଦୁଅରେ ସେ କେବଳ ମଜା ପାଇଁ ଗଡ଼େନାହିଁ । ଏହା ତାକୁ ଥଣ୍ଡା ରଖିବାରେ ସାହାଯ୍ୟ କରେ । ଅଧିକ ଗରମ ଏବଂ ପୋକକାମୁଡ଼ାରୁ ବି କାଦୁଅ ତାକୁ ବଞ୍ଚାଇଥାଏ ।



Digitized by srujanika@gmail.com

**ପରଖ**

# ସେମାନେ କେତେ ବଡ଼?

| | |
|---|---|
| **ଏସୀୟ ହାତୀର ଉଚ୍ଚତା ଏବଂ ଓଜନ ମପା** | |
| ***ଉଦ୍ଦେଶ୍ୟ*** | **ଏସୀୟ ହାତୀର ବୟସ ସହ ଉଚ୍ଚତା ଓ ଓଜନର ସମ୍ପର୍କ ପିଲାମାନେ ଜାଣିବେ ।** |
| ***ସ୍ତର*** | **ଉଚ୍ଚତର** |
| ***ବିଷୟ*** | **ଗଣିତ** |
| ***ଦଳର ଆକାର*** | **ଉଣିକିଆ** |
| ***ସ୍ଥାନ*** | **ଶ୍ରେଣୀଗୃହ ଭିତରେ** |
| ***ସମୟ ଅବଧି*** | **୩୦ ମିନିଟ** |
| ***ସାମଗ୍ରୀ*** | **ଲେଖିବା ସାମଗ୍ରୀ, ରୁଲର** |

ମାଟି ଉପରେ ଜୀବଙ୍କ ଭିତରେ ଏସୀୟ ହାତୀ ହେଉଛି ଦ୍ୱିତୀୟ ବୃହତ୍ତମ । ତା'ର ୪୦୦୦ କି.ଗ୍ରା. ଓଜନ ଜଣେ ସାଧାରଣ ମଣିଷର ଓଜନର ପ୍ରାୟ ୬୦ ଗୁଣ । ଉଚ୍ଚତାରେ ଏହା ଜଣେ ସାଧାରଣ ଭାରତୀୟର ଦୁଇଗୁଣ ହେବ ।

ହାତୀ ଗୋଟିଏ ଅନନ୍ୟ ସ୍ତନ୍ୟପାୟୀ ଜୀବ । କାରଣ ସେ ତା'ର ଜୀବନସାରା ବଢୁଥାଏ । ଏହି ବଢ଼ିବା ସେ ରହୁଥିବା ଜାଗାର ମାନ ଏବଂ ସେଠାରେ ମିଳୁଥିବା ଖାଦ୍ୟ ଓ ପାଣିର ପରିମାଣ ଉପରେ ନିର୍ଭର କରେ ।

## ଆରମ୍ଭ କରିବା ଆଗରୁ

ଆରମ୍ଭ କରିବା ଆଗରୁ ପୃଷ୍ଠା ୨୭ରେ ଥିବା ଏସୀୟ ହାତୀର ବୃଦ୍ଧି ସାରଣୀକୁ କଳାପଟାରେ ଲେଖିଦିଅ । ଏହାକୁ ନିଜ ନିଜର ଖାତାରେ ଟିପିନେବାକୁ ପିଲାମାନଙ୍କୁ କୁହ । ଏହି କାମ ମାଧ୍ୟମରେ ସେମାନେ ଏସୀୟ ହାତୀର ଉଚ୍ଚତା ଓ ଓଜନ ସହ ତା'ର ବୟସର ସମ୍ପର୍କ ବୁଝିପାରିବେ ।

## ପରଖର ଧାରା

ମଣିଷ ଛୁଆର ଜନ୍ମବେଳର ଉଚ୍ଚତା ବିଷୟରେ ଆଲୋଚନାରୁ କାମ ଆରମ୍ଭ କର । ଏହାକୁ ଗୋଟିଏ ଏସୀୟ ହାତୀଛୁଆର ଉଚ୍ଚତା ସହ ତୁଳନା କରିବାକୁ କୁହ । ମଣିଷ ଛୁଆର ଜନ୍ମବେଳର ଓଜନକୁ ହାତୀଛୁଆର ଓଜନ ସହ ତୁଳନା କର । ହାତୀଛୁଆର ଉଚ୍ଚତା ଓ ଓଜନ ସହ ଗୋଟିଏ ବୟସ୍କ ମଣିଷର ଉଚ୍ଚତା ଓ ଓଜନ ବି ସେମାନେ ତୁଳନା କରିବେ । ମଣିଷର ବୃଦ୍ଧି ସାଧାରଣତଃ ୨୦ ବର୍ଷ ପରେ କମିଯାଏ, କିନ୍ତୁ ହାତୀର ଜୀବନସାରା ଚାଲିଥାଏ ।

ଏସୀୟ ହାତୀର ବୃଦ୍ଧି ସାରଣୀ ବ୍ୟବହାର କରି ପିଲାମାନଙ୍କୁ ତଳ ପ୍ରଶ୍ନଗୁଡ଼ିକର ଉତ୍ତର ଦେବାକୁ କୁହ ।

୧. କ. କେଉଁ ବୟସରେ ଅଣ୍ଡିରା ହାତୀର ଉଚ୍ଚତା ସବୁଠାରୁ ଅଧିକ ବଢ଼େ ?
   ଖ. କେଉଁ ବୟସରେ ମାଈ ହାତୀର ଓଜନ ସବୁଠାରୁ ଅଧିକ ବଢ଼େ ?
   ଗ. ୨୦ରୁ ୨୫ ବର୍ଷ ବୟସ ଭିତରେ ମାଈ ଏସୀୟ ହାତୀର ଉଚ୍ଚତା ହାରାହାରି କେତେ ବଢ଼େ ?
   ଘ. ୦-୫ ବର୍ଷ ବୟସ ଭିତରେ ଅଣ୍ଡିରା ଏସୀୟ ହାତୀର ଓଜନ ହାରାହାରି କେତେ ବଢ଼େ ?
   ଙ. ଏସୀୟ ଅଣ୍ଡିରା ହାତୀର ଉଚ୍ଚତା ୨୭୦ ସେ.ମି. ଥିଲାବେଳେ ତା'ର ଓଜନ କେତେ ହୁଏ ?

୨. ଉଭୟ ମାଈ ଓ ଅଣ୍ଡିରା ହାତୀଙ୍କର ବୟସ ସହ ଉଚ୍ଚତାର ସମ୍ପର୍କ ଦେଖାଇବା ପାଇଁ ଗୋଟିଏ ଗ୍ରାଫ୍ ଟାଣ ।

୩. ଉଭୟ ମାଈ ଓ ଅଣ୍ଡିରା ହାତୀଙ୍କର ବୟସ ସହ ଓଜନର ସମ୍ପର୍କ ଦେଖାଇବା ପାଇଁ ଗୋଟିଏ ଗ୍ରାଫ୍ ଟାଣ ।

   ଗ୍ରାଫ୍ ଦେଖି ତଳ ପ୍ରଶ୍ନଗୁଡ଼ିକର ଉତ୍ତର କୁହ ।

   କ. ଅଣ୍ଡିରା ହାତୀର ବୟସ ଓ ଓଜନ ଭିତରେ ଥିବା ସମ୍ପର୍କକୁ ବୁଝାଅ ।
   ଖ. ମାଈ ହାତୀର ବୟସ ଓ ଓଜନ ଭିତରେ ଥିବା ସମ୍ପର୍କ ବୁଝାଇଦିଅ ।
   ଗ. ୧୫୦୦ କି.ଗ୍ରା. ଓଜନର ଅଣ୍ଡିରା ଏସୀୟ ହାତୀର ବୟସ କେତେ ହେବ ?
   ଘ. ୨୭ ବର୍ଷର ମାଈ ଏସୀୟ ହାତୀର ଉଚ୍ଚତା କେତେ ହେବ ?
   ଙ. ବାର ବର୍ଷର ମାଈ ଏସୀୟ ହାତୀର ଓଜନ କେତେ ହେବ ?
   ଚ. ଜନ୍ମରୁ ୪୦ ବର୍ଷ ଯାଏଁ ଉଭୟ ମାଈ ଓ ଅଣ୍ଡିରା ହାତୀଙ୍କର ବୃଦ୍ଧି ବର୍ଣ୍ଣନା କର ।

## ସଂପ୍ରସାରଣ/ପରିବର୍ତ୍ତନ

- ଗୋଟିଏ ଅଣ୍ଡିରା ହାତୀର ଉଚ୍ଚତା ସହ ଓଜନର ଏକ ଗ୍ରାଫ୍ ଆଙ୍କିହେବ କି? ଯଦି ହଁ, ତେବେ ଗ୍ରାଫ୍‌ରୁ ଆକଳନ କର -

  କ. ୧୩୦ କି.ଗ୍ରା. ଓଜନର ଛୁଆ ହାତୀର ଉଚ୍ଚତା କେତେ ହେବ ?

  ଖ. ୩୨୦୦ କି.ଗ୍ରା. ଓଜନର ଅଣ୍ଡିରା ହାତୀର ଉଚ୍ଚତା କେତେ ହେବ ?



Digitized by srujanika@gmail.com

## ଏସୀୟ ହାତୀର ବୃଦ୍ଧି ସାରଣୀ

| ବୟସ (ବର୍ଷ) | ଉଚ୍ଚତା (ସେ.ମି.) | | ଓଜନ (କି.ଗ୍ରା.) | |
|---|---|---|---|---|
| | ଅଣ୍ଡିରା | ମାଈ | ଅଣ୍ଡିରା | ମାଈ |
| ଜନ୍ମ ବେଳେ | ୯୦ | ୮୯ | ୧୨୦ | ୧୦୦ |
| ୫ | ୧୮୦ | ୧୭୦ | ୧୧୩୦ | ୮୧୦ |
| ୧୦ | ୨୧୭ | ୧୯୭ | ୨୦୬୫ | ୧୪୧୫ |
| ୧୫ | ୨୩୫ | ୨୧୩ | ୨୬୪୫ | ୧୯୨୫ |
| ୨୦ | ୨୫୦ | ୨୨୮ | ୨୯୭୦ | ୨୩୦୦ |
| ୨୫ | ୨୬୨ | ୨୩୪ | ୩୪୦୦ | ୨୫୬୦ |
| ୩୦ | ୨୬୮ | ୨୩୮ | ୩୬୫୦ | ୨୭୪୦ |
| ୪୦ | ୨୭୨ | ୨୪୦ | ୩୮୦୦ | ୨୯୩୦ |
| ୪୦ ଓ ବେଶୀ | ୨୭୪ | ୨୪୦ | ୩୯୦୦ | ୩୦୦୦ |

ଉତ୍ସ: ସୁକୁମାର, ଆର୍., *ଦି ଏସିଆନ୍ ଏଲିଫାଣ୍ଟ: ଇକୋଲୋଜି ଆଣ୍ଡ ମାନେଜ୍‌ମେଣ୍ଟ*. କେମ୍ବ୍ରିଜ ୟୁନିଭର୍ସିଟି ପ୍ରେସ୍, ଅଷ୍ଟ୍ରେଲିଆ. ୧୯୮୯.

## ଓଜନ ବୃଦ୍ଧିର ହାର (ଅଣ୍ଡିରା ଏସୀୟ ହାତୀ ପାଇଁ)

| ବୟସ (ବର୍ଷ) | ଓଜନ ବୃଦ୍ଧି (କି.ଗ୍ରା.) | କାହା ସାଙ୍ଗେ ସମାନ |
|---|---|---|
| ୦ - ୫ | ୧୦୧୦ |  ଜିପ୍ |
| ୫ - ୧୦ | ୯୩୫ |  ବଡ଼ କାର |
| ୧୦ - ୧୫ | ୫୮୦ |  ଛୋଟ କାର |
| ୧୫ - ୨୦ | ୩୨୫ |  ୫ଟି ଏଆର୍ କଣ୍ଡିସନର (୧.୫ ଟନ୍) |
| ୨୦ - ୨୫ | ୪୩୦ |  ୪ଟି ସ୍କୁଟର |
| ୨୫ - ୩୦ | ୨୫୦ |  ୪ଟି ଲୁହା ଫାଇଲ ଆଲମାରୀ |
| ୩୦ - ୪୦ | ୧୫୦ |  ୫ଟି ଲୁଗାଧୁଆ ଯନ୍ତ୍ର |
| ୪୦ ଓ ବେଶୀ | ୧୦୦ |  ରେଫ୍ରିଜରେଟର |



Digitized by srujanika@gmail.com

# ବଞ୍ଚି ରହିବା



**ଏସୀୟ** ହାତୀ ୬୦୦ ମି.ମି.ରୁ ୪୦୦୦ ମି.ମି. ଯାଏଁ ବୃଷ୍ଟିପାତ ହେଉଥିବା ଜଙ୍ଗଲିଆ ଜଙ୍ଗଲରୁ ଆରମ୍ଭ କରି ଗ୍ରୀଷ୍ମମଣ୍ଡଳୀୟ ଘଞ୍ଚ ଜଙ୍ଗଲ ଯାଏଁ ଯେ କୌଣସି ପ୍ରକାରର ଉଦ୍ଭିଦ ଥିବା ଅଞ୍ଚଳରେ ଦେଖିବାକୁ ମିଳେ । ଏଥିରୁ ଜଣାଯାଏ ଯେ ହାତୀ ସବୁ ପ୍ରକାରର ଆବାସସ୍ଥଳୀ ସହିତ ନିଜକୁ ଖାପ ଖୁଆଇପାରେ । ଭାରତରେ ମରୁଭୂମିରେ କିନ୍ତୁ ହାତୀ ଦେଖିବାକୁ ମିଳେନାହିଁ ।

କୌଣସି ଆବାସସ୍ଥଳୀ ଭିତରେ ଯେତିକି ଅଞ୍ଚଳରୁ ଗୋଟିଏ ହାତୀ ଦଳ ତାଙ୍କର ଖାଦ୍ୟ ଓ ପାଣି ପା'ନ୍ତି ଏବଂ ଯେଉଁଠାରେ ସେମାନେ ତାଙ୍କର ଜୀବନ କଟାନ୍ତି ତାହାକୁ ତାଙ୍କର ବିଚରଣ ଇଲାକା କୁହାଯାଏ । ହାତୀ ଗୋଟିଏ ବିରାଟକାୟ ଜୀବ ହୋଇଥିବାରୁ ପ୍ରତିଦିନ ତା'ର ପ୍ରଚୁର ପରିମାଣର ଖାଦ୍ୟ ଓ ପାଣି ଦରକାର ହୁଏ । ଏସବୁ ପାଇବା ପାଇଁ ତା'ର ଇଲାକା ବହୁତ ବଡ଼ ହୋଇଥାଏ ଏବଂ ସେ ତା'ର ସେଇ ଇଲାକା ଭିତରେ ଘୂରିବୁଲେ । ଋତୁ ଓ ସେହି ଅଞ୍ଚଳର ଗୁଣମାନ ଉପରେ ହାତୀର ଚଳପ୍ରଚଳ ହେବା ନିର୍ଭର କରେ । ଆଜିକାଲି ବସତି ସ୍ଥାପନ ଓ ଚାଷକାମ ଆଦି ପାଇଁ ମଣିଷ ଜଙ୍ଗଲ ଦଖଲ କରିଚାଲିଛି । ଫଳରେ ହାତୀଙ୍କ ଆବାସସ୍ଥଳୀ ବେଶ୍ ଜୋରରେ କମିବାରେ ଲାଗିଛି । ଆହୁରି ମଧ୍ୟ ହାତୀର ରହିବା ଅଞ୍ଚଳ ଭିତରେ ଚାଷଜମି, ଘର, ନଦୀବନ୍ଧ, ରେଳପଥ ଆଦି ଗଢ଼ି ଉଠୁଛି । ଏହା ତା'ର ଆବାସସ୍ଥଳୀକୁ ଖଣ୍ଡ ଖଣ୍ଡ କରି ପକାଉଛି । ଏସବୁ ଯୋଗୁଁ ହାତୀ ତା'ର ଦରକାରୀ ଜିନିଷ ଖୋଜିବା ପାଇଁ ଆଉ ଆରାମରେ ବୁଲିପାରୁନାହିଁ । ହାତୀ ତା ଇଲାକାରେ ମୁକ୍ତ ଓ ନିରାପଦ ଭାବରେ ଚାଲବୁଲ କରିପାରିବା ପାଇଁ ସେସବୁ ଭିତରେ ସୁରକ୍ଷିତ ସଂଯୋଗ ପଥ ସବୁ ରହିବା ଦରକାର ।

## ବିଚରଣ ଇଲାକା

ମନ ପସନ୍ଦର ଖାଦ୍ୟ ଏବଂ ଯଥେଷ୍ଟ ପାଣି ପାଇବା ପାଇଁ ହାତୀ ବେଶ୍ ବାଟ ବୁଲେ । ହାତୀର ବିଚରଣ ପାଣିପାଗ ଉପରେ ନିର୍ଭର କରେ ଏବଂ ଋତୁ ବଦଳିବା ବେଳେ ତାହା ସହଜରେ ଜଣାପଡ଼େ । ହାତୀର ବିଚରଣ ଇଲାକା କେତେ ବଡ଼ ହେବ ଓ ସେ କେତେ ଦୂର ଯାଏଁ ଯିବ, ତାହା ବିଭିନ୍ନ ଅଞ୍ଚଳର ବୃଷ୍ଟିପାତ ଓ ଉଦ୍ଭିଦଜଗତ ଅନୁସାରେ ଅଲଗା ହୁଏ । ଶୁଖିଲା ସମୟରେ ହାତୀ ସାଧାରଣତଃ ପାଣି ମିଳୁଥିବା ନଦୀ ଉପତ୍ୟକା ବା ସନ୍ତସନ୍ତିଆ ଅଞ୍ଚଳ ପାଖରେ ବୁଲେ । ବର୍ଷାଦିନ ଆସିଗଲେ ପାଣିର ଅଭାବ ରହେନାହିଁ, ତେଣୁ ହାତୀମାନେ ବିନା ବାଧାରେ ବିରାଟ ଅଞ୍ଚଳରେ ଖେଳାଇ ହୋଇପା'ନ୍ତି ।

ମାଈ ହାତୀର ଇଲାକାରେ ଦଳେ ମାଈ ହାତୀ, ଯୁବା ଓ ଛୁଆ ହାତୀ ରହନ୍ତି । ଗୋଟିଏ ଦଳରେ ୧୦-୧୫ଟି ହାତୀ ଥାଆନ୍ତି । ପ୍ରତି ଦଳର ଗୋଟିଏ ନିର୍ଦ୍ଦିଷ୍ଟ ବିଚରଣ ଇଲାକା ରହିଥାଏ । ଦଳର ସମସ୍ତେ ନିଜ ନିଜ ଭିତରେ ସମନ୍ୱୟ ରଖି ସେହି ଇଲାକା ଭିତରେ ଚରାବୁଲା କରନ୍ତି । ମଣିଷ ବସତିର ପାଖରେ ଥିଲେ ଅଳ୍ପ ସଂଖ୍ୟାର ହାତୀଙ୍କ ବିଚରଣ ଇଲାକା ୩୦ ବର୍ଗ କି.ମି. ଭଳି ଛୋଟ ହୋଇପାରେ । କିନ୍ତୁ ନୀଳଗିରି ସଂରକ୍ଷିତ ଜୀବମଣ୍ଡଳ ଭଳି ବିସ୍ତୀର୍ଣ୍ଣ ଅଞ୍ଚଳରେ ଏହା ୮୦୦ ବର୍ଗ କି.ମି. ଯାଏଁ ହୋଇଥାଏ ।

ଅଣ୍ଡିରା ହାତୀଙ୍କର ଇଲାକା ଦଳର ଇଲାକାଠାରୁ ଅଲଗା ହୋଇଥାଏ । କିନ୍ତୁ ଏହାର କିଛି ଅଂଶ କୌଣସି ଦଳର ବିଚରଣ ଇଲାକାରେ ପଡ଼ିପାରେ । ଅଣ୍ଡିରା ହାତୀର ଇଲାକା ୨୦୦ରୁ ୫୦୦ ବର୍ଗ କି.ମି. ଯାଏଁ ହୋଇଥାଏ । ଅଣ୍ଡିରା ହାତୀର ଦୁଇଟି ଇଲାକା ଥାଏ । ମସ୍ତ ନଥିବା ବେଳରେ ଗୋଟିଏ ଛୋଟ ଇଲାକା ଏବଂ ମସ୍ତ ସମୟ ପାଇଁ ଗୋଟିଏ ବଡ଼ ଇଲାକା ।

ମୁଖିଆ ମାଈ ହାତୀଠାରୁ ଦଳର ଅନ୍ୟମାନେ ତାଙ୍କ ଇଲାକା ବିଷୟରେ ବିଭିନ୍ନ କଥା ଜାଣିପାରନ୍ତି । ସେମାନଙ୍କର ଲମ୍ବା ଜୀବନକାଳ ଓ ସାମାଜିକ ବ୍ୟବସ୍ଥା ତାଙ୍କର ଶିଖିବା ପ୍ରକ୍ରିୟାରେ ସାହାଯ୍ୟ କରିଥାଏ । ଏହି ଅନୁଭୂତିମୂଳକ ଶିକ୍ଷା ଫଳରେ ତାଙ୍କ ଇଲାକା ଭିତରେ ଯଥେଷ୍ଟ ଖାଦ୍ୟ ଓ ପାଣି ଯୋଗାଉଥିବା ଅଞ୍ଚଳ ବିଷୟରେ ସେମାନେ



Digitized by srujanika@gmail.com

ଜାଣିପାରନ୍ତି । ପ୍ରତିକୂଳ ପାଣିପାଗରୁ ଆସୁଥିବା ସଙ୍କଟର ପରିସ୍ଥିତି ଓ ଅସୁବିଧା ସମୟରେ ମଧ୍ୟ ବଞ୍ଚିବା ପାଇଁ ଏହା ତାଙ୍କୁ ସାହାଯ୍ୟ କରେ ।

## ପ୍ରବାସ

ହାତୀ ତାର ଖାଦ୍ୟ ଓ ପାଣିର ଆବଶ୍ୟକ ପୂରଣ କରିବା ପାଇଁ ଅନେକ ବାଟ ବୁଲିଥାଏ । ହାତୀର ଏହି ଲମ୍ବା ବୁଲିବାକୁ ପ୍ରବାସ କୁହାଯାଏ । କୌଣସି ଅଞ୍ଚଳର ପାଣିପାଗ ଏବଂ ଉଦ୍ଭିଦଜଗତ ଉପରେ ଏହି ପ୍ରବାସ ନିର୍ଭର କରେ । ଛୋଟ ହାତୀମାନେ ପ୍ରବାସର ବିଭିନ୍ନ ପଥ ବିଷୟରେ ବଡ଼ମାନଙ୍କଠାରୁ ଶିଖନ୍ତି । ପ୍ରବାସ ପଥ ଏବଂ ଖାଦ୍ୟ, ପାଣି ମିଳିବା ଅଞ୍ଚଳ ବିଷୟରେ ତଥ୍ୟ ଗୋଟିଏ ପିଢ଼ିରୁ ଆଉ ଗୋଟିଏ ପିଢ଼ିକୁ ପାଇଥାଏ । ହାତୀ ତା'ର ଖାଦ୍ୟ ମିଳୁଥିବା ଅଞ୍ଚଳ ପ୍ରତି ବହୁତ ଏକନିଷ୍ଠ । ଦେଖାଯାଇଛି ଯେ ପ୍ରାୟ ପ୍ରତିବର୍ଷ ସେମାନେ ସେହି ଏକା ଜାଗାକୁ ଆସିଥାନ୍ତି ।

### ସଂଯୋଗ ପଥ

ଆମେ ଜାଣିଛେ ଯେ ହାତୀ ତା'ର ଦରକାରୀ ଜିନିଷ ଖୋଜିବା ପାଇଁ ବେଶ୍ ବଡ଼ ଅଞ୍ଚଳରେ ବୁଲେ । ଗୋଟିଏ ଛୋଟ ଅଞ୍ଚଳରୁ ସେମାନେ ଯଥେଷ୍ଟ ପରିମାଣରେ ଏସବୁ ପାଇବେ ନାହିଁ । ବେଳେବେଳେ ତାଙ୍କର ଏହି ଅଞ୍ଚଳ କେତେ ରାଜ୍ୟ ବା ବନଖଣ୍ଡ ଭିତରେ ବ୍ୟାପିଥାଏ । ଏହି ସବୁ ଭିତରେ ଚଳପ୍ରଚଳ କରିବାର ବାଟକୁ ସଂଯୋଗ ପଥ ବା କରିଡର୍ କୁହାଯାଏ । ଏହି ସବୁ ପଥ ଦେଇ ହାତୀ ସାଧାରଣତଃ ବିଭିନ୍ନ ରାଜ୍ୟ ବା ଅଞ୍ଚଳରେ ବିନା ବାଧାରେ ବୁଲିପାରେ । ସେଥିପାଇଁ ହାତୀର ଜୀବନରେ ସଂଯୋଗ ପଥ ବହୁତ ଗୁରୁତ୍ୱପୂର୍ଣ୍ଣ । ବିଭିନ୍ନ ଋତୁରେ ଅଲଗା ଅଲଗା ଅଞ୍ଚଳରେ ଖାଦ୍ୟ ମିଳେ । ସେହିସବୁ ଅଞ୍ଚଳକୁ ଯିବାଆସିବାରେ ସଂଯୋଗ ପଥ ସାହାଯ୍ୟ କରେ । ଅଣ୍ଡିରା ହାତୀଙ୍କର ମାଈ ହାତୀ ଖୋଜିବାରେ ମଧ୍ୟ ଏହି ପଥ କାମ ଦେଇଥାଏ ।

## ମୌଳିକ ଆବଶ୍ୟକତା

### ବିଭିନ୍ନ ପ୍ରକାରର ଖାଦ୍ୟ

ମାଟି ଉପରର ଜୀବମାନଙ୍କ ଭିତରେ ହାତୀ ହେଉଛି ସବୁଠାରୁ ବଡ଼ ତୃଣଭୋଜୀ ଜୀବ । ଠିକ ଭାବରେ ବଞ୍ଚିରହିବା ପାଇଁ ଏବଂ ବଢ଼ିବା ପାଇଁ ତାକୁ ବହୁତ ପରିମାଣର ଖାଦ୍ୟ ଖାଇବାକୁ ପଡ଼ିଥାଏ । ସେମାନେ ବିଭିନ୍ନ ପ୍ରକାରର ଖାଦ୍ୟ ଖାଆନ୍ତି । ଜଙ୍ଗଲରେ ସେ ଗଛର ଛାଲି, ଡାଳ, ପତ୍ର ଆଦି ଖାଇବାକୁ ଭଲପାଏ । ପୋଷାହାତୀର ମାହୁନ୍ତ ଯାହା ଦିଏ ସେ ତାହା ଖାଏ । ଗୋଟିଏ ସର୍ବେକ୍ଷଣରୁ ଜଣାଯାଇଛି ଯେ ଉଭୟ ଏସୀୟ ଓ ଆଫ୍ରିକୀୟ ହାତୀ ୧୦୦-୫୦୦ ଜାତିର ଉଦ୍ଭିଦ ଖାଇଥା'ନ୍ତି । ହାତୀର ଏତେ କିସମର ଖାଦ୍ୟ ଖାଇବା ତା'ର ଶୁଣ୍ଢ ଯୋଗୁଁ ହିଁ ସମ୍ଭବ ହୁଏ । (ଶୁଣ୍ଢ ବିଷୟରେ ଅଧିକ ତଥ୍ୟ ପୃଷ୍ଠା ୧୧ରେ)

ହାତୀ ଯଦି କେବଳ କିଛି ନିର୍ଦ୍ଦିଷ୍ଟ ଖାଦ୍ୟ ଖାଉଥା'ନ୍ତା ତେବେ ଖାଦ୍ୟ ଖୋଜିବାରେ ତା'ର ଅନେକ ଶକ୍ତି ଓ ସମୟ ଚାଲିଯା'ନ୍ତା । ଯଥେଷ୍ଟ ଖାଦ୍ୟ ପାଇବା ମଧ୍ୟ କଷ୍ଟକର କଥା ହୁଅନ୍ତା । ଏଥିପାଇଁ ହାତୀ ବିଭିନ୍ନ ଅଞ୍ଚଳରେ ମିଳୁଥିବା ସବୁ ପ୍ରକାରର ଖାଦ୍ୟ ଖାଇଥାଏ ।

### ଚଟପଟି ଖାଦ୍ୟ

ହାତୀ କେବଳ ସୁଆଦ ଓ ପୁଷ୍ଟିକରତାକୁ ଚାହିଁ ଖାଦ୍ୟ ବାଛେନାହିଁ । ପ୍ରତିଥର ପାଟି ଭରିବା ପାଇଁ କେତେ ସମୟ ଦରକାର ହେବ ତାହା ମଧ୍ୟ ସେ ବିଚାରକୁ ନିଏ । ଖୁବ୍ କମ୍ ଜୀବଙ୍କ ଭିତରୁ ହାତୀ ହେଉଛି ଗୋଟିଏ ଯିଏ କି ମଣିଷ ଭଳି ଖାଦ୍ୟରୁ ଧୂଳି ଆଦି ସଫା କରି ଖାଏ । ଉଦାହରଣ ସ୍ୱରୂପ, ହାତୀ ଘାସକୁ ଶୁଣ୍ଢରେ ଧରି ଗୋଡ଼ ଦେହରେ ବାଡ଼େଇ ସେଥିରେ ଲାଗିଥିବା ମାଟି ଝାଡ଼ିଥାଏ ।

ଲମ୍ବା ଘାସ ଖାଇବା ହାତୀ ପାଇଁ ସବୁଠାରୁ ସହଜ ଏବଂ ଶୀଘ୍ର ହୁଏ । ମଣିଷ ଗୋଡ଼ ମୋଟାର ଡାଳ ବା ଛୋଟ ଗଛ ମଧ୍ୟ ସେ ଭାଙ୍ଗିପାରେ ଓ ଚୋବାଇ ଖାଇପାରେ ।

ଗଛର ଛେଲି ଖାଇବା ପାଇଁ ହାତୀକୁ ସବୁଠାରୁ ଅଧିକ ସମୟ ଲାଗେ । ସେ ଅନେକ ଗଛର ଛେଲି ଖାଇବାକୁ ଭଲପାଏ । ହାତୀ ଖାଉଥିବା ଛେଲି ପରୀକ୍ଷା କରି ଦେଖାଯାଇଛି ଯେ ସେଥିରୁ ହାତୀକୁ କାଲସିଅମ, ମାଙ୍ଗାନିଜ, ଲୁହା, ବୋରୋନ, ତମ୍ବା ଭଳି ଧାତୁ ମିଳିଥାଏ । ହାତୀ ଗଛର ଗଣ୍ଡି ଓ ଛାଲି ଭିତରେ ତା'ର ମୁନିଆ ଦାନ୍ତ ପୂରାଇ ଛାଲି ଛଡ଼ାଇ ଦିଏ । ମାଈ



ହାତୀ ବି ତା'ର ଛୋଟ ଦାନ୍ତ ସାହାଯ୍ୟରେ ଛାଲି ଛଡ଼ାଇପାରେ । କିନ୍ତୁ ଛାଲି ଛଡ଼ାଇବା କାମ ମୁଖ୍ୟତଃ ଦାନ୍ତାହାତୀ କରନ୍ତି । ଜୋରରେ ଝିଙ୍କିକରି ସେ କେତେ ଗଛରୁ, ବିଶେଷ କରି ଶାଳ ଗଛରୁ, ୧୦ ମିଟର ଉଚ୍ଚ ଯାଏଁ ଛାଲି ଉତାରି ଆଣିପାରେ । ଛାଲି ଛଡ଼ାଇବା ଫଳରେ ବେଳେବେଳେ ଗଛଟି ମରି ବି ଯାଇପାରେ । ଗଛରୁ ଛାଲି ଛାଡ଼ିଗଲେ ସେଥିରେ ନିଆଁ ଲାଗିବାର ବା ପୋକ ପଶିବାର ସମ୍ଭାବନା ବଢ଼ିଯାଏ ।

କେତେ ଲୋକ ବିଶ୍ୱାସ କରନ୍ତି ଯେ ହାତୀ ଖଣିଜ ପାଇବା ପାଇଁ ଗଛର ଛାଲି ଖାଏ । ଅନ୍ୟ କେତେକଙ୍କ ମତରେ ତନ୍ତୁପୂର୍ଣ୍ଣ ଛାଲି ଖାଇଲେ ହାତୀର କୋଷ୍ଠବଦ୍ଧତା ହୁଏନାହିଁ ଓ ଆନ୍ତ୍ରିକ କୃମି ମରିଯା'ନ୍ତି । ଖଣିଜ ପାଇଁ ଛାଲି ଖାଉ କି ନଖାଉ, ଖଣିଜ କିନ୍ତୁ ହାତୀ ପାଇଁ ଅତି ଦରକାରୀ ।

### ଶୋଷ ମେଣ୍ଟାଇବା

ହାତୀ ପାଇଁ ପାଣି ବହୁତ ଗୁରୁତ୍ୱପୂର୍ଣ୍ଣ । ମିଳିଲାବେଳେ ହାତୀ ବେଶ୍ ପରିମାଣର ପାଣି ପିଇଯାଏ । ସେ ଥରକେ ପ୍ରାୟ ୧୦୦ ଲିଟର ଏବଂ ଦିନକୁ ୨୦୦ ଲିଟର ଯାଏଁ ପାଣି ପିଇପାରେ । ହାତୀ ପରିଷ୍କାର ପାଣି ପିଇବାକୁ ଭଲପାଏ । ଦେଖାଯାଇଛି ଯେ ମଇଁଷି ମଇଳା କରିଥିବା ପୋଖରୀରୁ ହାତୀ ପାଣି ପିଏନାହିଁ । ମରୁଡ଼ି ସମୟରେ ଶୁଖିଲା ଝରଣାର ମାଟି ଖୋଳି ସେ ପାଣି ପିଏ । ପାଣି ନପିଇ ବି ହାତୀ ବେଶ୍ ଦିନ



Digitized by srujanika@gmail.com



ରହିପାରେ । କେବେ କେବେ ହାତୀ ପାଣି ନପିଇ ୧୫ ଦିନ ଯାଏଁ ରହିଥିବାର ବି ଦେଖାଯାଇଛି । ଅଧିକ ପରିମାଣର ଖଣିଜ ଲବଣ, ବିଶେଷ କରି ସୋଡ଼ିଅମ ଥିବା ଝରଣାରୁ ପାଣି ପିଇବାକୁ ହାତୀ ଭଲପାଏ । ହାତୀର ଆଉ ଗୋଟିଏ ମଜା ଅଭ୍ୟାସ ହେଉଛି ସେ ମଦ ପିଇବାକୁ ବି ବହୁତ ଭଲପାଏ ।

ପିଇବା ଛଡ଼ା ହାତୀ ଦେହ ଥଣ୍ଡା ରଖିବା ପାଇଁ ବି ପାଣି ବ୍ୟବହାର କରେ । ଖାଇ ସାରିବା ପରେ ହାତୀ ପ୍ରାୟ ଝରଣା କୂଳକୁ ଯାଏ । ଖରା ଦିନରେ ପାଣି ଭିତରେ ସମୟ କଟାଇବା ପାଇଁ ସେ ବହୁତ ଭଲପାଏ । ଦେହସାରା ପାଣି ଛିଞ୍ଚି ସେ ଦେହକୁ ଥଣ୍ଡା କରେ । ପାଣିରେ ଗଡ଼ିବାକୁ ଓ ପହଁରିବାକୁ ବି ସେ ବିଶେଷ ଭଲପାଏ ।

### ଜଙ୍ଗଲରେ

ଜଙ୍ଗଲରେ ଗୋଟିଏ ବୟସ୍କ ହାତୀ ଦିନକୁ ପ୍ରାୟ ୧୦୦-୨୦୦ କି.ଗ୍ରା. ଡାଳପତ୍ର ଖାଏ । ଅବଶ୍ୟ ଏହା ହାତୀର ରହିବା ଜାଗା ଓ ଆକାର ଉପରେ ନିର୍ଭର କରେ । ନିଜ ଦେହ ଓଜନର ଶତକଡ଼ା ୬ରୁ ୮ ଭାଗ ଓଜନର ଖାଦ୍ୟ ସେ ପ୍ରତିଦିନ ଦରକାର କରେ । ସେଥିପାଇଁ ସେ ଦିନର ପ୍ରାୟ ତିନିଚତୁର୍ଥାଂଶ ଯାଏଁ ସମୟ, ୧୨-୧୮ ଘଣ୍ଟା, ଖାଦ୍ୟ ଖୋଜିବା, ତୋଳିବା, ପ୍ରସ୍ତୁତ କରିବା ଏବଂ ଖାଇବାରେ କଟାଇଥାଏ । ଦିନସାରା ତାଙ୍କର ଖାଇବାର ହାର ସମାନ ନଥାଏ । ସକାଳ, ଅପରାହ୍ନ ଓ ସନ୍ଧ୍ୟା ସମୟରେ ସେ ବେଶୀ ଖାଏ । ଅନ୍ୟ ସମୟରେ ଆରାମରେ ଧୀରେ ଧୀରେ ଖାଇଥାଏ । କେବଳ ଟାଣ ଖରାବେଳେ ସେ ବିଶ୍ରାମ ନିଏ । ବାକି ସମୟତକ ସେ ଖାଉଥାଏ ।

ହାତୀ ଗୋଟିଏ ଦୃଷ୍ଟିରୁ ଅନନ୍ୟ । କାରଣ ସେ ହେଉଛି ଏକମାତ୍ର ସ୍ତନ୍ୟପାୟୀ ଯିଏ କି ଉଭୟ ଡାଳଖିଆଳି ଏବଂ ଘାସଖିଆଳି । ଅର୍ଥାତ, ସେ ଡାଳ, ପତ୍ର, ଟାଣ ମୂଳ ଆଦି ଖାଏ ଏବଂ ଗାଈ ଭଳି ଘାସ ମଧ୍ୟ ଚରେ ।

ହାତୀର ଖାଦ୍ୟ ଭିତରେ ଘାସ, ଚଉଡ଼ା ପତ୍ର ବାଲା ଛୋଟ କ୍ଷୁପ, ମଝି ଆକାରର ଗଛ, ନଡ଼ିଆଜାତୀୟ, ଲତା ଏବଂ ବଡ଼ ଗଛ ଭଳି ଅନେକ ପ୍ରକାରର ଉଦ୍ଭିଦ ଥାଏ । ପତ୍ର, ଡାଳ, ଛାଲି, ଫୁଲ ଭଳି ଗଛର ବିଭିନ୍ନ ଅଂଶ ବି ତା'ର ଖାଦ୍ୟ ଭିତରେ ଥାଏ । ଉଭୟ ଏସୀୟ ଏବଂ ଆଫ୍ରିକୀୟ ହାତୀର ଖାଦ୍ୟ ଭିତରୁ ଅଧିକାଂଶ ଭାଗ, ଶତକଡ଼ା ପ୍ରାୟ ୩୦-୬୦, ହେଉଛି ଘାସ । ରହିବା ଜାଗା ଓ ଋତୁ ଅନୁସାରେ ହାତୀ ତା'ର ଖାଦ୍ୟ ବଦଳାଏ । ଉଦାହରଣ ସ୍ୱରୂପ, ଦକ୍ଷିଣ ଭାରତରେ ଶୁଖିଲା ମାସଗୁଡ଼ିକରେ ତା'ର ଖାଦ୍ୟର ଶତକଡ଼ା ୭୦ ଭାଗ ଡାଳପତ୍ର ହେଲାବେଳେ ବର୍ଷାଦିନ ଆରମ୍ଭରେ ତାହା ପ୍ରାୟ ୫୪ ଶତାଂଶ ଘାସ ହୋଇଥାଏ ।

ମଣିଷ ଓ ବଣମଣିଷଙ୍କ ଭଳି ହାତୀର ଖାଦ୍ୟ ପସନ୍ଦ ବିଭିନ୍ନ କାରଣରୁ ଆସିଥାଏ । ଏହା କିଛି ମାତ୍ରାରେ ନିର୍ଭର କରେ ତା'ର ରହିବା ଜାଗାର ସବୁଜିମା ଉପରେ, କିଛି ମାତ୍ରାରେ ମା'ଠାରୁ ଜାଣିଥିବା ଖାଦ୍ୟ ଉପରେ ଏବଂ କିଛି ମାତ୍ରାରେ ନିଜେ ଚାଖିକରି ଭଲପାଇଥିବା ଖାଦ୍ୟ ଉପରେ । ଗୋଟିଏ ହାତୀ ଅନେକ ଜାତିର ଉଦ୍ଭିଦ ଖାଇଥାଏ । ସେହି ଉଦ୍ଭିଦ ଜାତିର ସଂଖ୍ୟା ପ୍ରତି ହାତୀ ପାଇଁ ଅଲଗା ହୋଇପାରେ, କିନ୍ତୁ ଏହା ପ୍ରାୟତଃ ୫୦ରୁ ବେଶୀ ହୁଏ ।

### ପୋଷା ହାତୀ

ପୋଷା ହାତୀକୁ ବହୁତ ପରିମାଣର ଖାଦ୍ୟ ଦେବାକୁ ପଡ଼ିଥାଏ । ପୋଷା ହାତୀକୁ ସାଧାରଣତଃ ବର, ଅଶ୍ୱସ୍ଥ, ବାଉଁଶ ଗଛର ଡାଳ ଏବଂ ତାଳଗଜା ଆଦି ଦିଆଯାଏ । ବିଭିନ୍ନ ପ୍ରକାରର ଘାସ, ଶସ୍ୟ, କଦଳୀପତ୍ର, ନଡ଼ିଆ ଏବଂ ଫଳ ବି ତାକୁ ଦିଆଯାଇଥାଏ ।

ଆମେ ଜାଣିଛେ ଯେ ବଣୁଆ ହାତୀ ରହୁଥିବା ଜାଗାରେ ଯାହା ମିଳେ ତା ଖାଏ । ସେହିଭଳି ପୋଷା ହାତୀକୁ ବି ସେ ଅଞ୍ଚଳରେ ମିଳୁଥିବା ଜିନିଷ ସବୁ ଦିଆଯାଇଥାଏ । ଆସାମରେ ହାତୀର ମୁଖ୍ୟ ଖାଦ୍ୟ ହେଉଛି *ଆଲ୍‌ପିନିଆ* (ପୋରା ବା ତାରା) ଘାସ । ଧାନ ଓ କିଛି ପରିମାଣର ଶାଳଗଛର ଡାଳ ବି ଦିଆଯାଏ । ଶାଳର ପରିମାଣ ବିଭିନ୍ନ ଦିନରେ ଅଲଗା ହୋଇଥାଏ । କାମ ଥିବା ଦିନରେ ପ୍ରାୟ ୯ କି.ଗ୍ରା. ଓ କାମ ନକରୁଥିବା ଦିନରେ ୫ କି.ଗ୍ରା. ଶାଳ ହାତୀକୁ ମିଳିଥାଏ । ଉତ୍ତର ଭାରତରେ ହାତୀର ମୁଖ୍ୟ ଖାଦ୍ୟ ହେଉଛି ରୁଟି । ଦିନକୁ ପ୍ରାୟ ୧୦-୧୪ କି.ଗ୍ରା. ଅଟା ଓ ଚାଉଳ ଚୂନାରେ ତିଆରି ରୁଟି ହାତୀମାନଙ୍କୁ ଦିଆଯାଇଥାଏ । ମହୀଶୂରରେ ଛୁଆ ଜନ୍ମ କରିଥିବା ମାଈ ହାତୀକୁ ଦିନକୁ ୧୦ଟି ନଡ଼ିଆ ଓ ୩ କି.ଗ୍ରା. ଚାଉଳ ଦିଆଯାଏ । ତାମିଲନାଡୁରେ ରାଗି ଶସ୍ୟ ଦିଆଯାଏ । ଭାରତର ସବୁ ଅଞ୍ଚଳରେ ଦିନକୁ ଅନ୍ତତଃ ଦୁଇ ତିନି ଥର ପାଣି ଦିଆଯାଏ ।

## ଖାଦ୍ୟ ହଜମ ଓ ମଳ ତ୍ୟାଗ

ଖାଦ୍ୟ ହଜମର ଧାରା ଅନୁସାରେ ତୃଣଭୋଜୀଙ୍କୁ ଦୁଇଟି ଶ୍ରେଣୀରେ ରଖାଯାଏ - ରୋମନ୍ଥକ ବା ପାକୁଳି କରୁଥିବା ଜୀବ ଏବଂ ଅରୋମନ୍ଥକ ବା ପାକୁଳି କରୁନଥିବା ଜୀବ । ଗାଈଗୋରୁ, ଛେଳି, ମେଣ୍ଢା ଆଦି ଜୀବ ପାକୁଳି କରନ୍ତି । ଏମାନଙ୍କର ପାକସ୍ଥଳୀରେ ଚାରୋଟି କୋଠରୀ ଥାଏ । ଏମାନଙ୍କର ମୁଖ୍ୟ ଖାଦ୍ୟ ହେଉଛି ଉଦ୍ଭିଦ । ସେଥିରେ ଥିବା ସେଲୁଲୋଜରୁ ଶକ୍ତି ପାଇବା ପାଇଁ ଏମାନଙ୍କର ପାକସ୍ଥଳୀ ଗଢ଼ା । ପାକୁଳି କଲାବାଲା ଜୀବ ଖାଇଲା ବେଳେ ଖାଦ୍ୟ ପ୍ରଥମେ ପାକସ୍ଥଳୀର ପ୍ରଥମ ଓ ଦ୍ୱିତୀୟ କୋଠରୀକୁ ଯାଏ । ଏହାପରେ ଖାଦ୍ୟ ପୁଣିଥରେ ପାଟିକୁ ଫେରେ ଓ ଜୀବଟି ପୁଣିଥରେ ତାକୁ ଚୋବାଇଥାଏ । ଏଠାରୁ ଖାଦ୍ୟ ପାକସ୍ଥଳୀର ତୃତୀୟ ଓ ଚତୁର୍ଥ କୋଠରୀକୁ ଯାଏ । ଏହି ପୂରା ପ୍ରକ୍ରିୟାରେ ଖାଦ୍ୟ ହଜମ ହୋଇଥାଏ । ଏହାପରେ ବଳକା ଅଂଶ ଦେହରୁ ବାହାରିଯାଏ ।

ହାତୀ ପାକୁଳି କରେନାହିଁ । ଏହାର ହଜମ ପ୍ରଣାଳୀ ଏତେ ଦକ୍ଷ ନୁହେଁ । ପୋଷା ହାତୀ ଉପରେ ପରୀକ୍ଷା କରି ଦେଖାଯାଇଛି ଯେ ହାତୀ ଶତକଡ଼ା ମାତ୍ର ୨୨ ଭାଗ ପୁଷ୍ଟିସାର ହଜମ କରିପାରେ । ବୋଧହୁଏ ତା'ର ହଜମ ପ୍ରଣାଳୀର ଦକ୍ଷତା ଏତେ କମ୍ ହୋଇଥିବାରୁ ଖାଦ୍ୟ ତା'ର ପାକପ୍ରଣାଳୀ ଭିତରେ ଶୀଘ୍ର ଚାଲିଯାଏ ଏବଂ ହଜମ ହେବା ପରେ ପରେ ନିୟମିତ ଭାବରେ ବାହାରିଯାଏ । ହାତୀର ପାକପ୍ରଣାଳୀ ଦେଇ ଖାଦ୍ୟ ଯିବା ପାଇଁ ୧୧ରୁ ୪୬ ଘଣ୍ଟା (ହାରାହାରି ୨୪ ଘଣ୍ଟା) ଲାଗିଥାଏ । ସେ ଖାଇଥିବା ଖାଦ୍ୟର ଗୋଟିଏ ବଡ଼ ଭାଗ ସେମିତି ବାହାରିଆସେ । ଗାଈର ଗୋବର ପରି ହାତୀ ଗୋବରରେ ପୂରା ହଜମ ହୋଇଥିବା ଜିନିଷ ପ୍ରାୟ ନଥାଏ ।

ହାତୀ ତା'ର ଖାଦ୍ୟରୁ ଶତକଡ଼ା ୫୦ ଭାଗ ବା ତାଠାରୁ କମ୍ ଖାଦ୍ୟସାର ଗ୍ରହଣ କରିପାରେ ।



Digitized by srujanika@gmail.com

ତେଣୁ ଯଥେଷ୍ଟ ଖାଦ୍ୟସାର ପାଇବା ପାଇଁ ହାତୀକୁ ଅଧିକ ପରିମାଣର ଖାଦ୍ୟ ଖାଇବାକୁ ହୁଏ ।

ହାତୀର ବୃହଦାନ୍ତ୍ରରେ (ବିଶେଷ କରି ସ୍ଥୂଳାନ୍ତ୍ର ଓ ଅନ୍ଧାନ୍ତ୍ରରେ) ଥିବା ଆଦିପ୍ରାଣୀ ଓ ବୀଜାଣୁ ଭଳି ଅଣୁଜୀବମାନେ ସେଲୁଲୋଜ ଭାଙ୍ଗିବା ପ୍ରକ୍ରିୟାରୁ ହାତୀ ତା'ର ଅଧିକାଂଶ ଶକ୍ତି ପାଇଥାଏ ।

ହାତୀଛୁଆ ମା କ୍ଷୀର ଛାଡ଼ିଲା ବେଳକୁ ସେଲୁଲୋଜ ହଜମ କରିବା ପାଇଁ ତା ପେଟରେ ଏହି ଅଣୁଜୀବ ରହିବା ଦରକାର । ସେ ବଡ଼ ହାତୀଙ୍କ ଗୋବରରୁ ଟିକିଏ ଖାଇ ଅଣୁଜୀବ ପାଇଥାଏ । ତା'ର ଏହି କାମକୁ ମଳଭକ୍ଷଣ କୁହାଯାଏ ।

## ଲୁଣ ପ୍ରୀତି

ମଣିଷ ସମେତ ସବୁଜୀବଙ୍କର ଲୁଣ ଦରକାର ଏବଂ ସେମାନେ ଲୁଣ ପାଇବା ପାଇଁ ଅନେକ ବ୍ୟବସ୍ଥା କରନ୍ତି । ବୋଧହୁଏ ଲୁଣ ଯୋଗୁଁ ହିଁ ଆମ ଖାଦ୍ୟ ସୁଆଦ ଲାଗେ । ବହୁତ ଲୁଣ ଖାଇବା ଯେପରି ଖରାପ, ସେହିପରି ଯଥେଷ୍ଟ ଲୁଣ ନଖାଇଲେ ଆମ ଦେହର କାମ ଠିକ୍ ଚାଲିବନାହିଁ ।

ମଣିଷଙ୍କ ଭଳି ହାତୀର ବି ଲୁଣ ଓ ଖଣିଜ ପ୍ରତି ବେଶି ଆଦର ଥାଏ । ଲୁଣ ପାଇବା ପାଇଁ ହାତୀ ସବୁ ପ୍ରକାର ଜିନିଷ ଚାଖିଥାଏ । ଚାଖୁ ଚାଖୁ ଯଦି କେଉଁଠି ଲୁଣ ମିଳିଯାଏ ତେବେ ସେ ତାହା ଖାଏ ଏବଂ ସେ ଜାଗାକୁ ମନେରଖି ଦରକାର ଅନୁସାରେ ଭବିଷ୍ୟତରେ ସେଠାକୁ ଫେରେ ।

ହାତୀ ଖଣିଜଭରା ମାଟି ବି ଖାଇଥାଏ । ବିଷୁବ ମଣ୍ଡଳୀୟ ଜଙ୍ଗଲର ମାଟିରେ ହାତୀ ଦରକାର କରୁଥିବା ମୁଖ୍ୟ ଖଣିଜ ସୋଡ଼ିଅମ ଖୁବ୍ କମ୍ ଥାଏ । ସେଥିପାଇଁ ସେଠାର ହାତୀ 'ଲୁଣଚଟା'କୁ ଆଦରିଥାଏ । ଲୁଣଚଟା ହେଉଛି ବହୁତ ଲୁଣ ଥିବା ପଥର ବା ଖଣିଜଲବଣ ଭରା ମାଟି ଅଞ୍ଚଳ ।

ହାତୀ ଲୁଣଚଟା ଅଞ୍ଚଳକୁ ପ୍ରାୟ ଯାଉଥିଲେ ବି ସେ ଅନ୍ୟ ଜୀବଙ୍କ ଭଳି ଲୁଣ ଚାଟିପାରେ ନାହିଁ । କାରଣ ତା'ର ଜିଭ ଶୁଣ୍ଢ ଟପି ମାଟି ଯାଏଁ ପହଞ୍ଚିବା ଭଳି ଲମ୍ବା ହୋଇନଥାଏ । ସେଥିପାଇଁ ସେ ତା'ର ଦାନ୍ତରେ ସେହି ମାଟି ବା ପଥରକୁ ଖୋଳିପକାଏ ଏବଂ ଶୁଣ୍ଢ ଅଗରେ ମାଟିପଥର ଟେଳା ସବୁ ଉଠାଇନିଏ । ଏହାକୁ ସେ ପାଟିରେ ପୂରାଇ କଳଦାନ୍ତରେ ଚୋବାଏ ଓ ଶେଷରେ ଗିଳିଦିଏ । ଏହି ଧାରାରେ ହାତୀ ଘଣ୍ଟାକୁ ୨୩ କି·ଗ୍ରା· ପର୍ଯ୍ୟନ୍ତ ଲୁଣ ଖାଇପାରେ ।



କେତେକ ବନ୍ୟଜନ୍ତୁ ପାର୍କରେ ଦର୍ଶକଙ୍କୁ ଆକର୍ଷିତ କରିବା ପାଇଁ ହାତୀର ଏହି ଲୁଣଖିଆ ଗୁଣକୁ କାମରେ ଲଗାଯାଇଥାଏ । ସେମାନେ ପାର୍କର ନିର୍ଦ୍ଦିଷ୍ଟ ଜାଗାରେ ସାଧାରଣ ଲୁଣ ରଖି ହାତୀକୁ ଆକର୍ଷିତ କରନ୍ତି ।

# ଖେଳ ସମୟ

## ଗାଧୁଆ

ଜଙ୍ଗଲରେ ହାତୀ ସାଧାରଣତଃ ଦିନକୁ ଥରେ ପାଣି ପିଏ । ପାଣି ପିଇବା ପରେ ସେ କିଛି ସମୟ ପାଣି ଭିତରେ ରହେ । ପାଣି ଭିତରେ ସେ କେବଳ ପିଇବା ବା ଗାଧୋଇବା କାମ କରେନାହିଁ । ଦେହକୁ ଥଣ୍ଡା ରଖିବା ପାଇଁ ଦେହସାରା ପାଣି ଛିଞ୍ଚିବା କାମ ବି କରେ ।

ଉଭୟ ଆଫ୍ରିକୀୟ ଏବଂ ଏସୀୟ ହାତୀ ଦକ୍ଷ ପହଁରାଳୀ । ଏମାନେ ଘଣ୍ଟାକୁ ୧·୬ କି·ମି· ବେଗରେ ପହଁରି ପାରନ୍ତି । ହାତୀର ଚଲାବୁଲା କରୁଥିବା ଅଞ୍ଚଳ ଭିତରେ ସମୁଦ୍ର ଥିଲେ, ସେ ସମୁଦ୍ର ଭିତରେ ବି ପଶିକରି ଖେଳେ । ଆଣ୍ଡାମାନର ବଣୁଆ ହାତୀ ସମୁଦ୍ରରେ ପହଁରି ଗୋଟିଏ ଦ୍ୱୀପରୁ ଆଉ ଗୋଟିଏ ଦ୍ୱୀପକୁ ଯିବାର ପ୍ରାୟତଃ ଦେଖାଯାଏ । ସେ ପାଣି ଭିତରେ ବେଶ୍ ଆରାମରେ ଘୁରିପାରେ ଏବଂ ପାଣି ଉପରେ ରହିବାକୁ ପ୍ରାୟ ଭଲପାଏ ନାହିଁ । ପାଣି ଭିତରେ ବୁଡ଼ିକରି ଥିବାବେଳେ ସେ ତା'ର ଶୁଣ୍ଢକୁ ଗୋଟିଏ ନିଶ୍ୱାସ ନଳୀ (*ସ୍ନୋରକେଲ*) ଭଳି ଉପରକୁ ଟେକିଧରେ ଓ ତାହା ସାହାଯ୍ୟରେ ନିଶ୍ୱାସ ନିଏ । ପାଣି ଭିତରେ ମାଈ ହାତୀ ତା'ର ଛୁଆର ବହୁତ ଯତ୍ନ ନିଏ । ଜୋର ସୁଅ ଥିବା ନଈ ପାରି ହେବାବେଳେ ଭାସି ନଯିବା ପାଇଁ ତାର ଛୁଆକୁ ସୁଅର ଉପର ମୁଣ୍ଡରେ ରଖେ ।

## କାଦୁଅ ଘଣ୍ଟା

ହାତୀ ସାଧାରଣତଃ ପାଣିରେ ଗାଧୋଇବା ପରେ ପରେ କାଦୁଅରେ ଗଡ଼ିଥାଏ । ଏହାକୁ କାଦୁଅଘଣ୍ଟା କୁହାଯାଏ ଏବଂ ହାତୀମାନଙ୍କର ଏହା ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଗୁଣ । ବେଳେବେଳେ ଗୋଟିଏ ବଡ଼ ହାତୀପଲ ଶୁଖି ଯାଉଥିବା ପୋଖରୀର କାଦୁଅରେ ଗଡୁଥିବାର ଦେଖାଯାଏ । ଏଭଳି କାଦୁଅଘଣ୍ଟା ବା କାଦୁଅରେ ଗଡ଼ିବା ଫଳରେ ତା ଦେହରେ କାଦୁଅ ନେସି ହୋଇଯାଏ ଓ ସେହି କାଦୁଅ ପରସ୍ତ ତାକୁ ଅତିବାଇଗଣି ରଶ୍ମିରୁ ରକ୍ଷାକରେ ବୋଲି ବିଶ୍ୱାସ କରାଯାଏ । ଏହି ପରସ୍ତ ତାକୁ କୀଟ କାମୁଡ଼ାରୁ ବି ରକ୍ଷାକରେ ଏବଂ ତା'ର ଦେହର ତାପମାତ୍ରା କମ୍ ରଖିବାରେ ସାହାଯ୍ୟ କରେ । ଧୂଳି, ମାଟି, ଶୁଖିଲା କାଦୁଅ ଯୋଗୁଁ ତାକୁ ମାଛି କାମୁଡ଼େ ନାହିଁ । ହାତୀର ଚମଡ଼ା କୁଞ୍ଚୁକୁଞ୍ଚିଆ ହୋଇଥିବାରୁ ଏଥିରେ ଲାଗିଥିବା ପାଣି ଓ କାଦୁଅ ବହୁତ ସମୟ ଯାଏଁ ରହେ । କୁଞ୍ଚୁକୁଞ୍ଚିଆ ହେବା ଯୋଗୁଁ ଚମର କ୍ଷେତ୍ରଫଳ ବଢ଼ିଯାଏ ଓ ଦେହର ଥଣ୍ଡା ହେବା ପ୍ରକ୍ରିୟାର ଦକ୍ଷତା ବି ବଢ଼ିଯାଏ । କାଦୁଅଘଣ୍ଟାରେ

## ଲୁଣପ୍ରେମୀ ହାତୀ

କେନିଆ ଦେଶର ଗୋଟିଏ ମୃତ ଆଗ୍ନେୟଗିରି *ମାଉଣ୍ଟ ଏଲ୍‌ଗନ୍* ଉପରେ ହାତୀମାନେ ଲୁଣପଥର ଖୋଳିବା ପାଇଁ ପୂରା ଅନ୍ଧାରରେ ଗୋଟିଏ ଗୁମ୍ଫାରେ ପଶିବାର ଦେଖାଯାଏ । କିନ୍ତୁ ହାତୀଙ୍କର ଏହି ଲୁଣ-ଖଣିଜ ପ୍ରୀତି ତାଙ୍କ ପାଇଁ ଖୁବ୍ ମହଙ୍ଗା ପଡ଼େ । କାରଣ *ମାଉଣ୍ଟ ଏଲ୍‌ଗନ୍*ର ଖଣିଜଭରା ଆଗ୍ନେୟ ଶିଳା ଅତି ଟାଣ । ତେଣୁ ତାକୁ ଖୋଳିବା ଫଳରେ ହାତୀଙ୍କ ଲମ୍ବା ଦାନ୍ତଗୁଡ଼ିକ ଘୋରିହୋଇ ଖୁବ୍ ଛୋଟ ହୋଇଯାଏ । ଏଭଳି ମୁଣ୍ଡା ଦାନ୍ତରେ ଗଛରୁ ଛେଲି ଛଡ଼େଇ ହୁଏନାହିଁ ବା ଲଢ଼େଇରେ ତାହା ଭଲ କାମ ଦିଏନାହିଁ । ସେହି ହାତୀଙ୍କର ମଳକୁ ପରୀକ୍ଷା କଲାରୁ ଦେଖାଗଲା ଯେ ତାହାର ଶତକଡ଼ା ପ୍ରାୟ ୪୦ ଭାଗ ହେଉଛି ପଥର ଗୁଣ୍ଡ ।



Digitized by srujanika@gmail.com

ଫରକରୁ ‑ଏସୀୟ ହାତୀର ଦେହର ପାଉଁଶିଆ ରଙ୍ଗ ଫିକା ବା ଗାଢ଼ ହୋଇଥାଏ ।

### ଥଣ୍ଡା ରଖିବା

ଅନ୍ୟ ଜୀବଙ୍କ ଭଳି ହାତୀ ବି ମାଂସପେଶୀକୁ କାମରେ ଲଗାଇବା ଯୋଗୁଁ ତା'ର ଦେହର ତାପମାତ୍ରା ବଢ଼ିଯାଏ । ମଣିଷର ଝାଳ ବାହାରିବା ଯୋଗୁଁ ଏହି ଅଧିକ ତାପ ଦେହରୁ ବାହାରିଯାଏ । ଝାଳ ବାଷ୍ପ ହେବା ବେଳେ ଦେହର ତାପ ଶୋଷିନିଏ ଓ ଦେହକୁ ଥଣ୍ଡା କରେ । କିନ୍ତୁ ହାତୀର ମଣିଷ ଭଳି ସ୍ୱେଦଗ୍ରନ୍ଥି ନଥାଏ । ସ୍ୱେଦଗ୍ରନ୍ଥି ଥିଲେ ବି ତା'ର କାମକୁ ଫଳପ୍ରଦ କରିବା ପାଇଁ ହାତୀର ଓଜନ ତୁଳନାରେ ତା'ର ଚମଡ଼ାର କ୍ଷେତ୍ରଫଳ ଯଥେଷ୍ଟ ହୁଅନ୍ତା ନାହିଁ । ସେଥିପାଇଁ ତାପମାତ୍ରା କମାଇବା ପାଇଁ ହାତୀକୁ ଅନ୍ୟ କିଛି ବ୍ୟବସ୍ଥା କରିବାକୁ ହୁଏ । ପାଖରେ ଗଛ ଥିଲେ ସେ ଛାଇ ତଳକୁ ଚାଲିଯାଏ । ପାଣି ପାଖରେ ଥିଲେ ଶୁଣ୍ଢରେ ପାଣି ଆଣି ଦେହ ଉପରେ ଛିଞ୍ଚେ ଓ ତା'ପରେ ଦେହସାରା କାଦୁଅ ବୋଳିହୁଏ । ଦେଖାଯାଇଛି ଯେ ପାଣି ନଥିଲେ ବି ସେ ତା ଦେହସାରା ଶୁଖିଲା ଧୂଳି ବୋଳିହୁଏ । ଏହା ଫଳରେ ତା'ର ଚମ ଉପରେ ପରସ୍ତେ ଧୂଳି ବସିଯାଇ ତାକୁ ସୁରକ୍ଷା ଯୋଗାଏ । ଏସବୁ ସହିତ ଦେହର ତାପମାତ୍ରା ନିୟନ୍ତ୍ରଣ କରିବା ପାଇଁ ସେ ତା'ର କାନକୁ ହଲାଏ । କାନ ହାତୀର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ତାପ ନିୟନ୍ତ୍ରଣ ଯନ୍ତ୍ରର କାମ କରେ ।

### ଶୋଇବା

ଦିନର ୨୪ ଘଣ୍ଟା ଭିତରୁ ହାତୀ ମାତ୍ର ୪ ଘଣ୍ଟା ଶୋଇଥାଏ । ଦିନର ସବୁଠାରୁ ଗରମ ସମୟରେ ଶୋଇବାକୁ ସେ ଭଲପାଏ । ଶୋଇବା ପାଇଁ ସବୁ ହାତୀଙ୍କୁ ତଳେ ଗଡ଼ିବାକୁ ପଡ଼େ ନାହିଁ । ବୟସ୍କ ହାତୀମାନେ ସାଧାରଣତଃ ଠିଆ ହୋଇ ଶୁଅନ୍ତି । କିନ୍ତୁ ଛୁଆହାତୀ ତଳେ ଶୋଇବାକୁ ଭଲ ପାଆନ୍ତି । ହାତୀମାନେ ଅଳ୍ପ ସମୟ ପାଇଁ ଥର ଥର ହୋଇ ଶୁଅନ୍ତି ଏବଂ ପ୍ରତି ୧୫-୩୦ ମିନିଟ ଛାଡ଼ି ଥରେ ଉଠୁଥା'ନ୍ତି । କାଳେ କୁଆଡ଼ୁ କିଛି ବିପଦ ଆସୁଥିବ ତାହା ଦେଖିବା ପାଇଁ ହାତୀ ଏପରି ଉଠୁଥାଏ ।

## ହାତୀ: ପରିସଂସ୍ଥାର ଏକ ଅଂଶ

### ମୂଳବିନ୍ଦୁ ଜୀବଜାତି

ପରିବେଶ ବିଜ୍ଞାନୀମାନେ ହାତୀକୁ ମୂଳବିନ୍ଦୁ ଜୀବଜାତି (କି'ଷ୍ଟୋନ୍ ସ୍ପେସିଜ୍) ଭାବରେ ବର୍ଣ୍ଣନା କରନ୍ତି । କୌଣସି ଆବାସସ୍ଥଳୀର ସାଧାରଣ ଅବସ୍ଥା ସୂଚାଇବା ପାଇଁ ଯେଉଁ ଜୀବଙ୍କୁ ବ୍ୟବହାର କରାଯାଏ ସେମାନଙ୍କୁ ମୂଳବିନ୍ଦୁ ଜୀବଜାତି କୁହାଯାଏ । ଉଦାହରଣ ସ୍ୱରୂପ, ବାଘ ଖାଦ୍ୟଶୃଙ୍ଖଳର ସବୁଠାରୁ ଉପରେ ରହିଛି । ତେଣୁ ବାଘ ରହିଛି ଅର୍ଥ ସେ ଅଞ୍ଚଳରେ ଅନେକ ସଂଖ୍ୟାରେ ହରିଣ ଜାତୀୟ ଜୀବ ଅଛନ୍ତି । ହରିଣ ଥିବାର ଅର୍ଥ ହେଉଛି ସେଠାରେ ଭଲ ଗଛଲତା ରହିଛି । ଏସବୁ ଗୋଟିଏ ପରିସଂସ୍ଥାର ଅବସ୍ଥା ସୂଚାଉଛି । ପରିବେଶର ଗୁଣମାନ ପାଇଁ ହାତୀ ମଧ୍ୟ ସେହିଭଳି ଏକ ସୂଚକ ଜୀବ ।

ହାତୀ ଗୋଟିଏ ବିରାଟକାୟ ଜୀବ ହୋଇଥିବାରୁ ତା'ର ଯେ କେବଳ ବେଶି ପରିମାଣର ଖାଦ୍ୟ ଦରକାର ହୁଏ ତାହା ନୁହେଁ । ସେ ଖାଦ୍ୟ ମଧ୍ୟ ପୁଷ୍ଟିକର ହୋଇଥିବା ଜରୁରୀ । କୌଣସି ଜାଗାରେ ହାତୀ ରହିଥିଲେ ସେ ଜାଗାରେ ବିଭିନ୍ନ ପ୍ରକାରର ଗଛଲତା ଭଲ ବଢୁଥିବାର ସୂଚନା ଦିଏ । ଏହି ଜାଗାରେ ଅନେକ ଛୋଟ ତୃଣଭୋଜୀ ଜୀବ ବି ନିଶ୍ଚୟ ରହିଥିବେ । ଅନେକ ସଂଖ୍ୟାରେ ତୃଣଭୋଜୀ ଜୀବ ଥିଲେ ସେ ଅଞ୍ଚଳରେ ବେଶ୍ ସଂଖ୍ୟାରେ ମାଂସାଶୀ ଜୀବ ବି ରହିବେ । ତେଣୁ ହାତୀ କୌଣସି ଅଞ୍ଚଳର ଅବସ୍ଥା ଜଣାଇବା ପାଇଁ ଏକ ଭଲ ସୂଚକ । ମୋଟ ଉପରେ ଦେଖିଲେ, ଯେଉଁ ଅଞ୍ଚଳ ହାତୀ ପାଇଁ ଉପଯୁକ୍ତ, ସେ ଅଞ୍ଚଳ ଅନେକ ଛୋଟ ତୃଣଭୋଜୀ ଏବଂ ବାଘ ଭଳି ମାଂସାଶୀ ଜୀବଙ୍କ ପାଇଁ ମଧ୍ୟ ଉପଯୁକ୍ତ ।

### ଉପକାରୀ ହାତୀ

ବହୁତ ଜାତିର ପ୍ରାଣୀ ଓ ଉଦ୍ଭିଦ ହାତୀଠାରୁ ଅନେକ ଲାଭ ପା'ନ୍ତି । କେତେକ ଜୀବ ଅଛନ୍ତି ଯାହା ହାତୀ ବିନା ତିଷ୍ଠି ପାରିବେ ନାହିଁ । (ପୃଷ୍ଠା ୩୬ରେ ଅଧିକ ରହିଛି)

ଜଙ୍ଗଲରେ କେତେ ପ୍ରକାରର ମଞ୍ଜି ଗଛ ତଳେ ସେମିତି ପଡ଼ି ନଷ୍ଟ ହୋଇଯାଏ । ଯଥେଷ୍ଟ ଆଲୁଅ ନପାଇବାରୁ ନୂଆ ଗଛ ବଢ଼ିପାରେ ନାହିଁ । ହାତୀ ଗଛର ଡାଳପତ୍ର ଖାଇବା ଫଳରେ ଗହଳି କମିଯାଏ ଓ ଗଛ ତଳେ ଆଲୁଅ ମିଳେ । ଫଳରେ ସେଠାରେ ଚାରା ଗଛ ଉଠେଇବା ପାଇଁ ଉପଯୁକ୍ତ ପରିବେଶ ପାଏ ।

ହାତୀର ହଜମ କ୍ରିୟା ଏତେ ଭଲ ହୋଇନଥିବାରୁ ତା'ର ମଳରେ ଅନେକ ମଞ୍ଜି ବାହାରିଆସେ ଏବଂ ଜଙ୍ଗଲରେ ବିଭିନ୍ନ ଜାଗାରେ ଗଜା ହୁଏ ।

ହାତୀ ତା'ର ଶୁଣ୍ଢରେ ଅନେକ ବଡ଼ ଗଛର ଡାଳ ତଳକୁ ଟାଣିଆଣେ । ଏହା ଫଳରେ ଅନେକ ଛୋଟ ଜୀବଙ୍କୁ ବିଭିନ୍ନ ପ୍ରକାରର ଖାଦ୍ୟ ଖାଇବାର ସୁଯୋଗ ମିଳିଥାଏ । ହାତୀ ଠେଲିଥିବା ଅଧିକାଂଶ ଗଛ ମରେ ନାହିଁ । ଜଙ୍ଗଲ ମାଟିରେ ଶୋଇପଡ଼ିଥିବା ଅବସ୍ଥାରେ ତାହା ଅନେକ ବର୍ଷ ଧରି ବଢ଼େ । ତଳେ ପଡ଼ିଥିବା ଏହି ଗଛରେ କଅଁଳୁଥିବା ଡାଳପତ୍ରକୁ ଅନେକ ହରିଣ ଜାତୀୟ ଜୀବ ଖାଆନ୍ତି । ତଳେ ନପଡ଼ିଥିଲେ ସେମାନେ ଏଗୁଡ଼ିକ କେବେ ବି ଖାଇପାରିନଥାନ୍ତେ ।

କାଜିରଙ୍ଗା ଓ ମାନସ ଭଳି ଜାଗାରେ ଉଚ୍ଚ ହାତୀଆ ଘାସ ବଢ଼େ । ଏଠାରେ ହାତୀ ଯିବା ଯୋଗୁଁ ଘାସ ଭିତରେ ସୁଡ଼ଙ୍ଗ ଭଳି ହୋଇଯାଏ । ଏସବୁ ସୁଡ଼ଙ୍ଗ ଦେଇ ହଗ୍ ଡିଅର୍ ଭଳି ଛୋଟ ଜୀବ ଯିବା ଆସିବା କରନ୍ତି । ହାତୀ ନଥିଲେ ଘଞ୍ଚ ତେଙ୍ଗା ଘାସ ଭିତରେ ଯିବା ଆସିବା କରିବା ପାଇଁ ଛୋଟ ଜୀବଙ୍କର ବଡ଼ ଅସୁବିଧା ହୁଏ ।

ଜଙ୍ଗଲରେ ଖାଦ୍ୟସାରର ପୁନର୍ବିନିଯୋଗ କାମରେ ହାତୀମାନେ ବଡ଼ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିଅନ୍ତି । ଯଦି ଗୋଟିଏ ବର୍ଗ କିଲୋମିଟରରେ ଗୋଟିଏ ହାତୀ ଥାଏ ଏବଂ ସେ ଯଦି ଦିନକୁ ହାରାହାରି ୧୦୦କି.ଗ୍ରା. ଗୋବର ଗଦା କରେ, ତେବେ ସେ ଅଞ୍ଚଳରେ ପ୍ରତି ବର୍ଗ କିଲୋମିଟର ଜାଗା ବର୍ଷକୁ ପ୍ରାୟ ୩୭ ଟନ୍ ଓଜନର ଗୋବର ଖତ ପାଇପାରିବ ।





Digitized by srujanika@gmail.com

ପରଖ

# ବାସଭୂମି କମୁଛି

ଏହି କାମ ମାଧ୍ୟମରେ ହାତୀର ବାସଭୂମି ପ୍ରତି ବିଭିନ୍ନ ବିପଦ ବିଷୟରେ ପିଲାମାନେ ଜାଣିପାରିବେ ।

| | |
|---|---|
| *ଉଦ୍ଦେଶ୍ୟ* | ସଙ୍କୋଚନଶୀଳ ବାସଭୂମିର ପରିଣାମ ଜାଣିବା |
| *ସ୍ତର* | ଉଚ୍ଚତର |
| *ବିଷୟ* | ବିଜ୍ଞାନ |
| *ଦଳର ଆକାର* | ଉଣିକିଆ |
| *ସ୍ଥାନ* | ଶ୍ରେଣୀ ବାହାରେ |
| *ସମୟ ଅବଧି* | ୪୫ ମିନିଟ |
| *ସାମଗ୍ରୀ* | ଖବରକାଗଜ, ମାର୍କର କଲମ, ବାସଭୂମି ବିପଦ କାର୍ଡ଼, ଟେପ ରେକର୍ଡ଼ର, କ୍ୟାସେଟ୍ ବା ଧ୍ୱନି ବାହାର କରିବା ପାଇଁ କିଛି ଯନ୍ତ୍ର |

ହାତୀ ଗୋଟିଏ ବିରାଟ ଜୀବ ଏବଂ ଖାଦ୍ୟ ଓ ପାଣିର ଚାହିଦା ପୂରଣ କରିବା ପାଇଁ ଗୋଟିଏ ବଡ଼ ଅଞ୍ଚଳ ତା'ର ଦରକାର ହୁଏ । ଏହି ବିସ୍ତୃତ ଅଞ୍ଚଳରେ ସେମାନେ ସୁରକ୍ଷିତ ଭାବରେ ବୁଲିପାରିବା ଜରୁରୀ । ହାତୀ ବୁଲୁଥିବା ବିରାଟ ଅଞ୍ଚଳ ହେଉଛି ତା'ର ବିଚରଣ ଇଲାକା । କିନ୍ତୁ ଆଜିକାଲି ହାତୀର ବାସଭୂମି ଭିତରେ ମଣିଷ ରାସ୍ତା, ରେଳରାସ୍ତା, ବନ୍ଧ, କେନାଲ ଆଦି ତିଆରି କରିଚାଲିଛି । ମଣିଷର ଏହିସବୁ କାମ ଯୋଗୁଁ ହାତୀର ବାସଭୂମି ସଙ୍କୁଚିତ ହୋଇଯାଉଛି । ମଣିଷମାନେ ଜଙ୍ଗଲକୁ ଦଖଲ କରି ବସବାସ ବା ଚାଷ କରିବା ଆଦି କାମ ମଧ୍ୟ ହାତୀର ବାସଭୂମି ପାଇଁ ସବୁଠାରୁ ବଡ଼ ବିପଦ ହୋଇଛି । ଏସବୁ ଫଳରେ ହାତୀର ବାସଭୂମି ଖଣ୍ଡ ଖଣ୍ଡ ହୋଇଯାଇ ତା'ର ଚଳପ୍ରଚଳରେ ବାଧା ଆଣୁଛି । ଆହୁରି ମଧ୍ୟ ବିଭିନ୍ନ ଋତୁରେ ବାସସ୍ଥାନର ଅଲଗା ଅଞ୍ଚଳରେ ମିଳୁଥିବା ଡାଳପତ୍ର ଆଉ ହାତୀକୁ ମିଳିପାରୁ ନାହିଁ ।

ଏହି ପରଖ ମାଧ୍ୟମରେ ହାତୀର ବାସଭୂମି ଉପରେ ପଡ଼ୁଥିବା ଚାପ ଏବଂ ଏହି ଚାପର ପରିଣତି ବିଷୟରେ ପିଲାମାନେ ଜାଣିପାରିବେ ।

## ଆରମ୍ଭ କରିବା ଆଗରୁ

କାମ କରିବା ପୂର୍ବଦିନ କେତେଗୁଡ଼ିଏ ଖବରକାଗଜ ନିଅ । ମଝିରୁ ଚିରି ସେଗୁଡ଼ିକ ଦୁଇଖଣ୍ଡ କର । ସାରଣୀ-'କ'ରେ ଦିଆଯାଇଥିବା ନିର୍ଦ୍ଦେଶ ଅନୁସାରେ ଖବରକାଗଜ ସବୁରେ ୧ରୁ ୬ ଯାଏଁ ସଂଖ୍ୟା ଲେଖ । ଉଦାହରଣ ସ୍ୱରୂପ, ବିପଦ ୧ ପାଇଁ ୪ଟି କାଗଜରେ ସଂଖ୍ୟା ୧ ଲେଖ । କାଗଜରେ ତମକୁ ୭ ଓ ୮ ବି ଲେଖିବାକୁ ହେବ । ୭ ଓ ୮ ସଂଖ୍ୟା ଦୁଇଟି ମନଇଚ୍ଛା ଲେଖିବ । ଏଗୁଡ଼ିକ କୌଣସି ବିପଦ ସହ ଯୋଡ଼ା ନୁହେଁ । କେବଳ ଚାରିକୋଣିଆ ଭିତରର ଖାଲି ଜାଗା ଭର୍ତ୍ତି କରିବା ପାଇଁ ଦରକାର ହେବ । ଏହି ଦୁଇ ସଂଖ୍ୟା ପାଇଁ କେତୋଟି କାଗଜ ଦରକାର ତାହା ଚିତ୍ର ୧ର କାଗଜ ବିଛାଇବା ସୂଚନାରୁ ହିସାବ କର ।

ଦିନକ ଆଗରୁ ହାତୀର ଆବାସ ସ୍ଥଳୀର ବିପଦ କାର୍ଡ଼ ସବୁ ମଧ୍ୟ ତିଆରି କର । ଏଥିପାଇଁ ସାରଣୀ 'କ'ରେ ଦିଆଯାଇଥିବା ବିପଦ ତାଲିକା ଦେଖ । ଗୋଟିଏ କାର୍ଡ଼ରେ କେବଳ ଗୋଟିଏ ବିପଦର କଥା ହିଁ ଲେଖ । ପ୍ରତି ବିପଦ କାର୍ଡ଼ରେ ବିପଦର କ୍ରମସଂଖ୍ୟା ବି ଲେଖିରଖ ।

ପୂର୍ବ ଦିନରୁ ଗୋଟିଏ ଟେପ୍ ରେକର୍ଡ଼ର ଏବଂ କିଛି କ୍ୟାସେଟ ଯୋଗାଡ଼ କରି ରଖ । ଏଥିରେ ହାତୀ ସମ୍ବନ୍ଧୀୟ କିଛି ମଜା ଗୀତ ବଜାଇ ପାରିବ ।

ଖେଳ ଆରମ୍ଭ କରିବା ଆଗରୁ କାଗଜଗୁଡ଼ିକୁ ଗୋଟିଏ ବଡ଼ ଆୟତକ୍ଷେତ୍ର ଆକାରରେ ତଳେ ବିଛାଇଦିଅ । (ଏଥିପାଇଁ ଚିତ୍ର ୧ର କାଗଜ ବିଛାଇବା ସୂଚନା ଦେଖ)

ଖେଳଟିକୁ ୨୦-୨୫ ଜଣ ପିଲା ଖେଳିପାରିବେ । ଯଦି ଶ୍ରେଣୀରେ ବହୁତ ପିଲା ଥାଆନ୍ତି ତେବେ ସେମାନେ ଦୁଇ ଦଳ ହୋଇ ଗୋଟିଏ ପରେ ଗୋଟିଏ ଦଳ ପାଳି କରି ଖେଳିପାରିବେ ।

## ପରଖର ଧାରା

ପ୍ରଥମେ ପିଲାଙ୍କୁ କୁହ ଯେ କାଗଜ ବିଛାଇ ଯେଉଁ ବଡ଼ ଚାରିକୋଣିଆ ଆକାର କରାଯାଇଛି ସେଇଟି ହେଉଛି ହାତୀର ଆବାସସ୍ଥଳୀ । ଏହି ଖେଳ ଖେଳିବା

**ସାରଣୀ କ**

| ବିପଦର କ୍ରମସଂଖ୍ୟା | ବିପଦର ବର୍ଣ୍ଣନା | ବିପଦ ପାଇଁ କେତେ ଖଣ୍ଡ ଖବର କାଗଜ |
|---|---|---|
| ୧ | ତୁମ ଆବାସସ୍ଥଳୀ ଭିତରେ ଗୋଟିଏ ଲମ୍ବା ରାସ୍ତା ତିଆରି କରାଯାଇଛି । | ୪ |
| ୨ | ଜନବସତି ପାଖରେ ଜଙ୍ଗଲ ସଫା ହୋଇଯାଉଛି । | ୮ |
| ୩ | ତୁମ ଆବାସସ୍ଥଳୀର କିଛି ଅଂଶ ଚାଷଜମିରେ ପରିଣତ କରାଯାଉଛି । | ୩ |
| ୪ | ତୁମ ଅଞ୍ଚଳରେ ଅନେକ ଗାଁ ଗଢ଼ିଉଠୁଛି । | ୪ |
| ୫ | ତୁମ ଅଞ୍ଚଳରେ ଗୋଟିଏ ବନ୍ଧ ବସୁଛି । | ୩ |
| ୬ | ତୁମ ଜଙ୍ଗଲ ଭିତର ଦେଇ ଗୋଟିଏ ରେଳରାସ୍ତା ତିଆରି ହେଉଛି । | ୪ |



Digitized by srujanika@gmail.com

ବେଳେ ପିଲାମାନେ ନିଜକୁ ହାତୀ ବୋଲି ଭାବି ଖାଦ୍ୟ ଓ ପାଣିର ଚାହିଦା ପୂରଣ ପାଇଁ ଆବାସସ୍ଥଳୀ ଭିତରେ ବୁଲିବେ ।

ଏହି ଖେଳଟି ଚଉକି ଦୌଡ଼ (*ମ୍ୟୁଜିକାଲ୍ ଚେଆର*) ଖେଳ ଭଳି । ବାଜା ବାଜିବା ମାତ୍ରେ ହାତୀ ତା'ର ଆବାସସ୍ଥଳୀରେ ବୁଲିଲା ଭଳି ପିଲାମାନେ ବି ଆୟତକ୍ଷେତ୍ର ଭିତରେ ଘୂରିବୁଲିବେ । ବାଜା ବନ୍ଦହେବା କ୍ଷଣି ଗୋଟିଏ ବିପଦ କାର୍ଡ଼ରେ ଲେଖାଥିବା କଥା ଏବଂ ସେଥିରେ ଲେଖାଥିବା କ୍ରମସଂଖ୍ୟା ଜୋରରେ ପଢ଼ାଯିବ । ବିପଦ କାର୍ଡ଼ଗୁଡ଼ିକ ପଢ଼ାଯିବାର କ୍ରମ ସାରଣୀ-'ଖ'ରେ ଦିଆଯାଇଛି ଏହି ସଂଖ୍ୟା ଲେଖାଥିବା କାଗଜଗୁଡ଼ିକ କାଢ଼ି ନିଆଯିବ ଏବଂ ତାହା ଉପରେ ଥିବା ପିଲାମାନଙ୍କ ପାଇଁ ଆଉ ଜାଗା ରହିବ ନାହିଁ । ତେଣୁ ସେମାନେ 'ମୃତ' ଭାବରେ ଖେଳରୁ ବାହାରିଯିବେ ।

## ସାରଣୀ କ

**କାଗଜ ବିଛାଇବା ପାଇଁ ସୂଚନା**

| ୩ | ୪ | ୧ | ୨ | ୮ | ୭ |
|---|---|---|---|---|---|
| ୨ | ୫ | ୫ | ୧ | ୨ | ୮ |
| ୬ | ୫ | ୭ | ୭ | ୧ | ୨ |
| ୭ | ୬ | ୨ | ୮ | ୮ | ୧ |
| ୪ | ୭ | ୬ | ୨ | ୭ | ୨ |
| ୩ | ୪ | ୨ | ୬ | ୪ | ୩ |

## ସାରଣୀ ଖ

**ବିପଦଗୁଡ଼ିକ ପଢ଼ିବାର କ୍ରମ**

| ପଢ଼ିବା କ୍ରମ | ବିପଦର କ୍ରମସଂଖ୍ୟା | ପଢ଼ିବା କ୍ରମ | ବିପଦର କ୍ରମସଂଖ୍ୟା |
|---|---|---|---|
| ୧ | ୩ | ୪ | ୫ |
| ୨ | ୪ | ୫ | ୧ |
| ୩ | ୨ | ୬ | ୬ |

## ଖେଳର ନିୟମ

ଖେଳ ଆରମ୍ଭ ଆଗରୁ ପିଲାଙ୍କୁ ଖେଳର ନିୟମଗୁଡ଼ିକୁ ଭଲକରି ବୁଝାଇଦିଅ ।

- ଖବରକାଗଜ ବାହାରେ ପାଦ ରଖନାହିଁ । ଏପରି କଲେ ତମକୁ ମୃତ ବୋଲି ଧରାଯିବ ।
- ଖବରକାଗଜ ଭିତରେ ଦୁଇ ପାଦ ପକାଇ ଦୃଢ଼ ଭାବରେ ଠିଆ ହୁଅ । ତୁମେ ଏକାଧିକ କାଗଜରେ ଠିଆ ହୋଇପାରିବ ନାହିଁ ।
- ଗୋଟିଏ ଖବରକାଗଜରେ ଜଣେ ମାତ୍ର ପିଲା ଠିଆହୋଇ ପାରିବ । ଯଦି ପିଲା ସଂଖ୍ୟା ବେଶୀ ଥିବ, ତେବେ କାଗଜ ଉପରକୁ ଆଗ ପାଇଥିବା ପିଲା ହିଁ ରହିବ । ଆଉ ଜଣକ ମୃତ ଗଣାଯିବ ଓ ସେ ଖେଳ ଛାଡ଼ିଦେବ ।
- ଖବରକାଗଜ କାଢ଼ିନିଆଗଲା ପରେ ଖାଲି ଜାଗାରେ ଠିଆ ହୁଅନାହିଁ । ଏପରି କଲେ ତମେ ମୃତ ଧରାଯିବ ଓ ଖେଳରୁ ବାହାରିଯିବ ।
- ବାଜା ବନ୍ଦ ହେଲାପରେ ତମେ ଆବାସସ୍ଥଳୀ ବାହାରେ ଥିଲେ ମୃତ ଭାବରେ ଗଣାହେବ ।

## ଆଲୋଚନା

ଖେଳିବା ବେଳେ କ'ଣ ହେଲା ତାହା ଖେଳ ସରିବା ପରେ ପିଲାଙ୍କ ସହ ଆଲୋଚନା କର । ଖେଳ ଆରମ୍ଭ ବେଳେ କେତେ ହାତୀ ଥିଲେ? ଖେଳ ସରିବା ବେଳକୁ କେତେ ହାତୀ ଅଛନ୍ତି? ଏସବୁ ବିଷୟରେ ପିଲାଙ୍କ ସହ ଆଲୋଚନା କର ।

## ଆଲୋଚନା ପାଇଁ ସୂଚନା

- ଖେଳ ଆରମ୍ଭରେ ତମେ କିପରି ଅନୁଭବ କରୁଥିଲ?
- ଖେଳ ଭିତରେ ହାତୀର ଆବାସସ୍ଥଳୀର କ'ଣ ହେଲା ବୋଲି ତମେ ଭାବୁଛ? କାହିଁକି?
- ସେତେବେଳେ କିପରି ଲାଗିଲା?
- ହାତୀର ଆବାସସ୍ଥଳୀ କମିବା ଏବଂ ଖଣ୍ଡ ଖଣ୍ଡ ହେବାରେ କିଏ ଦାୟୀ ବୋଲି ତମେ ଭାବୁଛ?
- ତମେ କ'ଣ ଭାବୁଛ ଯେ ଏହି ବିପଦଗୁଡ଼ିକ ହାତୀର ଆବାସସ୍ଥଳୀକୁ ନଷ୍ଟ କରିଦେବ?
- ଏସବୁ ବିପଦ ଯୋଗୁଁ ଜଙ୍ଗଲରେ ଏସୀୟ ହାତୀଙ୍କ ସଂଖ୍ୟା କମୁଛି କି?
- ହାତୀର ଆବାସସ୍ଥଳୀ ଭିତରେ ନଦୀବନ୍ଧ ତିଆରି ହେଲେ କ'ଣ ହେଉଛି?
- ରାସ୍ତା ତିଆରି ହେଲେ କ'ଣ ହେଉଛି? ହାତୀ ମନଖୁସିରେ ବୁଲିପାରୁଛି କି?
- ଧାନଜମି ଏବଂ ଜନବସତି କିପରି ହାତୀର ରାସ୍ତା ଅବରୋଧ କରୁଛି? ଏହାର ଫଳ କ'ଣ ହେଉଛି?





Digitized by srujanika@gmail.com

# ପରିସଂସ୍ଥାରେ ହାତୀ

ପରିସଂସ୍ଥାରେ ଫୁଲ ଓ ଫଳ ସହ ହାତୀର ସମ୍ପର୍କ ବୁଝାଇବ ଏବଂ ହାତୀ ଗୋଟିଏ ଆଗୁଆ ଜୀବ ବୋଲି ଜଣାଇବ ।

| | |
|---|---|
| *ଉଦ୍ଦେଶ୍ୟ* | ପରିସଂସ୍ଥାରେ ଫୁଲ ଓ ଫଳ ସହ ହାତୀର ସମ୍ପର୍କ ବୁଝିବାରେ ପିଲାଙ୍କୁ ସାହାଯ୍ୟ କରିବା |
| *ସ୍ତର* | ମାଧ୍ୟମିକ |
| *ବିଷୟ* | ବିଜ୍ଞାନ |
| *ଦଳର ଆକାର* | ଚାରୋଟି ଦଳ |
| *ସ୍ଥାନ* | ଶ୍ରେଣୀଗୃହ ଭିତରେ |
| *ସମୟ ଅବଧି* | ୪୫ ମିନିଟ |
| *ସାମଗ୍ରୀ* | ଡ୍ରଇଙ୍ଗ ସିଟ, ସ୍କେଚ ପେନ, କଇଁଚି, ଅଠା |

## ଆରମ୍ଭ କରିବା ଆଗରୁ

କୌଣସି ପରିସଂସ୍ଥାରେ ହାତୀର ଗୁରୁତ୍ୱପୂର୍ଣ୍ଣ ଭୂମିକା ବିଷୟରେ ପିଲାଙ୍କ ସହ ଆଗ ଆଲୋଚନା କର (ପୃଷ୍ଠା ୩୩ ଦେଖ) । କେଉଁ ସବୁ ଜୀବ ହାତୀ ସହିତ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ସମ୍ପର୍କିତ ଏବଂ ସେମାନେ କିପରି ପ୍ରଭାବିତ ତାହା ଆଲୋଚନା କର ।

### ବୃକ୍ଷରୋପଣକାରୀ ହାତୀ

ହାତୀର ଖାଇବା ଅଭ୍ୟାସ ଗୋଟିଏ ପରିସଂସ୍ଥା ପାଇଁ ବହୁତ ଗୁରୁତ୍ୱପୂର୍ଣ୍ଣ । ହାତୀର ମଳରେ ବାହାରୁଥିବା ଅନେକ ମଞ୍ଜି ଗଜା ହୁଏ । ଅନେକ ଗଛର ମଞ୍ଜି ହାତୀ ଭଳି ଜୀବଙ୍କ ପେଟ ଭିତର ଦେଇ ଗଲେ ଭଲ ଗଜା ହୁଏ । କାରଣ ପେଟ ଭିତରର ହଜମୀ ଉତ୍ସେଚକ (ଏନ୍‌ଜାଇମ୍) ମଞ୍ଜିର ଟାଣୁଆ ଖୋଳପାକୁ ନରମ କରିଦିଏ । ବେଲ, ଆମ୍ବ, କାଞ୍ଚନ, ଲାଜକୁଳି ଆଦିର ବୀଜବିକ୍ଷେପରେ ହାତୀ ବିଶେଷ ସାହାଯ୍ୟ କରିଥାଏ ।

### ଗୋବର ଖିଆଳି

ଅନେକ ଜାତିର କୋଟଳୀ, ମାଛି, ପୋକ ଏବଂ ଅନ୍ୟ ଗୋବରଖିଆ ଜୀବଙ୍କୁ ହାତୀ ଖାଦ୍ୟ ଯୋଗାଇଥାଏ । ଏଗୁଡ଼ିକ ପୁଣି ଅନେକ କୀଟଖିଆ ଜୀବଙ୍କର ଖାଦ୍ୟ ହୁଅନ୍ତି । ଅଧିକାଂଶ ଗୋବର ଖିଆଳି ଯେ କୌଣସି ତୃଣଭୋଜୀର ଗୋବର ଖାଇଥାନ୍ତି । କିନ୍ତୁ କେତେକ ଜାତିର ଗୋବର ପୋକ କେବଳ ହାତୀ ଗୋବର ହିଁ ଖାଆନ୍ତି ।

ହାତୀଛୁଆ ମା କ୍ଷୀର ଛାଡ଼ି ଅନ୍ୟ ଖାଦ୍ୟ ଖାଇବା ଆରମ୍ଭ କଲାବେଳେ ବୟସ୍କ ହାତୀର ଗୋବରରୁ କିଛି ଖାଏ । ଫଳରେ ସେଲୁଲୋଜ ହଜମକାରୀ ଅଣୁଜୀବ ତା ପେଟକୁ ଯାଇଥାଏ ।

### ଜଙ୍ଗଲୀ ରାସ୍ତା

ଘଞ୍ଚ ଜଙ୍ଗଲ ଭିତରେ, ଛନ୍ଦାଛନ୍ଦି ଲଟା ରହିଥିବା ଜାଗାରେ ବା ପାହାଡ଼ ତଳି ଭଳି ଅତି ଗଡ଼ାଣିଆ ଜାଗାରେ ହାତୀ ଆରାମରେ ଯାଇଆସି ପାରେ । ତା'ର ସେହି ରାସ୍ତାକୁ ଅନେକ ପ୍ରାଣୀ, ଏପରିକି ମଣିଷ ବି, ବ୍ୟବହାର କରିଥାଏ ।

## ପରଖର ଧାରା

ଏହି କାମ ମାଧ୍ୟମରେ ପିଲାମାନେ ପରିସଂସ୍ଥାରେ ହାତୀର ଭୂମିକା ଉପରେ ଏକ ମିଶ୍ରିତ ଚିତ୍ର (*କୋଲାଜ୍*) ତିଆରି କରିବେ । ମିଶ୍ରିତ ଚିତ୍ରଟି ଏକ ପ୍ରାଚୀର ପତ୍ର ଭାବରେ ଶ୍ରେଣୀଗୃହରେ ଲଗାଯାଇ ପାରିବ ।

ପୂରା ଶ୍ରେଣୀକୁ ଚାରି ଦଳରେ ଭାଗ କର । ପ୍ରଥମ ଓ ଦ୍ୱିତୀୟ ଦଳର ପିଲାମାନଙ୍କୁ କୁହ ଯେ ସେମାନେ ତଳର ବିଷୟ ଭିତରୁ ଦୁଇଟି କରି ବିଷୟ ଉପରେ ତଥ୍ୟ ସଂଗ୍ରହ କରିବେ ।

- ହାତୀ ଗୋଟିଏ ସୂଚକ ଜୀବ ଏବଂ ଏହାର ଅବସ୍ଥିତି କିପରି ଗୋଟିଏ ଆବାସସ୍ଥଳୀର ଅବସ୍ଥା ବିଷୟରେ ସୂଚାଇଥାଏ ।
- ହାତୀର ଗୋବର ଖାଉଥିବା ଜୀବଙ୍କର ପରିସଂସ୍ଥାରେ ଗୁରୁତ୍ୱ ।
- ଜୀବଙ୍କ ଭିତରେ ପରସ୍ପର ନିର୍ଭରଶୀଳତା - ଜଙ୍ଗଲ ଭିତରେ ରାସ୍ତା ସଫା କରିବା, ଉଚ୍ଚ ଡାଳରୁ ଖାଦ୍ୟ ତଳକୁ ଆଣିବା ଆଦି କାମ ।
- ବୃକ୍ଷରୋପଣକାରୀ ହାତୀ - ମଳରେ ଚାରିଆଡ଼େ ମଞ୍ଜି ଖେଳାଇବା ।



ତୃତୀୟ ଦଳ ହାତୀର ସୂଚକ ଭୂମିକା ଉପରେ ଚିତ୍ର ଓ ଫଟୋ ସଂଗ୍ରହ କରିବେ । ଚତୁର୍ଥ ଦଳ ହାତୀ ଉପରେ ବିଭିନ୍ନ ଆଗ୍ରହଜନକ ତଥ୍ୟ ସଂଗ୍ରହ କରିବେ ।

ପିଲାଙ୍କୁ କହିବାକୁ ହେବ ଯେପରି ପୋଷ୍ଟରରେ ଲେଖା କମ୍ ରଖିବେ । ପୋଷ୍ଟରର ଗୋଟିଏ ଆଗ୍ରହଜନକ ନାଁ ଏବଂ ସୁନ୍ଦର ସାଜସଜା ରହିଥିବ । ପ୍ରଥମେ ଗୋଟିଏ କଚ୍ଚା ଧାରଣା କରିବା ପରେ ପୋଷ୍ଟରଟି ଚୂଡ଼ାନ୍ତ କରିବା ପାଇଁ ପିଲାଙ୍କୁ କହିବ ।



Digitized by srujanika@gmail.com

**ପରଖ**

# ପାଣି ପାଖରେ ପହଞ୍ଚିବା

| | |
|---|---|
| **ଏସୀୟ ହାତୀର ସଂରକ୍ଷଣ ବିଷୟରେ ପିଲାମାନେ ଜାଣିବେ ।** | |
| *ଉଦ୍ଦେଶ୍ୟ* | **ଏସୀୟ ହାତୀର ବିଭିନ୍ନ ବିପଦ ଏବଂ ଏଗୁଡ଼ିକ ଦୂର କରିବା ପାଇଁ ସରକାର ନେଉଥିବା ପଦକ୍ଷେପ ବିଷୟରେ ପିଲାମାନେ ଜାଣିବେ ।** |
| *ସ୍ତର* | **ଉଚ୍ଚତର** |
| *ବିଷୟ* | **ବିଜ୍ଞାନ** |
| *ଦଳର ଆକାର* | **ଛଅଜଣିଆ** |
| *ସ୍ଥାନ* | **ଶ୍ରେଣୀଗୃହ ବାହାରେ** |
| *ସମୟ ଅବଧି* | **୩୦ ମିନିଟ** |
| *ସାମଗ୍ରୀ* | **ନିର୍ଦ୍ଦେଶ କାର୍ଡ୍, ଚକ୍, ଗୋଟି** |

ଏସୀୟ ହାତୀ ଏବେ ବିରଳ ଏବଂ ପ୍ରାୟ ବିଲୁପ୍ତ । ମଣିଷର ସଂଖ୍ୟା ବଢ଼ିବା ଏବଂ ସେମାନଙ୍କର ଚାହିଦା ପୂରଣ ପାଇଁ ଜମି ଓ ପ୍ରାକୃତିକ ସମ୍ବଳର ବହୁଳ ବ୍ୟବହାର ଯୋଗୁଁ ହାତୀ ଆଜି ବିପଦରେ । ମଣିଷର ଏସବୁ କାମରେ ପ୍ରଭାବିତ ହେବା ଭିତରେ ହାତୀ ହେଉଛି ପ୍ରଥମ ଜୀବ । କାରଣ ସ୍ଥଳଚର ଜୀବଙ୍କ ଭିତରେ ସେ ସବୁଠାରୁ ବଡ଼ ହୋଇଥିବାରୁ ତାର ବିରାଟ ଅଞ୍ଚଳ ଏବଂ ପ୍ରଚୁର ସମ୍ବଳ ଦରକାର ।

## ଏସୀୟ ହାତୀ ପାଇଁ କିଛି ବିପଦ

- ବିଭିନ୍ନ କାରଣ ଯୋଗୁ ଆବାସସ୍ଥଳୀ ଖଣ୍ଡ ଖଣ୍ଡ ହେବା:
  - ଜଙ୍ଗଲକୁ ଚାଷଜମିରେ ପରିଣତ କରିବା
  - ଜନବସତି ବସିବା
  - ଜଙ୍ଗଲ ସଫା ହୋଇ ଗୋଟିଏ ପ୍ରକାରର ଗଛ ଲଗାଯିବା
  - ଆବାସସ୍ଥଳୀ ଭିତରେ ରେଳରାସ୍ତା ବିଛାଯିବା
  - ଆବାସସ୍ଥଳୀ ଭିତରେ ବନ୍ଧ ତିଆରି ହେବା
- ଆବାସସ୍ଥଳୀ କମିବାର କାରଣ:
  - ଅନେକ ଜାତିର ଉଦ୍ଭିଦ ଉଭେଇଯିବା
  - ଅଗଛା ମାଡ଼ିଯିବା
- ହାତୀ ଶିକାର
- ଆବାସସ୍ଥଳୀ କମିବା ବା ଖଣ୍ଡ ଖଣ୍ଡ ହେବା ଫଳରେ ହାତୀ ଓ ମଣିଷ ଭିତରେ ବିବାଦ

ଉଭୟ ସରକାରୀ ଏବଂ ବେସରକାରୀ ସ୍ତରରେ ଅନେକ ସଂସ୍ଥା ହାତୀ ସଂରକ୍ଷଣ ପାଇଁ ଚେଷ୍ଟା କରୁଛନ୍ତି । ୧୯୯୨ ମସିହାରେ ସରକାରଙ୍କ ତରଫରୁ ନିଆଯାଇଥିବା ହାତୀ ପ୍ରକଳ୍ପ ଏଥିରୁ ଗୋଟିଏ ।

## ହାତୀ ସଂରକ୍ଷଣ ଦିଗରେ

- ହାତୀ ସହ ରହିବା ଏବଂ ହାତୀକୁ ସମ୍ମାନ ଦେଖାଇବାର ସଂସ୍କୃତି:
  - ହାତୀକୁ ଭଗବାନ ରୂପରେ ପୂଜା କରାଯାଏ
  - ହାତୀ ଆମ ଜୀବନ ଏବଂ ସଂସ୍କୃତିର ଏକ ଅବିଚ୍ଛେଦ୍ୟ ଅଙ୍ଗ
- ସରକାରଙ୍କ ପ୍ରଚେଷ୍ଟା:
  - ୧୯୯୨ରେ ହାତୀ ପ୍ରକଳ୍ପର ଆରମ୍ଭ
  - ହାତୀ ସଂରକ୍ଷଣ ପାଇଁ ହାତୀ ଅଭୟାରଣ୍ୟମାନ ପ୍ରତିଷ୍ଠା
  - ହାତୀଦାନ୍ତ ଓ ଦାନ୍ତ ଜିନିଷର ବ୍ୟବସାୟ ଉପରେ ନିଷେଧାଜ୍ଞା
  - ଉତ୍ତମ ପରିଚାଳନା ପାଇଁ ବୈଜ୍ଞାନିକ ଗବେଷଣା
  - କ୍ଷତିଗ୍ରସ୍ତ ମଣିଷଙ୍କୁ କ୍ଷତିପୂରଣ
- ବେସରକାରୀ ସଂସ୍ଥାଙ୍କ ପ୍ରଚେଷ୍ଟା:
  - ଗବେଷଣା
  - ହାତୀ-ମଣିଷ ବିବାଦର ସମାଧାନ
  - ଆଇନଗତ ସହାୟତା, ଶିକ୍ଷା ଆଦି

## ଆରମ୍ଭ କରିବା ଆଗରୁ

କାମ ଆରମ୍ଭ କରିବା ଆଗରୁ ପ୍ରଥମେ ଚଟାଣରେ ଗୋଟିଏ ବଡ଼ ବର୍ଗକ୍ଷେତ୍ର ଆଙ୍କି ତା ଭିତରେ ୨୫ଟି ଛୋଟ ବର୍ଗକ୍ଷେତ୍ର ଆଙ୍କ । ଛୋଟ ବର୍ଗକ୍ଷେତ୍ରଗୁଡ଼ିକର ଆକାର ୩୬ X ୩୬ ସେ.ମି. ହେବା ଦରକାର ।

ଖେଳ ପାଇଁ ନିର୍ଦ୍ଦେଶ କାର୍ଡ଼ ତିଆରି କର । ଏଥିପାଇଁ ଏ-୪ (୨୯୭ X ୨୧୦ ମି.ମି.) ମାପର ଚୁଇଙ୍ଗ ସିଟ୍ ନେଇ ପ୍ରତ୍ୟେକଟିରେ ଗୋଟିଏ କଥା ଲେଖ । ଉପରେ ଦିଆଯାଇଥିବା ବିପଦ ଏବଂ ସଂରକ୍ଷଣ ବ୍ୟବସ୍ଥାକୁ ନେଇ ୭-୮ଟି ନିର୍ଦ୍ଦେଶ କାର୍ଡ଼ ତିଆରି କରାଯାଇ ପାରିବ ।

ନିର୍ଦ୍ଦେଶ କାର୍ଡଗୁଡ଼ିକ ଛୋଟ ବର୍ଗାକାର ଘର ୧ରୁ ୨୫ ଭିତରେ ରଖ । (ପୃଷ୍ଠା ୩୯ରେ ବିପଦ ଖେଳର ନମୁନା ଦେଖ)

## ପରଖର ଧାରା

ଜଙ୍ଗଲୀ ଏସୀୟ ହାତୀ ପ୍ରତି ବିପଦ ବିଷୟରେ ପିଲାଙ୍କ ସହ ଆଲୋଚନା କର । ଆଲୋଚନା ଭିତରେ ବିପଦଗୁଡ଼ିକୁ କଳାପଟାରେ ଲେଖିଦିଅ । ବେସରକାରୀ ସଂସ୍ଥା, ଜନସାଧାରଣ ଏବଂ ସରକାରୀ ସଂସ୍ଥା ହାତୀ ସଂରକ୍ଷଣ ଉପରେ ନେଉଥିବା ବିଭିନ୍ନ ପଦକ୍ଷେପର ତାଲିକା ମଧ୍ୟ କର । (ତାଲିକା ଦେଖ)



Digitized by srujanika@gmail.com



ପିଲାଙ୍କୁ କହିଦିଅ ଯେ ଏହି ଖେଳରୁ ସେମାନେ ଏସୀୟ ହାତୀ ପ୍ରତି ବିପଦ ଏବଂ ତା'ର ସଂରକ୍ଷଣ ଦିଗରେ ନିଆଯାଉଥିବା ପଦକ୍ଷେପ ବିଷୟରେ କିଛି ଜାଣିପାରିବେ । ଖେଳଟି ସାପ-ସିଡ଼ି ଖେଳ ଭଳି । ଥରକେ ପାଞ୍ଚଜଣରୁ ଅଧିକ ପିଲା ଖେଳିବେ ନାହିଁ । ପିଲାମାନେ ଗୋଟି ପକାଇ ସେଇ ଅନୁସାରେ ଆଗକୁ ଚାଲିବେ । ଏକା ସମୟରେ ଏକାଧିକ ଜାଗାରେ ବ୍ୟବସ୍ଥା କଲେ ଅଧିକ ପିଲା ଖେଳିପାରିବେ ।

ପ୍ରତି ପିଲା ଜଣେ ଜଣେ ହାତୀ ଏବଂ ତାଙ୍କର ପାଣିର ଚାହିଦା ପୂରଣ ପାଇଁ ପ୍ରତ୍ୟେକଙ୍କୁ ପାଣି ପାଖରେ ପହଞ୍ଚିବାକୁ ହେବ ବୋଲି ପିଲାଙ୍କୁ କହିଦିଅ । ହାତୀ ଭାବରେ ପାଣି ପାଖକୁ ଯିବା ବେଳେ ବାଟରେ ଅନେକ ବିପଦ ଆସିବ । କିନ୍ତୁ ଯଦି ତାଙ୍କର ଭାଗ୍ୟ ଭଲ ଥିବ, ତେବେ ହାତୀକୁ ସୁହାଇଲା ଭଳି ପଦକ୍ଷେପ ସବୁ ବି ତାଙ୍କ ବାଟରେ ଆସିବ ।

୧ରୁ ୬ ଲେଖାଥିବା ଗୋଟିଏ ଗୋଟି ସାହାଯ୍ୟରେ ଖେଳଟି ହେବ ବୋଲି ପିଲାଙ୍କୁ କହିଦିଅ । କେଉଁ କ୍ରମରେ ପିଲାମାନେ ଖେଳିବେ ତାହା ଠିକ୍ କରିବା ପାଇଁ ପ୍ରଥମେ ପ୍ରତି ପିଲା ଥରେ ଥରେ ଗୋଟି ପକାଇବେ । ଯାହାର ସବୁଠାରୁ ବଡ଼ ସଂଖ୍ୟା ପଡ଼ିବ ସେ ଆଗ ଖେଳିବ । ତା'ଠାରୁ ସାନ ସଂଖ୍ୟା ଥିବା ପିଲା ଦ୍ୱିତୀୟରେ । ଏହିପରି କ୍ରମରେ ସେମାନେ ଖେଳିବେ ।

ଖେଳଟି ପିଲାଙ୍କୁ ବୁଝାଇ ସାରିବା ଏବଂ ପିଲାଙ୍କ କ୍ରମ ଠିକ୍ ହୋଇସାରିବା ପରେ ପ୍ରଥମ ପିଲା ତା ଗୋଟି ପକାଇବ । ଗୋଟିରେ ଯେଉଁ ସଂଖ୍ୟା ଥିବ ସେ ସେତିକି ଘର ଚାଲିବ । ଯଦି କିଛି ନିର୍ଦ୍ଦେଶ କାର୍ଡ଼ ଥିବା ଘରକୁ ସେ ଆସିବ, ତେବେ ତାକୁ ନିର୍ଦ୍ଦେଶଟି ବୁଝାଇଦିଅ ଏବଂ ସେଇ ଅନୁସାରେ କାମ କରିବା ପାଇଁ ତାକୁ କୁହ । ତା'ପରେ ଆସିବ ଦ୍ୱିତୀୟ ଖେଳାଳୀର ପାଳି । ଏହିପରି ଖେଳଟି ଚାଲିବ । ଜଣେ ପିଲା ପାଣି ପାଖରେ ପହଞ୍ଚିଗଲେ ଖେଳ ସରିବ । ଯେଉଁ ପିଲାଟି ଜିତିବ ଖେଳରୁ ସେ କ'ଣ ଶିଖିଲା ଏବଂ ଏସୀୟ ହାତୀ ସଂରକ୍ଷଣ ପାଇଁ ସେ କେଉଁ ପଦକ୍ଷେପ ନେବ ତାହା ତାକୁ ପଚାର ।

## ନିର୍ଦ୍ଦେଶ କାର୍ଡ଼ର ନମୁନା

- ଏଠାରେ ଶିକାରୀ ଅଛନ୍ତି, ଘନ ଜଙ୍ଗଲରେ ଲୁଚିଯାଅ । ଦୁଇଟି ପାଳି ହରାଇବ ।
- ଲୋକେ ତମକୁ ପବିତ୍ର ବୋଲି ମାନନ୍ତି, ସେମାନଙ୍କ ସୁରକ୍ଷାକୁ ଉପଭୋଗ କର । ଆଉ ଥରେ ଗୋଟି ପକାଅ ।
- ତମ ଯିବା ଆସିବା ରାସ୍ତାରେ ଗୋଟିଏ ବନ୍ଧ ତିଆରି ହେଉଛି । ତିନି ଘର ପଛକୁ ଯାଅ ।
- ଗୋଟିଏ ଚଳନ୍ତା ରେଳଗାଡ଼ି ସହ ଧକା ଲାଗିଲା । ପ୍ରଥମ ଘରକୁ (ଆରମ୍ଭକୁ) ଫେରିଯାଅ ।
- ତମେ ଗୋଟିଏ ସଂରକ୍ଷିତ ଅଞ୍ଚଳ ଭିତରେ ରହିଛ । ଜୋରରେ ଶବ୍ଦ କର ଏବଂ ଦୁଇ ଘର ଆଗକୁ ଯାଅ ।
- ପର୍ଯ୍ୟଟକମାନେ ମଜା କରୁଛନ୍ତି ଓ ଫଟୋ ଉଠାଇବା ପାଇଁ ତମ ପଛରେ ଧାଇଁଛନ୍ତି । ହଲଚଲ ନହୋଇ ଠିଆହୁଅ । ଗୋଟିଏ ପାଳି ହରାଇବ ।
- ଗୋଟିଏ ଚାଷଜମିରେ ପହଞ୍ଚିଯାଇଛ । ଚାଷୀମାନେ ତମକୁ ଗୋଡ଼ାଉଛନ୍ତି । ଦୁଇ ଘର ପଛକୁ ଫେରିଯାଅ ।



Digitized by srujanika@gmail.com

# ବିପଦ ଖେଳର ନମୁନା

| | | | | |
|---|---|---|---|---|
| ୧<br>ଆରମ୍ଭ | ୨ | ୩<br>ତୁମେ ଗୋଟିଏ ଚାଷଜମିରେ ପହଞ୍ଚିଯାଇଛ । ଚାଷୀମାନେ ତମକୁ ଗୋଡ଼ାଉଛନ୍ତି ।<br>ଦୁଇ ଘର ପଛକୁ ଫେରିଯାଅ! | ୪ | ୫ |
| ୧୦<br>ପର୍ଯ୍ୟଟକମାନେ ମଜା କରୁଛନ୍ତି ଓ ଫଟୋ ପାଇଁ ତମ ପଛରେ ଧାଇଁଛନ୍ତି । ହଲଚଲ ନହୋଇ ଠିଆହୁଅ ।<br>ଗୋଟିଏ ପାଳି ହରାଇବ! | ୯ | ୮ | ୭<br>ଲୋକେ ତମକୁ ପବିତ୍ର ମାନନ୍ତି, ସେମାନଙ୍କ ସୁରକ୍ଷାକୁ ଉପଭୋଗ କର ।<br>ଆଉ ଥରେ ଗୋଟି ପକାଅ! | ୬ |
| ୧୧ | ୧୨<br>ତମ ଯିବା ଆସିବା ରାସ୍ତାରେ ଗୋଟିଏ ବନ୍ଧ ତିଆରି ହେଉଛି ।<br>ତିନି ଘର ପଛକୁ ଯାଅ! | ୧୩ | ୧୪<br>ତମେ ଗୋଟିଏ ସଂରକ୍ଷିତ ଅଞ୍ଚଳ ଭିତରେ ରହିଛ । ଜୋରରେ ଶବ୍ଦ କର ।<br>ଦୁଇ ଘର ଆଗକୁ ଯାଅ! | ୧୫ |
| ୨୦ | ୧୯ | ୧୮<br>ଏଠାରେ ଶିକାରୀ ଅଛନ୍ତି, ଘନ ଜଙ୍ଗଲରେ ଲୁଚିଯାଅ ।<br>ଦୁଇଟି ପାଳି ହରାଇବ! | ୧୭ | ୧୬ |
| ୨୧ | ୨୨<br>ଗୋଟିଏ ଚଳନ୍ତା ରେଳଗାଡ଼ି ସହ ଧକ୍କା ଲାଗିଲା ।<br>ପ୍ରଥମ ଘରକୁ (ଆରମ୍ଭକୁ) ଫେରିଯାଅ! | ୨୩ | ୨୪ | ୨୫<br>**ଶେଷରେ ପାଣି ପାଖରେ ପହଞ୍ଚିଲ !!**<br>ମନ ଭରି ପାଣି ପିଅ ଓ ଗାଧୋଅ । |



Digitized by srujanika@gmail.com

# ଆମ ଜୀବନରେ ହାତୀ

ସବୁ ପୁରୁଣା ସଂସ୍କୃତିରେ ମଣିଷଠାରୁ ବଡ଼ ଏବଂ ଶକ୍ତିଶାଳୀ ଜିନିଷମାନଙ୍କୁ ଭଗବାନ ରୂପରେ ପୂଜା କରାଯାଇଛି । ସେହି କାରଣରୁ ସୂର୍ଯ୍ୟ, ଚନ୍ଦ୍ର ଓ ଅନ୍ୟ ପ୍ରାକୃତିକ ଶକ୍ତିମାନଙ୍କ ପାଇଁ ମଣିଷ କେତେ ମନ୍ଦିର ଗଢ଼ିଛି । ସେହିପରି ହାତୀ ମଧ୍ୟ ଭାରତର ଲୋକଗଳ୍ପ, ପରମ୍ପରା, ଇତିହାସ ଏବଂ ସଂସ୍କୃତିର ଏକ ଅବିଚ୍ଛେଦ୍ୟ ଅଙ୍ଗ ହୋଇ ରହିଆସିଛି । ବେଦ ଭିତରେ ସବୁଠାରୁ ପୁରୁଣା ଋଗବେଦରେ ବି ହାତୀର ବର୍ଣ୍ଣନା ବହୁତ ଥର ରହିଛି । କୌଣସି ଲୋକର ଆକାର ଓ ବଳର ବର୍ଣ୍ଣନା ଦେବା ପାଇଁ ସେଥିରେ ଲେଖାଯାଇଛି ଯେ 'ହାତୀ ଭଳି ବଡ଼ ଏବଂ ଶକ୍ତିଶାଳୀ' ।

ତେଣୁ ହାତୀକୁ ସୁରକ୍ଷା ଦେବା ଏବଂ ଭବିଷ୍ୟତରେ ତା'ର ବଞ୍ଚିରହିବାକୁ ନିଶ୍ଚିତ କରାଇବା କାମଟିର ଅର୍ଥ ଆମ ପାଇଁ କେବଳ ଗୋଟିଏ ବିପନ୍ନ ପ୍ରାଣୀର ସଂରକ୍ଷଣଠାରୁ ଅନେକ ବେଶୀ ।



## ଭଗବାନ ରୂପରେ ହାତୀ

ଭାରତୀୟ ପୁରାଣରେ ହାତୀର ବର୍ଣ୍ଣନା ବହୁତ ମାତ୍ରାରେ ରହିବା କିଛି ଆଶ୍ଚର୍ଯ୍ୟର କଥା ନୁହେଁ । କେତେ କ୍ଷେତ୍ରରେ ହାତୀ ହିଁ ଭଗବାନ, ଆଉ କେଉଁଠି ହାତୀ ହେଉଛି ଭଗବାନଙ୍କ ବାହନ ।

ପ୍ରଥମଟିର ସବୁଠାରୁ ବଡ଼ ଉଦାହରଣ ହେଲେ ଆମ ସମସ୍ତଙ୍କର ଅତି ପରିଚିତ ହାତୀମୁଣ୍ଡିଆ ଠାକୁର ଗଣେଶ । ଗଣେଶଙ୍କୁ ବିଘ୍ନନାଶକ ଏବଂ ମଙ୍ଗଳକାରୀ ଭାବରେ ଧରାଯାଏ ।

ବୁଦ୍ଧଦେବଙ୍କର ପୂର୍ବ ଜନ୍ମ ସବୁର କାହାଣୀ ଜାତକ ଗଳ୍ପରେ ହାତୀକୁ ନେଇ ଅନେକ ଗପ ରହିଛି । ଗୋଟିଏ ଗପରେ ରହିଛି ଯେ ବୁଦ୍ଧଦେବ ହାତୀ ରୂପରେ ଜନ୍ମ ହୋଇଥିଲେ । ଆଉ ଗୋଟିକରେ ଅଛି ଯେ ବୁଦ୍ଧଦେବ ଜଣେ ହାତୀ ତାଲିମକାରୀଙ୍କ ପରିବାରରେ ଜନ୍ମ ହୋଇଥିଲେ । ବୌଦ୍ଧଧର୍ମର ଲୋକମାନେ ବିଶ୍ୱାସ କରନ୍ତି ଯେ ହାତୀକୁ ଛୁଇଁଲେ ତାହା ଦିବ୍ୟଜ୍ଞାନ ପ୍ରାପ୍ତିରେ ସହାୟକ ହୋଇଥାଏ । ସେଥିପାଇଁ ଥାଇଲାଣ୍ଡ, କାମ୍ବୋଡିଆ, ଭିଏତନାମ ଦେଶମାନଙ୍କରେ ଅନେକ ବୌଦ୍ଧାଶ୍ରମରେ ହାତୀ ପୋଷାଯାଉଥିଲା ।

## ପୁରାଣ ଓ ସାହିତ୍ୟରେ ହାତୀ

### ବେଦରେ ହାତୀ

ଖ୍ରୀଷ୍ଟପୂର୍ବ ୮୦୦ ବେଳର ବେଦରେ ମାଇ ହାତୀକୁ ଉପହାର ଭାବରେ ସୁପାରିଶ କରାଯାଇଛି । ହାତୀକୁ ଉପହାର ଭାବରେ ଦେବାକୁ ହେଲେ ତାକୁ ଆଗ ପୋଷା ମନାଇବାକୁ ହେବ । ତେଣୁ ଏଥିରୁ ସୂଚନା ମିଳେ ଯେ ସେ ସମୟରେ ହାତୀମାନଙ୍କୁ ଘରେ ପୋଷା ଯାଉଥିଲା ।

ପ୍ରାକୃତିକ ଅବସ୍ଥାରେ ହାତୀକୁ ନିରୀକ୍ଷଣ କରି ହିଁ ବେଦରେ ତାହା ବିଷୟରେ ଲେଖାଯାଇଛି । ହାତୀର ମସ୍ତ ଅବସ୍ଥା ବା କାମ ଉନ୍ମତ୍ତତାରେ ବ୍ୟତିବ୍ୟସ୍ତ ହାତୀ ଆଦିର ବର୍ଣ୍ଣନାରୁ ତାହା ଉପରେ ବିଶେଷ ଧ୍ୟାନ ରହିଥିବାର ଜଣାପଡୁଛି । ଏଥିରୁ ଜଣାଯାଉଛି ଯେ ବେଦର ପ୍ରଥମ ସମୟରେ (ଯାହା ବୋଧହୁଏ ହରପ୍ପା ସଭ୍ୟତାର ଶେଷ ସମୟ ସହ ସମାନ) ମଧ୍ୟ ହାତୀମାନଙ୍କୁ ପୋଷା ଯାଉଥିଲା । ହାତୀ ପୋଷିବା ଆଭିଜାତ୍ୟର ଏକ ପ୍ରତୀକ ଥିଲା ଏବଂ ହାତୀର ଦେଖାଶୁଣା କରୁଥିବା ଲୋକଙ୍କୁ ବା ମାଲିକମାନଙ୍କୁ ହସ୍ତିପ ନାମକ ଏକ ସ୍ୱତନ୍ତ୍ର ଶ୍ରେଣୀର କର୍ମୀ ଭାବରେ ଧରାଯାଉଥିଲା ।



Digitized by srujanika@gmail.com

### ଜାତକ ଗପ

ଜାତକ ଗପରେ ବୁଦ୍ଧଦେବଙ୍କ ପୂର୍ବ ଜନ୍ମଗୁଡ଼ିକର କଥା ସବୁ ରହିଛି । ଏହି ଗପ ସବୁରୁ ଆମ ଜୀବନରେ ହାତୀ ବିଷୟରେ ଅନେକ କଥା ଜଣାପଡ଼େ । ପୃଥିବୀର ସବୁ ଦେଶର ଲୋକଗଳ୍ପ ସଂଗ୍ରହ ଭିତରେ ଏଗୁଡ଼ିକ ବୋଧହୁଏ ହେଉଛି ସବୁଠାରୁ ଭଲ । ବିଶ୍ୱାସ କରାଯାଏ ଯେ ଗପଗୁଡ଼ିକ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀର ଶେଷ ବେଳକୁ ସଂକଳନ କରାଯାଇଥିଲା । ଜାତକ ଗପଠାରୁ ପୁରୁଣା ବୋଲି ଧରାଯାଉଥିବା ପାଲି ଜାତକ ଗପରେ ଖ୍ରୀଷ୍ଟପୂର୍ବ ୬୦୦-୩୨୧ ଭିତରେ (ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ସାମ୍ରାଜ୍ୟ ଆରମ୍ଭ ହେବା ପୂର୍ବରୁ) ହାତୀଙ୍କ ଅବସ୍ଥାର ବର୍ଣ୍ଣନା ରହିଛି ।

ଜାତକ ଗପରେ ଅନେକ ପ୍ରକାରର ହାତୀ ଉତ୍ସବ ବିଷୟରେ କୁହାଯାଇଛି । ଦକ୍ଷିଣ ଭାରତରେ ଏବେ ବି ହାତୀକୁ ନେଇ କିଛି ଉତ୍ସବ ପାଳିତ ହୁଏ ।



ଏସବୁ ଉତ୍ସବରେ ହାତୀମାନଙ୍କୁ ସଜାଇ ପ୍ରଦର୍ଶନ କରାଯାଏ ଏବଂ ଶୋଭାଯାତ୍ରାରେ ନିଆଯାଏ ।

ଗୋଟିଏ ଜାତକ ଗପରେ ରହିଛି ବୋଧିସତ୍ତ୍ୱ କିପରି ଗୋଟିଏ ତିତ୍ତିର ପକ୍ଷୀ ପରିବାରକୁ ଏକ ମତ୍ତ ହାତୀ କବଳରୁ ରକ୍ଷା କରିବା ପାଇଁ ଚେଷ୍ଟା କରିଥିଲେ, କିନ୍ତୁ ସେଥିରେ ସଫଳ ହୋଇ ପାରିନଥିଲେ । ଆଉ ଗୋଟିଏ ଗପରେ କୁହାଯାଇଛି ଯେ ବୋଧିସତ୍ତ୍ୱ ହିମାଳୟରେ ଗୋଟିଏ ଧଳାହାତୀ ରୂପରେ ଜନ୍ମ ହୋଇଥିଲେ । ଏହି ହାତୀଟି ଅନେକ ହାତୀଙ୍କ ଦଳପତି ଥିଲା । ଗୋଟିଏ ଗପରେ ସେ ଦଳର ହାତୀ ସଂଖ୍ୟା ୮୦,୦୦୦, କିନ୍ତୁ ଆଉ ଗୋଟିକରେ ତାହା ୮,୦୦୦ ବୋଲି କୁହାଯାଇଛି । ଏହି ଗପରୁ ଜଣାଯାଉଛି ଯେ ହିମାଳୟ ଅଞ୍ଚଳରେ ବହୁତ ସଂଖ୍ୟାରେ ହାତୀ ଦେଖାଯାଉଥିଲେ । ଦୁଃଖର କଥା ଯେ ଏବେ ସେହି ପୂର୍ବ ଉତ୍ତରପ୍ରଦେଶ ଏବଂ ଉତ୍ତର ବିହାର ଅଞ୍ଚଳରେ ହାତୀଙ୍କ ସଂଖ୍ୟା ୧୦୦ରୁ ବି କମ୍ ।

### ମହାକାବ୍ୟରେ ହାତୀ

ଭାରତର ଦୁଇ ମହାକାବ୍ୟ ରାମାୟଣ ଓ ମହାଭାରତରେ ଖ୍ରୀଷ୍ଟପୂର୍ବ ୧୦୦୦ରୁ ୮୦୦ ସମୟର ଭାରତୀୟ ସମାଜ ବିଷୟରେ ବର୍ଣ୍ଣନା ରହିଛି । ଉଭୟ ମହାକାବ୍ୟରେ ମଣିଷର ଜୀବନରେ, ଯୁଦ୍ଧ ଓ ଶାନ୍ତି କ୍ଷେତ୍ରରେ ହାତୀର ଭୂମିକା ବିଷୟରେ ଅନେକ କଥା ଲେଖାଅଛି । ରାମାୟଣରେ ମଣିଷର ଶକ୍ତି ବର୍ଣ୍ଣନା କରିବା ପାଇଁ ହାତୀକୁ ଲଗାଇ ଅନେକ ଉପମା ରହିଛି । ହାତୀ, ବଳଦ, ଗାଈ, ଘୋଡ଼ା ଏବଂ ଅନ୍ୟ ପୋଷା ଜନ୍ତୁ ସମ୍ପତ୍ତିର ସୂଚକ ଥିଲେ । ତେଣୁ ଏମାନଙ୍କ ସଂଖ୍ୟା ଅନୁସାରେ କୌଣସି ସହର କେତେ ଉନ୍ନତ ତାହା ଜଣାଯାଉଥିଲା । ରାମାୟଣରେ ଯୁଦ୍ଧରେ ହାତୀର ବ୍ୟବହାର ବିଷୟରେ ବହୁତ କମ୍ ଲେଖାଅଛି । କିନ୍ତୁ ମାଙ୍କଡ଼ ସବୁ ହାତୀ ପାଦ ତଳେ ବା ରଥଚକ ତଳେ ଚାପି ହୋଇଯିବାର ବର୍ଣ୍ଣନା ରହିଛି । ଜାତକ ଗଳ୍ପ ତୁଳନାରେ ହାତୀ ବିଷୟରେ ରାମାୟଣର ବର୍ଣ୍ଣନା ଅଧିକ ସଠିକ ଏବଂ ବିଶଦ । ଆହୁରି ମଧ୍ୟ ସେ ସମୟର ହାତୀ ଧରା କୌଶଳ ବିଷୟରେ ଅନେକ କଥା ସେଥିରେ ରହିଛି ।

### ତାମିଲ ସାହିତ୍ୟ

ସଙ୍ଗମ କାଳ (ପ୍ରଥମରୁ ତୃତୀୟ ଶତାବ୍ଦୀ)ରୁ ହାତୀ ତାମିଲର ଜୀବନ ଏବଂ ସଂସ୍କୃତିର ଏକ ଅଙ୍ଗ ହୋଇରହିଛି । ତାମିଲ ସାହିତ୍ୟରେ ହାତୀ ବିଷୟରେ ଅନେକ ତଥ୍ୟ ରହିଛି । ପୁରୁଣା କାବିକ ଅଭିଧାନ *ନିଗାଣ୍ଟୁ*ରେ ହାତୀ ପାଇଁ ୪୪ଟି ପ୍ରତିଶବ୍ଦ ରହିଛି । କେବଳ ମାଈହାତୀ ପାଇଁ ୪ଟି ଓ ଛୁଆହାତୀ ପାଇଁ ୫ଟି ନାଁ ଏବଂ ହାତୀ ଦେହର ବିଭିନ୍ନ ଅଙ୍ଗର ଅଲଗା ଅଲଗା ନାଁ ମଧ୍ୟ ରହିଛି ।

### କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର

ଭାରତୀୟ ରାଜ ଦରବାରରେ ହାତୀଙ୍କ ବିଷୟରେ ଅଧ୍ୟୟନ କରିବା ଅର୍ଥଶାସ୍ତ୍ରର ଏକ ବିଭାଗ ବୋଲି ଧରାଯାଉଥିଲା । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ନିଜ ହାତୀର ଯତ୍ନ ନେବା ଦିଗରେ ଜଣେ ମାହୁନ୍ତର ଦାୟିତ୍ୱ ବିଷୟରେ ବର୍ଣ୍ଣନା ରହିଛି । ଅର୍ଥଶାସ୍ତ୍ରରେ ରହିଛି, ଜନବସତି ଯୋଗୁଁ ଯଦି ହାତୀ ନଦୀ ଉପତ୍ୟକାରୁ ଦୂରେଇଯାଏ ତେବେ ତାକୁ ପାହାଡ଼ି ଜଙ୍ଗଲରେ ପୂରା ସୁରକ୍ଷା ଦେବା ଦରକାର । ଆହୁରି ମଧ୍ୟ ରାଜ୍ୟର ସୀମା ପାଖରେ ହାତୀ ଅଭୟାରଣ୍ୟ ସବୁ ପ୍ରତିଷ୍ଠା କରି ସେଥିରେ ଜଗୁଆଳି ରଖିବା ଆବଶ୍ୟକ । ଅର୍ଥଶାସ୍ତ୍ରରେ ଗୋଟିଏ ମଜା ନିର୍ଦ୍ଦେଶ ରହିଛି ଯେ ହାତୀଛୁଆ, ଛୋଟ ଦାନ୍ତ ଥିବା ହାତୀ, ଦାନ୍ତ ନଥିବା ଅଣ୍ଡିରା ହାତୀ, ରୋଗୀଣା ହାତୀ, ଛୁଆ ଥିବା ମାଈ ହାତୀଙ୍କୁ ଧରିବା ନିଷେଧ । କେବଳ ୨୦ ବର୍ଷରୁ ଅଧିକ ବୟସର ହାତୀକୁ ଧରାଯାଇ ପାରିବ ।

### ହସ୍ତାୟୁର୍ବେଦ

ପାଲକପ୍ୟଙ୍କର *ହସ୍ତାୟୁର୍ବେଦ* (ହାତୀ ଚିକିତ୍ସା) ଗ୍ରନ୍ଥ ଦଶମ ଶତାବ୍ଦୀର ପ୍ରାୟ ଶେଷ ଆଡ଼କୁ ଲେଖା ଯାଇଥିଲା । ହାତୀମାନଙ୍କର ବିଭିନ୍ନ ରୋଗର ଚିକିତ୍ସା କରିବାର ବିଜ୍ଞାନ ହେଉଛି *ଗଜାୟୁର୍ବେଦ* ବା *ହସ୍ତାୟୁର୍ବେଦ* ଶାସ୍ତ୍ର । ଲୋକ ବିଶ୍ୱାସ ଅନୁସାରେ ଚିକିତ୍ସା ପଦ୍ଧତିର ସଙ୍କଳକ ପାଲକପ୍ୟଙ୍କ ମା ଜଣେ ହାତୀ ଥିଲେ । ପାଲକପ୍ୟ ବଣୁଆ ହାତୀଙ୍କ ଭିତରେ ବଢ଼ିଥିଲେ ଏବଂ ସେମାନେ ଯାହା ଖାଉଥିଲେ ସେ ତାହା ହିଁ ଖାଉଥିଲେ । ସେ ହାତୀମାନଙ୍କ ମେଳରେ ଏତେ ସମୟ କଟାଇଥିଲେ ଯେ ହାତୀଙ୍କର ବିଭିନ୍ନ ରୋଗର ଜଣେ ଦକ୍ଷ ଚିକିତ୍ସକ ହୋଇପାରିଥିଲେ । ବିଶ୍ୱାସ କରାଯାଏ ଯେ କିଛିଦିନ ପରେ ସେ ବ୍ରହ୍ମପୁତ୍ର ଉପତ୍ୟକାର ଉପରେ ଲୋହିତ୍ୟ ନଦୀ କୂଳରେ ରହିଲେ । ଏଠାରେ ସେ ହାତୀଙ୍କର ବିଭିନ୍ନ ରୋଗ ଓ ତା'ର ଚିକିତ୍ସା ପଦ୍ଧତିର ସଙ୍କଳନ କଲେ । ଏହି ସଙ୍କଳନ ପରେ ହସ୍ତାୟୁର୍ବେଦ ଭାବରେ ଜଣାଗଲା ।



Digitized by srujanika@gmail.com

### ପୋଷାହାତୀ

ପ୍ରାୟ ୪୦୦୦ ବର୍ଷ ପୂର୍ବେ ସିନ୍ଧୁ ସଭ୍ୟତା ସମୟରୁ ହାତୀ ପୋଷିବା ଆରମ୍ଭ ହୋଇଛି । ଦକ୍ଷିଣ ଭାରତ ଏବଂ ଦକ୍ଷିଣପୂର୍ବ ଏସିଆରେ ଏହା ଆଗରୁ ବି ହାତୀ ପୋଷିବା ଆରମ୍ଭ ହୋଇଥାଇପାରେ ।

ଜଣାଯାଏ ଯେ ହାତୀକୁ ପୋଷା ମନେଇବା ପ୍ରଥମେ ଭାରତରେ ଆରମ୍ଭ ହୋଇଥିଲା । ଆର୍ଯ୍ୟମାନେ ପରେ ଏହାକୁ ଗ୍ରହଣ କରିଥିଲେ ।

ପାଲି ଜାତକର ଗୋଟିଏ ଗପରେ ହାତୀଙ୍କ ରାଜ୍ୟ ଏବଂ ହାତୀ ତାଲିମଦାତା ବିଷୟରେ ଲେଖା ରହିଛି । ଏଥିରେ ରହିଛି କିପରି ତାଲିମ ପାଇଁ ଖୁଣ୍ଟରେ ବନ୍ଧା ହୋଇଥିବା ଗୋଟିଏ ହାତୀ କଷ୍ଟ ସହିନପାରି ଖୁଣ୍ଟ ଭାଙ୍ଗି ଜଙ୍ଗଲକୁ ପଳାଇଥିଲା । ଏବେ ବି ତାଲିମପ୍ରାପ୍ତ ହାତୀ ଜଙ୍ଗଲକୁ ଚାଲିଯିବାର ବହୁତ ଉଦାହରଣ ରହିଛି ।

କାଠଗଡ଼ି ବୁହା, ପରିବହନ, ଧର୍ମକାମ, ଯୁଦ୍ଧ ଆଦି ବିଭିନ୍ନ କାମ ପାଇଁ ଆଜିକୁ ଶହ ଶହ ବର୍ଷ ଧରି ହାତୀକୁ ଧରାଯାଉଛି ଓ ତାଲିମ ଦିଆଯାଉଛି । ହାତୀ ଧରାର ଅନେକ ଉପାୟ ଏବେ ବି ରହିଛି । ଅବଶ୍ୟ ଏସବୁ ହାତୀର ସୁଖସ୍ୱାଛନ୍ଦ୍ୟକୁ ପ୍ରଭାବିତ କରେ । (ହାତୀ ଧରାର କେତେକ ସାଧାରଣ ଉପାୟ ବିଷୟରେ ୪୯ ପୃଷ୍ଠାରେ ରହିଛି)

### ଯୁଦ୍ଧରେ ହାତୀ

ବହୁତ ବର୍ଷ ତଳୁ ହାତୀକୁ ଯୁଦ୍ଧରେ ଲଗାଯାଉଛି । ହାତୀକୁ ବୋଧହୁଏ ଏସିଆରେ ପ୍ରଥମ ଥର ପାଇଁ ଯୁଦ୍ଧରେ ଲଗାଗଲା । ଖ୍ରୀଷ୍ଟପୂର୍ବ ୫୦୦ ବେଳକୁ ଯୁଦ୍ଧରେ ହାତୀର ବ୍ୟବହାର ମଧ୍ୟପ୍ରାଚ୍ୟରେ ପ୍ରସାର ଲାଭ କରିସାରିଥିଲା । ସାଧାରଣତଃ ପାଞ୍ଚ ଖଣ୍ଡ ଲୁହା ଚାଦର ବଳା ସାହାଯ୍ୟରେ ଯୋଡ଼ାହୋଇ ଯୁଦ୍ଧ ହାତୀର ଦେହରେ ଲାଗିଥାଏ । ଶିକୁଳୀ ଦ୍ୱାରା ଏହା ହାତୀର କାନ ଓ ମୁଣ୍ଡକୁ ଘେରାଇ ବନ୍ଧା ହୋଇଥାଏ । ତୀର ଓ ବର୍ଚ୍ଛା ଚଳାଉଥିବା ଯୋଦ୍ଧାମାନେ ବସିବା ପାଇଁ ହାତୀ ପିଠିରେ ଗୋଟିଏ ହାଉଦା ପଡ଼ିଥାଏ ।

### ହାତୀ ସଙ୍କେତ

କୁମାରଗୁପ୍ତଙ୍କ ସ୍ୱର୍ଣ୍ଣମୁଦ୍ରାରେ ହାତୀର ଚିତ୍ର ରହିଥିଲା । ଗୁପ୍ତ ସାମ୍ରାଜ୍ୟର ମୁଦ୍ରା ଉପରେ ଏହା ପ୍ରାୟତଃ ନଥିଲେ ବି କେବେ କେଉଁଠି ଦେଖାଯାଉଥିଲା । ହାତୀର ଆକାର ଓ ବୁଦ୍ଧି ଯୋଗୁଁ ଅନେକ ସମୟରେ ତାକୁ ମାନସିକ ଗୁଣର ପ୍ରତୀକ ଭାବରେ ଧରାଯାଏ ।

ବୈଦିକ କାଳର ସଂସ୍କୃତିରେ ଘୋଡ଼ାର ଆଦର ବେଶୀ ରହିଥିଲା । କିନ୍ତୁ ବୌଦ୍ଧ ସଂସ୍କୃତିର ଆରମ୍ଭ ସମୟରୁ ଚିତ୍ର, କଳା, ସାହିତ୍ୟ, ସଙ୍ଗୀତ ଆଦିରେ ହାତୀର ପ୍ରଭାବ ବେଶି ଦେଖାଗଲା । ଭାରତରେ ଆଜି ବି ୧୦ ଟଙ୍କିଆ ନୋଟରେ ଗୋଟିଏ ହାତୀ ଚିତ୍ର ରହିଛି । ଆମ ଦେଶରେ ହାତୀ ପାଇଁ ରହିଥିବା ଉଚ୍ଚ ସ୍ଥାନ ଏଥିରୁ ଜଣାଯାଏ ।

### କଳାରେ ହାତୀ

ଆମ କଳାରେ ହାତୀ ହେଉଛି ସବୁଠାରୁ ପ୍ରିୟ ସଙ୍କେତ । କଳାର ବିଭିନ୍ନ ମାଧ୍ୟମରେ ହାତୀର ପ୍ରତିମୂର୍ତ୍ତୀ ଦେଖିବାକୁ ମିଳେ । ପୃଥିବୀ ସାରା ସବୁ ଅଞ୍ଚଳର ଚିତ୍ରକର ସେମାନଙ୍କ ଚିତ୍ରରେ ହାତୀ ଆଙ୍କିଛନ୍ତି । ଏପରିକି ଗୁମ୍ଫାରେ ଚିତ୍ର କରିବାଠାରୁ ଆଜିର ଆଧୁନିକ ଚିତ୍ରରେ ହାତୀ ରହିଛି ।

## କାମିକା ହାତୀ

ଏବେ ମଧ୍ୟ ପୋଷା ହାତୀକୁ ଅନେକ କାମ ପାଇଁ ବ୍ୟବହାର କରାଯାଉଛି । ଯଥା -

- ଭିଏତନାମର ଯୁଦ୍ଧରେ, ଜିନିଷ ବୋହିବା ପାଇଁ
- କାଠ ଗୋଲାରେ, ଛୋଟ ଓ ମଝି ଆକାରର କାଠ ଗଡ଼ ବୋହିବା ଏବଂ ପଠାଇବା ପାଇଁ ଟ୍ରକ୍ ଓ ଟ୍ରେଲର୍‌ରେ ଲଦିବା କାମରେ
- ଧାର୍ମିକ ଶୋଭାଯାତ୍ରାର ମାନ ବଢ଼ାଇବାରେ
- ଗାଁ ଉତ୍ସବ ଏବଂ ପର୍ବପର୍ବାଣିରେ, ଲୋକଙ୍କ ମନୋରଞ୍ଜନ କରିବାରେ
- ପ୍ରକୃତି ପର୍ଯ୍ୟଟନରେ, ଯେଉଁଠି ରାସ୍ତା ନଥାଏ ବା ଜଙ୍ଗଲରେ ଚାଲିବାରେ ବିପଦ ଥାଏ
- ଜଙ୍ଗଲ ବିଭାଗ ଦ୍ୱାରା, ପହରା ଦେବା ପାଇଁ
- ମନ୍ଦିର, ବୌଦ୍ଧ ଆଶ୍ରମ ଆଦିରେ

କେତେ ଘଣ୍ଟା ଧରି ହାତୀ କାମ କରିପାରିବ ତାହା ସେ ସ୍ଥାନର ଜଳବାୟୁ ଉପରେ ନିର୍ଭର କରେ । ଭାରତର ଥଣ୍ଡା ପାହାଡ଼ିଆ ଜିଲ୍ଲାମାନଙ୍କରେ, ଥାଇଲାଣ୍ଡ ଓ ମିଆମାର (ବର୍ମା)ରେ ଗୋଟିଏ ସୁସ୍ଥ ଅଣ୍ଡିରା ହାତୀ ଆଠ ଘଣ୍ଟା ଯାଏଁ କାମ କରିପାରେ । କିନ୍ତୁ ତଳିଆ ଅଞ୍ଚଳରେ ସେମାନେ ମଝିରେ ମଝିରେ ବିଶ୍ରାମ ନେଇ ସାଧାରଣତଃ ୫-୬ ଘଣ୍ଟା କାମ କରିପାରନ୍ତି ।



## ହାତୀଙ୍କ ଜାତିଭେଦ

ଗୋଟିଏ ହାତୀକୁ କେବେ ଭଲକରି ଲକ୍ଷ କରିଛ କି ? ସବୁ ହାତୀଙ୍କର ଗୋଟିଏ ଶୁଣ୍ଢ, ଦୁଇଟି ବଡ଼ କାନ, ଗୋଟିଏ ବିରାଟ ଦେହ ଏବଂ ଦୁଇ ଯୋଡ଼ା ଶକ୍ତ ଗୋଡ଼ ଥିଲେ ବି କୌଣସି ଦୁଇଟି ହାତୀଙ୍କ ଦେହର ଗଠନ ଏକା ଭଳି ନୁହେଁ ।

ସେମାନଙ୍କ ଶରୀର ଗଠନ ଅନୁସାରେ ଭାରତରେ ସେମାନଙ୍କର ଶ୍ରେଣୀବିଭାଗ କରାଯାଇଥାଏ । ଭାରତୀୟ ହାତୀଙ୍କ ଭିତରେ ମୁଖ୍ୟତଃ ଦୁଇଟି ଜାତି ଅଛନ୍ତି - *କୁମେରିଆ* ଓ *ମିର୍‌ଗା* । କୁମେରିଆ ହାତୀ ଛୋଟ ଓ ମୋଟା ଏବଂ ତା'ର ବଳ ବହୁତ ବୋଲି ବିଶ୍ୱାସ କରାଯାଏ । ଏହି ଦଳର ହାତୀକୁ ରାଜକୀୟ ଧରାଯାଏ । ମିର୍‌ଗା ହାତୀଙ୍କ ଗୋଡ଼ ଲମ୍ବା ଓ ହାଲୁକା ଏବଂ ସେ ଜୋରରେ ଧାଇଁପାରେ । ଆହୁରି ଗୋଟିଏ ଜାତିର ହାତୀ ଥିବାର ବିଶ୍ୱାସ କରାଯାଏ । କୁମେରିଆ ଓ ମିର୍‌ଗାର ମିଶା *ଦ୍ୱୟମିର୍‌ଗା* । ଏହି ହାତୀଗୁଡ଼ିକୁ ଉଭୟ ବଳୁଆ ଏବଂ ବେଗବାନ ବୋଲି ମନେ କରାଯାଏ ।

ଆଧାର: ମାର୍କ ସାଣ୍ଡ, *କ୍ୱିନ୍ ଅଫ୍ ଦି ଏଲିଫାଣ୍ଟସ୍*, ଭିନ୍‌ଟେଜ୍, ଲଣ୍ଡନ, ୧୯୯୬



Digitized by srujanika@gmail.com

# ମନୋରଞ୍ଜନକାରୀ ହାତୀ

ଅନେକ ପିଲା ତାଙ୍କ ପାଠ ଆରମ୍ଭ କରିବା ବେଳେ ଇଂରାଜୀ ଅକ୍ଷର 'ଇ'କୁ ହାତୀ ବା *ଏଲିଫାଣ୍ଟ* ସହିତ ଯୋଡ଼ିଦିଅନ୍ତି । ହାତୀ ସହ ପିଲାର ଏହି ସମ୍ପର୍କ ବହି, ସିନେମା, ଗପ, କବିତା ଆଦିର ମାଧ୍ୟମରେ ଆହୁରି ବଢ଼ିଚାଲେ । ଅନେକ ପିଲା ବି ଏହାକୁ ୧୯୮୨ ମସିହାର ଏସିଆନ୍ ଖେଳର ଜୀବନ୍ତ ପ୍ରତୀକ ଆପ୍ପୁ ସହ ଯୋଡ଼ନ୍ତି ।

ଅନେକ ବର୍ଷ ଧରି ହାତୀ ମଣିଷର ମନୋରଞ୍ଜନ କରୁଛି । ସେମାନଙ୍କର ଭଦ୍ର ଗୁଣ, ବଳ ଏବଂ ବିଜ୍ଞତା ଯୋଗୁଁ ମଣିଷ ତାକୁ ପୋଷା ମନାଇଛି ଏବଂ ବିଭିନ୍ନ ଖେଳ ପାଇଁ ତାଲିମ ଦେଇଛି । ରୋମ ସାମ୍ରାଜ୍ୟର ଆରମ୍ଭ ସମୟରୁ ଅନ୍ୟ ଜୀବଙ୍କ ଭଳି ହାତୀ ବି ସର୍କସର ଏକ ଅବିଚ୍ଛେଦ୍ୟ ଅଙ୍ଗ ହୋଇ ରହିଛି । କେତେ ପିଢ଼ି ଧରି ବୟସ୍କ ଓ ପିଲାମାନେ ହାତୀର ବଳ, ଦକ୍ଷତା ଏବଂ ଆକାର ଯୋଗୁଁ ଆମୋଦିତ ହୋଇଛନ୍ତି ।

ଲୋକଙ୍କୁ ଖୁସି କରିବା ପାଇଁ ସର୍କସର ହାତୀ ଭାରସାମ୍ୟ ରଖିବା ଖେଳ ଓ ନାଚ ଆଦି ଦେଖାଇଥାଏ । ଅନେକ ତାଲିମଦାତା ହାତୀକୁ ପଛଗୋଡ଼ରେ ଚାଲିବା ବା ଗୋଟିଏ ବଡ଼ ପେଣ୍ଡୁ ଉପରେ ଭାରସାମ୍ୟ ରଖି ଠିଆ ହେବା ପାଇଁ ତାଲିମ ଦେଇଥାନ୍ତି । ଆଜିକାଲି ମନୋରଞ୍ଜନ ପାଇଁ ପଶୁଙ୍କୁ ଏଭଳି ବ୍ୟବହାର କରିବା ବିରୋଧରେ ସମାଜରେ ସ୍ୱର ଉଠୁଛି । ବିରୋଧ କରୁଥିବା ଲୋକମାନେ ଭାବୁଛନ୍ତି ଯେ ଏହିପରି ଛୋଟ ଛୋଟ ଖେଳ ଦେଖାଇବା ବେଳେ ହାତୀ କେବଳ ଯେ ଆଘାତ ପାଇପାରେ, ତା ନୁହେଁ, ଏହା ଜୀବଟିର ସମ୍ମାନରେ ମଧ୍ୟ ଆଞ୍ଚ ଆଣୁଛି । ଏହା ତାଙ୍କର ସ୍ୱାଭାବିକ ମୁକ୍ତ ମାନସିକତାକୁ ଭାଙ୍ଗି ଦେଇପାରେ । ଏକ ରାଜକୀୟ ଜୀବକୁ ଏଭଳି ନିରର୍ଥକ ଖେଳରେ ଲଗାଇବା ନିଷ୍ଠୁରତା ଏବଂ ଲଜ୍ଜାଜନକ ମନେହୁଏ ।



ଚିଡ଼ିଆଖାନାରେ ହାତୀ, ବିଶେଷ କରି ଛୁଆହାତୀ, ଲୋକଙ୍କୁ ସବୁଠାରୁ ବେଶୀ ଆକର୍ଷିତ କରେ । ପୃଥିବୀର ବିଭିନ୍ନ ଅଞ୍ଚଳରେ ହାତୀକୁ ପୋଲୋ, ଫୁଟବଲ, ଦଉଡ଼ିଟଣା, ହାତୀଦୌଡ଼ ଭଳି ଅନେକ ପ୍ରତିଯୋଗିତାମୂଳକ ଖେଳରେ ବି ଲଗାଯାଏ ।

# ଉତ୍ସବ ଅନୁଷ୍ଠାନରେ ହାତୀ

ହାତୀ ବିନା ଭାରତରେ ଅନେକ ଉତ୍ସବ ଅପୂରା ରହିଯାଏ । ହାତୀ ମଧ୍ୟ ବିଭିନ୍ନ ଉତ୍ସବ ଓ ପୂଜାପର୍ବରେ ଲୋକଙ୍କଠାରୁ ପାଉଥିବା ସ୍ନେହ, ପ୍ରଶଂସା ଏବଂ ସମ୍ମାନକୁ ଉପଭୋଗ କରେ ।

ତ୍ରିସୁର ପୁରମ୍ ଉତ୍ସବ ଦକ୍ଷିଣ ଭାରତର ସବୁଠାରୁ ବଡ଼ ଉତ୍ସବ । ଏହି ଉତ୍ସବରେ ବଡ଼ ବଡ଼ ଦନ୍ତାହାତୀମାନେ ଆକର୍ଷଣର କେନ୍ଦ୍ରରେ ରହନ୍ତି । ଏହା ସଙ୍ଗୀତ, ହାତୀ, ବାଣର ଉତ୍ସବ ଏବଂ କେବେ କେବେ ଏହାକୁ 'ଉତ୍ସବର ଉତ୍ସବ' ବୋଲି ବି କୁହାଯାଏ (ଉତ୍ସବ ବିଷୟରେ ଅଧିକା ଜାଣିବା ପାଇଁ ପୃଷ୍ଠା ୪୬ର ତଥ୍ୟ ଭଣ୍ଡାର ଦେଖ) ।

କେବଳ ଭାରତରେ ହାତୀ ଉତ୍ସବର ଏକ ଅଂଶ ନୁହେଁ, ବରଂ ଶ୍ରୀଲଙ୍କା, ଥାଇଲାଣ୍ଡ ଆଦି ଦେଶରେ ମଧ୍ୟ ଏହା ଉତ୍ସବର ଗୋଟିଏ ବଡ଼ ଅଂଶ ହୁଏ । ଏହି ସବୁ ଉତ୍ସବ ହାତୀ ଭଳି ଏକ ଚମତ୍କାର ଜୀବ ପ୍ରତି ମଣିଷର ସମ୍ମାନର ସୂଚନା ଦିଏ ।

ଅଗଷ୍ଟ ମାସରେ ପୂର୍ଣ୍ଣମୀର ସପ୍ତାହେ ଆଗରୁ ଶ୍ରୀଲଙ୍କାରେ ଏହିପରି ଗୋଟିଏ ଉତ୍ସବ ପାଳନ କରାଯାଏ । ଏହି ଉତ୍ସବଟି ଗତ ୫୦୦ ବର୍ଷ ଧରି ସ୍ଥାନୀୟ ପରମ୍ପରାର ଗୋଟିଏ ଅଂଶ ହୋଇ ଆସିଛି । ଏହି ଉତ୍ସବରେ ଦେଶର ସବୁଠାରୁ ଭଲ ଦନ୍ତାହାତୀ ସୁନ୍ଦର ଭାବରେ ସଜାଇ ହୋଇ ଆଉ ୨୦୦ଟି ସୁସଜ୍ଜିତ ହାତୀଙ୍କ ଗହଣରେ ବୁଦ୍ଧଦେବଙ୍କ ପବିତ୍ର ଦାନ୍ତର ଅବଶିଷ୍ଟାଂଶ ଧରି ପାର୍ବତ୍ୟ ରାଜଧାନୀ କାଣ୍ଡିର ରାସ୍ତାରେ ଯାଏ ।

ଥାଇଲାଣ୍ଡର ସୁରିନରେ ନଭେମ୍ବର ମାସରେ ଗୋଟିଏ ଦର୍ଶନୀୟ ଉତ୍ସବ ହୁଏ । ଏହି ଦିନଟି କାମିକା ହାତୀଙ୍କ ପାଇଁ ଛୁଟିଦିନ ବା ମେ ଦିବସ ଭଳି । ହାତୀମାନେ ସେଦିନ ଦଉଡ଼ିଟଣା, ଫୁଟବଲ ଭଳି ଅନେକ ଖେଳ ଖେଳିଥାନ୍ତି ।

# ହାତୀ ଓ ପ୍ରକୃତି ପର୍ଯ୍ୟଟନ

ଏବେ ଜାତୀୟ ଉଦ୍ୟାନମାନଙ୍କରେ ଲୋକମାନଙ୍କୁ



ହାତୀ ପିଠିରେ ଜଙ୍ଗଲ ଭିତରେ ବୁଲାଇବାରେ ବ୍ୟବସ୍ଥା କରାଯାଉଛି । ଏଥିପାଇଁ ବେଶି ସଂଖ୍ୟାର ପର୍ଯ୍ୟଟକ ଜାତୀୟ ଉଦ୍ୟାନମାନଙ୍କୁ ଆସୁଛନ୍ତି । ପର୍ଯ୍ୟଟକମାନେ ହାତୀ ପିଠିରେ ବସି ଅନ୍ୟ ଜୀବଙ୍କୁ ଦେଖୁଛନ୍ତି ଏବଂ ଫଟୋ ଉଠାଉଛନ୍ତି । ପୁରୁଣା କାଳର ହାଉଦା ବଦଳିଯାଇ ଏବେ ଆରାମଦାୟକ ବସିବା ବ୍ୟବସ୍ଥା କରାଯାଇଛି । ଏଥିରେ ଦୁଇ ପାଖ ଖୋଲା ରହୁଥିବାରୁ ଦର୍ଶକମାନେ ସବୁଆଡ଼ ଦେଖିପାରୁଛନ୍ତି ।

ଏହା ଆମ ଦେଶରେ ଜୀବଜନ୍ତୁ ଓ ଉଦ୍ଭିଦଜଗତର ସୁରକ୍ଷା ପାଇଁ ଆଗ୍ରହ ନିଶ୍ଚୟ ବଢ଼ାଇବ । କେବଳ ସେତିକି ନୁହେଁ, ହାତୀ ସଂରକ୍ଷଣରେ ମଧ୍ୟ ଏହା ସାହାଯ୍ୟ କରିବ । ପ୍ରକୃତି ପର୍ଯ୍ୟଟନରେ ଲାଗୁଥିବା ପୋଷା ହାତୀମାନେ ଉଭୟ ଜଙ୍ଗଲରେ ବୁଲିବାର ସୁଯୋଗ ପାଇବା ସହିତ ମାହୁନ୍ତର ଆଦର ଯତ୍ନର ଲାଭ ମଧ୍ୟ ପାଆନ୍ତି ।

କେତେ ଲୋକଙ୍କ ମତରେ କୌଣସି ଜୀବଙ୍କୁ ପୋଷା ମନାଇବା ଉଚିତ ନୁହେଁ । କାରଣ ପ୍ରତି ଜୀବର ନିଜ ଇଚ୍ଛା ମୁତାବକ ବଞ୍ଚି ରହିବାର ଅଧିକାର ରହିଛି । ଏକଥା କହିଲା ବେଳେ ମନେ ରଖିବାକୁ ହେବ ଯେ ହାତୀ ଆମ ପରମ୍ପରାର ଏକ ବଡ଼ ଅଂଶ ଏବଂ ବୋଧହୁଏ କେବଳ ଏଇଥିପାଇଁ ହିଁ ହାତୀ ଆଜି ବଞ୍ଚିରହିଛି । (ଅଧିକ ତଥ୍ୟ ପାଇଁ ପୃଷ୍ଠା ୪୭ର ପରଖ ଦେଖ)



Digitized by srujanika@gmail.com

# ଆମ ଚାରିପାଖେ ହାତୀ !

ଆମ ଜୀବନରେ ହାତୀ ବିଷୟରେ ଏକ ସଂଯୁକ୍ତ ଚିତ୍ର ତିଆରି କରିବା ।

| | |
|---|---|
| *ଉଦ୍ଦେଶ୍ୟ* | ପିଲାଙ୍କୁ ବୁଝାଇବା ଓ ସଚେତନ କରିବା -<br>• ହାତୀ ଆମ ଇତିହାସ ଏବଂ ପରମ୍ପରାର ଏକ ଅଂଶ<br>• ଆଜି ବି ଆମ ଜୀବନରେ ହାତୀର ଗୁରୁତ୍ୱ ରହିଛି |
| *ସ୍ତର* | ପ୍ରାଥମିକ |
| *ବିଷୟ* | ବିଜ୍ଞାନ |
| *ଦଳର ଆକାର* | ପାଞ୍ଚଜଣିଆ ଦଳ |
| *ସ୍ଥାନ* | ଶ୍ରେଣୀଗୃହ ଭିତରେ |
| *ସମୟ ଅବଧି* | ୪୫ ମିନିଟ |
| *ସାମଗ୍ରୀ* | ପତ୍ରିକା, ଖବରକାଗଜ, ଡ୍ରଇଙ୍ଗ ସିଟ୍, କଇଁଚି, ଅଠା |

ଅନନ୍ତ କାଳରୁ ହାତୀ ଆମ ଜୀବନର ଏକ ଅଂଶ ହୋଇଆସିଛି । ସେମାନେ ବର୍ଷ ବର୍ଷ ଧରି ମଣିଷର ସେବା କରି ଆସିଛନ୍ତି ଏବଂ ମଣିଷ ସହ ଏକ ଗଭୀର ସମ୍ପର୍କ ଯୋଡ଼ି ପାରିଛନ୍ତି । ସେଥିପାଇଁ ହାତୀର ମାଲିକ ଅଧିକ ସମ୍ମାନ ମଧ୍ୟ ପାଏ । ଆମ ଭିତରୁ ବୋଧହୁଏ କେହି ବି କେବେ ହାତୀ ପୋଷିବେ ନାହିଁ । ଏପରିକି ଅନେକ ହାତୀ ଦେଖିବେ ବି ନାହିଁ । ତଥାପି ଆମ ଚାରିପାଖରେ ଏପରି ଅନେକ ସ୍ଥାନ ଏବଂ ଜିନିଷ ରହିଛି ଯାହା ଆମକୁ ଆମ ଜୀବନରେ ହାତୀର ଉପସ୍ଥିତିକୁ ସୂଚାଇବ ।

ଆମ ଦେଶରେ, ହାତୀମୁଣ୍ଡିଆ ଠାକୁର ଗଣେଶ ହେଉଛନ୍ତି ଜ୍ଞାନର ଠାକୁର, ଶକ୍ତିର ପ୍ରତୀକ ଏବଂ ବିଘ୍ନବିନାଶକ । ଚିତ୍ରକଳାରେ ହାତୀର ଛାପ ବ୍ୟାପକ ଭାବରେ ରହିଛି । ଆମ ମନ୍ଦିରର ମୁଖଶାଳାମାନଙ୍କରେ ହାତୀ ବଡ଼ ଦର୍ପରେ ଠିଆ ହୋଇଥାଏ । ଅନେକ ଚଟାଣ, କାନ୍ଥ, ଛାତ, ଶାଢ଼ୀ, କନାରେ ହାତୀର ଚିତ୍ର ସଜା ହୋଇଥାଏ । ହାତୀ ଆମ ପରମ୍ପରାରେ ଅତି ଗଭୀର ଭାବରେ ରହିଛି ଏବଂ ରାଜକୀୟ ଜୀବନର ଏକ ଅଂଶ ହୋଇଯାଇଛି । ଆମ ଉତ୍ସବ ଓ ପର୍ବପର୍ବାଣୀରେ ହାତୀ ଏକ ଜରୁରୀ ଏବଂ ଅବିଚ୍ଛେଦ୍ୟ ଅଂଶ । (ହାତୀ ଉତ୍ସବ ବିଷୟରେ ୪୬ ପୃଷ୍ଠାର ତଥ୍ୟ ଭଣ୍ଡାରରେ ଅଧିକ ରହିଛି ।)

## ଆରମ୍ଭ କରିବା ଆଗରୁ

ହାତୀର ଚିତ୍ରକଳା ସବୁଆଡ଼େ ଦେଖାଯିବାର କାରଣ ବିଷୟରେ ପିଲାଙ୍କ ସହ ଆଲୋଚନା କର । ଯଦି ସମ୍ଭବ ଆମ ଜୀବନରେ ହାତୀର ପ୍ରଭାବ ବିଷୟରେ କିଛି ଲେଖା ଏବଂ ଚିତ୍ର ଦେଖାଯାଇପାରେ । ଆମ ସଂସ୍କୃତି, ପୁରାଣ, ଲୋକଗଳ୍ପରେ ହାତୀର ବିଭିନ୍ନ ପ୍ରକାରର ଭୂମିକା ବିଷୟରେ ବି ପିଲାଙ୍କ ସହ ଆଲୋଚନା କରାଯାଇପାରେ । (ଅଧିକ ତଥ୍ୟ ପାଇଁ ପୃଷ୍ଠା ୪୨ ଦେଖ)

## ପରଖର ଧାରା

**ଭାଗ କ** - ପିଲାମାନଙ୍କୁ କୁହ ଯେ ସେମାନେ ସଚେତନ ଭାବରେ ଅନୁଭବ ନକଲେ ବି ହାତୀ ସେମାନଙ୍କ ଜୀବନର ଏକ ଅଂଶ ହୋଇ ରହିଛି । ପିଲାମାନଙ୍କୁ କୁହ ଯେ ସେମାନେ ତାଙ୍କ ଘର ଓ ଆଖପାଖରେ ବିଭିନ୍ନ ଜିନିଷ, ଚିତ୍ର, କପଡ଼ା (ଶାଢ଼ୀ ଧଡ଼ି, ଚାଦର), କଳାକୃତି, ମୂର୍ତ୍ତି ଆଦିରେ ହାତୀର ଚିତ୍ରକଳା ଖୋଜିବେ । ଯଦି ସମ୍ଭବ ଅନ୍ୟ ପିଲାଙ୍କୁ ଦେଖାଇବା ପାଇଁ ସେସବୁ ଜିନିଷ ସ୍କୁଲକୁ ଆଣିବା ପାଇଁ ପିଲାଙ୍କୁ କୁହ ।

**ଭାଗ ଖ** - ଦ୍ୱିତୀୟ ଭାଗରେ ପିଲାମାନେ ବିଭିନ୍ନ ଖବରକାଗଜ, ପତ୍ରିକା ଆଦିରେ ଥିବା ବିଜ୍ଞାପନରୁ ହାତୀ ଚିତ୍ରକଳା ଖୋଜିବେ ।

ହାତୀକୁ ବିଜ୍ଞାପନରେ ବ୍ୟବହାର କରାଯାଉଥିବା କାରଣ ବିଷୟରେ ପିଲାଙ୍କ ସହ ଆଲୋଚନା କର । ସେସବୁରେ ହାତୀ କାହାର ପ୍ରତୀକ ହେଉଛି?

**ଭାଗ ଗ** - ଶ୍ରେଣୀର ପିଲାମାନଙ୍କୁ ପାଞ୍ଚଜଣିଆ ଦଳରେ ଭାଗ କର । ପ୍ରତି ଦଳକୁ ଅତି କମ୍‌ରେ ଦୁଇଟି ଖବରକାଗଜ ବା ପତ୍ରିକାରୁ ହାତୀ ଉପରେ ଲେଖା, ଚିତ୍ର ସଂଗ୍ରହ କରିବାକୁ କୁହ । ଏସବୁରେ ବିଭିନ୍ନ ପ୍ରକାରର ବିଷୟ ମିଳିଯିବ । ଉଦାହରଣ ସ୍ୱରୂପ, ରେଳ ଦୁର୍ଘଟଣାରେ ହାତୀ ଆହତ ହେବା, ମତ୍ତ ହାତୀ ମଣିଷ ମାରିବା, ହାତୀଶିକାର ବଢ଼ିବା ଆଦି । ସେମାନେ ହାତୀ ଚିତ୍ର, ହାତୀ ଉପରେ ଗପ, କବିତା ବା ସହରରେ ହାତୀ ଶୋଭାଯାତ୍ରା ବିଷୟରେ ଖବର ମଧ୍ୟ ସଂଗ୍ରହ କରିପାରିବେ ।

ଜିନିଷ ସଂଗ୍ରହ କରିବା ପରେ ପ୍ରତି ଦଳକୁ ଗୋଟିଏ ଲେଖାଏଁ ଡ୍ରଇଙ୍ଗ ସିଟ୍ ଦିଅ । ଦଳର ସମସ୍ତେ ମିଶି ଏସବୁ ଜିନିଷକୁ ଏକାଠି କରି ହାତୀ ସମ୍ବାଦର ଗୋଟିଏ ପୃଷ୍ଠା ତିଆରି କରିବାକୁ କୁହ । ସେମାନେ ଲେଖାଗୁଡ଼ିକୁ ବିଷୟ ଅନୁସାରେ ସଜାଇବେ ଏବଂ ସେଥିରେ ଉପଯୁକ୍ତ ଶୀର୍ଷକ, ଚିତ୍ର, ଗ୍ରାଫ୍ ଆଦି ଯୋଡ଼ିବେ । ଯଦି ସମ୍ଭବ, ବିଜ୍ଞାପନରେ ଥିବା ବିଭିନ୍ନ ହାତୀ ଚିତ୍ରର ନକଲ ଆଣି ପିଲାମାନେ ଏଥିରେ ଯୋଡ଼ିପାରିବେ ।

ପିଲାମାନେ ତାଙ୍କର ହାତୀସମ୍ବାଦ ପୃଷ୍ଠାଗୁଡ଼ିକୁ ଶ୍ରେଣୀରେ ପ୍ରଦର୍ଶନ ପାରିବେ । ଅନ୍ୟ ପିଲା ଓ ଲୋକମାନଙ୍କ ପାଇଁ ବର୍ଷ ଶେଷରେ ସେମାନେ ଏସବୁକୁ ନେଇ ଗୋଟିଏ ହାତୀ ମେଳାର ଆୟୋଜନ କରିପାରିବେ ।



Digitized by srujanika@gmail.com

# ତଥ୍ୟ ଭଣ୍ଡାର

## କେତୋଟି ହାତୀ ଉତ୍ସବ

### ତ୍ରିସୁର ପୂରମ (କେରଳ)

ଏହି ଉତ୍ସବ କେରଳର ତ୍ରିସୁର ଠାରେ ଥିବା ବଡ଼କୁନ୍ନାଥନ୍ ମନ୍ଦିରରେ ଅନୁଷ୍ଠିତ ହୁଏ। ମାଲାୟଲମ୍ ବର୍ଷର ପ୍ରଥମ ମାସ ମେଡ୍ରମ୍ (ଇଂରାଜୀ ମେ ମାସ)ରେ ଏହା ଅନୁଷ୍ଠିତ ହୁଏ।

ଏପ୍ରିଲ ମାସରେ ଉତ୍ସବ ପାଇଁ ବ୍ୟାପକ ପ୍ରସ୍ତୁତି ଆରମ୍ଭ ହୁଏ। ଏହି ପୁରୁଣା ସହର ଦୁଇଟି ମୁଖ୍ୟ ପାରାମେକାଭୁ ଏବଂ ଥିରୁଭମ୍ବାଡ଼ି ମନ୍ଦିରର ଠାକୁରଙ୍କ ଭିତରେ ଏକ ବହୁତାପୂର୍ଣ୍ଣ ପ୍ରତିଯୋଗିତା ଏହି ଉତ୍ସବର ବିଶେଷ ଆକର୍ଷଣ ହୁଏ।

ଉତ୍ସବ ସମୟରେ ଦୁଇ ପ୍ରତିଯୋଗୀ ୧୫ଟି ଲେଖାଏଁ ହାତୀ ଆଣନ୍ତି। ପ୍ରତିଟି ହାତୀ ଅତି ସୁନ୍ଦର ଭାବରେ ସଜା ହୋଇଥାନ୍ତି। ଉତ୍ସବର ବହୁ ଆଗରୁ ହାତୀ ସଜାଯିବାର ରଙ୍ଗ, ଛତା ଏବଂ ସାଜସଜ୍ଜା ଆଦି ଯୋଜନା କରାଯାଏ। କିନ୍ତୁ ଉଭୟ ଠାକୁରଙ୍କ ତରଫରୁ ଏହାକୁ ଗୁପ୍ତ ରଖାଯାଏ।

ଉତ୍ସବ ଦିନ ଉଭୟ ଦଳର ହାତୀ ସାମନାସାମନି ହୋଇ ଧାଡ଼ି ବାନ୍ଧି ଠିଆ ହୁଅନ୍ତି। ଶଙ୍ଖ, ଝାଞ୍ଜ, ତୂରୀ ଏବଂ ଦୁଇ ପ୍ରକାରର ଢୋଲକୁ ନେଇ ହେଉଥିବା ପଞ୍ଚବାଦ୍ୟ ବଜାଇ ଉତ୍ସବ ଆରମ୍ଭ କରାଯାଏ। ଦୁଇ ଦଳର ହାତୀମାନଙ୍କର ସ୍ୱାସ୍ଥ୍ୟ, ସାଜସଜ୍ଜା ଏବଂ ସେମାନଙ୍କର ଛତାର ସାଜସଜ୍ଜା ଅନୁସାରେ ବିଜେତା ବଛାଯାଏ।

ଉଭୟ ଦଳର ସମର୍ଥକମାନଙ୍କର ଅଭିନନ୍ଦନ, ଖୁସିରେ ପାଟି କରିବା ଏବଂ ଜୋର ତାଳି ମାଡ଼ ଭିତରେ ଉତ୍ସବ ଚାଲେ। ବେଳେ ବେଳେ ହାତୀମାନେ ବି ଏହି ଉତ୍ସବରେ ମଜ୍ଜିଗଲା ଭଳି ଜୋରରେ ଚିତ୍କାର କରିଚାଲନ୍ତି।

### ବିଶାଳ ହାତୀ ଶୋଭାଯାତ୍ରା (କେରଳ)

ପ୍ରତିବର୍ଷ ଜାନୁଆରୀ ୧୭-୨୦ ତାରିଖ ଯାଏଁ ଏହି ବିଶାଳ ହାତୀ ଶୋଭାଯାତ୍ରା ଅନୁଷ୍ଠିତ ହୁଏ। ଏହା କେରଳର ତ୍ରିସୁରରୁ ବାହାରି କୋଚିନ, ଆଲେପି ଦେଇ ତ୍ରିଭେନ୍ଦ୍ରମରେ ପହଞ୍ଚେ ଓ ସେଠାରେ ଶେଷ ଉତ୍ସବଟି ହୁଏ। ବାଟ ସାରା ଲୋକମାନେ ହାତୀ ଉପରେ ଚଢ଼ନ୍ତି, ସେମାନଙ୍କୁ ଖାଇବାକୁ ଦିଅନ୍ତି ଏବଂ ଛୁଅନ୍ତି। ଉତ୍ସବ ସମୟରେ ହାତୀଙ୍କ ସହ କେରଳର ପାରମ୍ପରିକ ବୃନ୍ଦବାଦ୍ୟ ମେଲମ୍ ଏବଂ ଲୋକନୃତ୍ୟ କଳାକାରମାନେ ମଧ୍ୟ ଯୋଗଦିଅନ୍ତି।

### ହାତୀ ଉତ୍ସବ (ଜୟପୁର, ରାଜସ୍ଥାନ)

ଏହି ଉତ୍ସବରେ ହାତୀମାନେ ଆକର୍ଷଣର କେନ୍ଦ୍ରବିନ୍ଦୁ। ଏଥିରେ ହାତୀ, ଓଟ ଏବଂ ଘୋଡ଼ାମାନଙ୍କର ଏକ ଶୋଭାଯାତ୍ରା ବାହାରେ। ଲୋକନୃତ୍ୟ କଳାକାରମାନେ ମଧ୍ୟ ଏହାର ଏକ ମୁଖ୍ୟ ଅଂଶ ହୁଅନ୍ତି। ଏହାର ସବୁଠାରୁ ବଡ଼ ଆକର୍ଷଣୀୟ ଅଂଶ ହେଉଛି ହାତୀ ଦୌଡ଼, ହାତୀ ପୋଲୋ ଖେଳ ଏବଂ ହାତୀ ମଣିଷ ଭିତରେ ଦଉଡ଼ିଟଣା ଖେଳ

### ଗଣେଶ ଚତୁର୍ଥୀ

ହାତୀମୁଣ୍ଡିଆ ଠାକୁର ଗଣେଶଙ୍କ ପୂଜା ମୁଖ୍ୟତଃ ମହାରାଷ୍ଟ୍ର, ତାମିଲନାଡୁ, ଆନ୍ଧ୍ରପ୍ରଦେଶ ଏବଂ କର୍ଣ୍ଣାଟକରେ ପ୍ରସିଦ୍ଧ। ଗଣେଶ ହେଉଛନ୍ତି ସବୁ କାମ ପାଇଁ ସିଦ୍ଧି ଓ ସଫଳତାର ଠାକୁର। ଏହି ଉତ୍ସବରେ ଗଣେଶଙ୍କ ମୂର୍ତ୍ତି ପୂଜା କରାଯାଏ। ଉତ୍ସବ ଶେଷରେ ସେହି ମୂର୍ତ୍ତିକୁ ପୋଖରୀ, ନଈ ବା ସମୁଦ୍ରରେ ବିସର୍ଜନ କରାଯାଏ। ଆଶାଥାଏ ଯେ ଆନନ୍ଦର ଏହି ଉତ୍ସବଟି ସେହିଭଳି ଉତ୍ସାହ ଓ ଉଦ୍ଦୀପନା ସହିତ ଆସନ୍ତା ବର୍ଷକୁ ପୁଣିଥରେ ଆସିବ।

ଗତ କିଛି ବର୍ଷ ହେବ ଗଣେଶ ମୂର୍ତ୍ତିକୁ ନଈ, ପୋଖରୀ, ସମୁଦ୍ରରେ ବିସର୍ଜନ କରିବା ନେଇ ଅନେକ ପ୍ରଶ୍ନ ଉଠୁଛି। ଗୋଟିଏ ପ୍ରଶ୍ନ ହେଉଛି ଆଜିକାଲି ଏସବୁ ମୂର୍ତ୍ତିରେ ବିଷାକ୍ତ ରଙ୍ଗ ଦିଆଯାଉଛି। ନଈ, ସମୁଦ୍ରରେ ବିସର୍ଜନ କରିବା ଫଳରେ ଏସବୁ ଜଳଜୀବଙ୍କ ପ୍ରତି ବିପଦ ଆଣୁଛି। ପ୍ରତିବର୍ଷ ମୂର୍ତ୍ତିର ଆକାର ଏବଂ ସେଥିରେ କୃତ୍ରିମ ଜିନିଷର ବ୍ୟବହାର ବଢ଼ିଯାଉଥିବାରୁ ପାଣି ଭିତରେ ଏଭଳି ବର୍ଜ୍ୟବସ୍ତୁର ପରିମାଣ ବଢ଼ିଯାଉଛି। ଏଥିରୁ ରକ୍ଷା ପାଇବାର ବାଟ ହେଉଛି ଆଗ ଭଳି ଛୋଟ ମୂର୍ତ୍ତି ତିଆରି କରିବା। ଏସବୁ ଘର ପଛପଟେ ପାଣିରେ ବତୁରାଇ ମାଟିରେ ମିଶାଇ ଦିଆଯାଇ ପାରିବ।





Digitized by srujanika@gmail.com

# କାମରେ ହାତୀ !

**ଜଙ୍ଗଲୀ ଏବଂ ପୋଷା ହାତୀର ବ୍ୟବହାର ଭିତରେ ତୁଳନା ।**

| | |
|---|---|
| *ଉଦ୍ଦେଶ୍ୟ* | ପିଲାଙ୍କୁ ସାହାଯ୍ୟ କରିବା -<br>● ଚିଡ଼ିଆଖାନା, ମନ୍ଦିର, ସର୍କସ ଆଦିର ପୋଷା ହାତୀ ଏବଂ ଜଙ୍ଗଲୀ ହାତୀ ବିଷୟରେ ଜାଣିବାରେ<br>● ପୋଷା ହାତୀ ବିଷୟରେ ସେମାନଙ୍କ ମତ ପ୍ରକାଶ କରିବାରେ |
| *ସ୍ତର* | ମାଧ୍ୟମିକ · |
| *ବିଷୟ* | ବିଜ୍ଞାନ, ଚିତ୍ରକଳା ଏବଂ ହସ୍ତକର୍ମ |
| *ଦଳର ଆକାର* | ପାଞ୍ଚଟି ଦଳ |
| *ସ୍ଥାନ* | ଶ୍ରେଣୀଗୃହ ଭିତରେ |
| *ସମୟ ଅବଧି* | ଏକ ଘଣ୍ଟା |
| *ସାମଗ୍ରୀ* | ଡ୍ରଇଙ୍ଗ ସିଟ୍, ମାର୍କର, କଲମ |

ଐତିହାସିକ କାଳରୁ ଭାରତରେ ହାତୀ ପୋଷା ଯାଉଛି । ସମ୍ରାଟ ଜାହାଙ୍ଗୀର ୧୨,୦୦୦ ହାତୀ ରଖିଥିଲେ ବୋଲି କୁହାଯାଏ । ୧୭ଶ ଶତାବ୍ଦୀ ବେଳକୁ ଭାରତ ଉପମହାଦେଶରେ ପୋଷା ହାତୀଙ୍କ ସଂଖ୍ୟା ଥିଲା ପ୍ରାୟ ୪୦,୦୦୦ ।

ହିସାବ କରାଯାଏ ଯେ ଗତ ୧୦୦ ବର୍ଷ ଭିତରେ ଭାରତ ଭୂଖଣ୍ଡରେ ପ୍ରାୟ ୩୦,୦୦୦ରୁ ୫୦,୦୦୦ ଯାଏଁ ହାତୀ ଧରା ହୋଇଛନ୍ତି ।

ଏବେ ଭାରତରେ ପ୍ରାୟ ୩୪୦୦ରୁ ୩୬୦୦ ପୋଷା ହାତୀ ଅଛନ୍ତି । ସବୁଠୁ ଅଧିକା ୧୯୦୩ରୁ ୧୯୧୦ ଯାଏଁ ପୋଷା ହାତୀ ରହିଛନ୍ତି ଉତ୍ତରପୂର୍ବ ଭାରତରେ । ଉତ୍ତର ଭାରତରେ ୨୭୨ରୁ ୩୦୦ ପୋଷା ହାତୀ ଥିବାବେଳେ ଦକ୍ଷିଣ ଭାରତରେ ୮୭୦ରୁ ୯୨୦ ହାତୀ ରହିଛନ୍ତି । ଦକ୍ଷିଣ ଭାରତର ଏହି ହାତୀମାନଙ୍କ ଭିତରୁ ୧୫୦ ହାତୀ ଜଙ୍ଗଲ କାମରେ ଲାଗିଛନ୍ତି ଏବଂ ୧୫୦ରୁ ୨୦୦ଟି ବିଭିନ୍ନ ମନ୍ଦିରରେ ଅଛନ୍ତି । ଗତ ୨୫ ବର୍ଷ ଭିତରେ ଭାରତରେ ପୋଷା ହାତୀଙ୍କ ସଂଖ୍ୟା କମିଯାଇଛି ।

ଭାରତରେ ପୋଷା ହାତୀକୁ କାଠ ଗୋଦାମରେ କାଠଗଡ଼ି ବୋହିବାରେ ଲଗାଯାଏ । କେତେକ ମନ୍ଦିରରେ ବି ହାତୀ ରଖାଯାଏ ଏବଂ ସେମାନଙ୍କୁ ଗୌରବର ପ୍ରତୀକ ଭାବରେ ଶୋଭାଯାତ୍ରାରେ ନିଆଯାଏ । ଚିଡ଼ିଆଖାନାରେ ବି ହାତୀ ରଖାଯାଏ ଏବଂ ଏବେ ଏହା ପ୍ରକୃତି ପର୍ଯ୍ୟଟନର ଏକ ଅଂଶ ହେଉଛି ।

ଜଙ୍ଗଲୀ ହାତୀ ବେଳେ ବେଳେ ଫସଲ ନଷ୍ଟକରି ମଣିଷର କ୍ଷତି କରିପାରନ୍ତି । କିନ୍ତୁ ପୋଷା ହାତୀ ମଣିଷକୁ ଯୁଦ୍ଧ ଓ ଶାନ୍ତି ସମୟରେ ସବୁବେଳେ ସାହାଯ୍ୟ କରିଆସିଛି । ଆଜି ବି ଅନେକ କ୍ଷେତ୍ରରେ ହାତୀକୁ କାମରେ ଲଗାଯାଉଛି । ସାଧାରଣତଃ ହାତୀମାନଙ୍କୁ ବେଶ୍ ଆଦର ଯତ୍ନ ସହିତ ରଖାଯାଇଥାଏ । ତଥାପି ବି ପୋଷା ହାତୀ ପ୍ରତି ଉଦାସୀନତା ଓ ନିଷ୍ଠୁରତା ମଧ୍ୟ ଦେଖାଯାଏ ।

## କାମ ଆରମ୍ଭ ଆଗରୁ

ଦିନକ ଆଗରୁ ପୁସ୍ତକାଳୟର ଅଧିକାରୀଙ୍କ ସହ କଥାହୋଇ ପିଲାମାନେ ପୁସ୍ତକାଳୟ ବ୍ୟବହାର କରିବାର ବ୍ୟବସ୍ଥା କରିବ । ପୋଷା ହାତୀର ଚାଲିଚଳଣ, ଖାଦ୍ୟ ଆଦି ବିଷୟରେ ଅଧିକ ଜାଣିବାରେ ଏହି କାମଟି ସାହାଯ୍ୟ କରିବ ବୋଲି ପିଲାଙ୍କୁ କହିଦିଅ ।

## ପରଖର ଧାରା

ପୋଷା ହାତୀର କାମ ବିଷୟରେ ସାମୂହିକ ଆଲୋଚନାରୁ କାମ ଆରମ୍ଭ କରାଯାଇ ପାରିବ । (୪୩ ଓ ୪୪ ପୃଷ୍ଠାରେ ଥିବା ତଥ୍ୟରୁ ଆଲୋଚନା ଆରମ୍ଭ କରାଯାଇପାରେ ।) ପ୍ରତି ଦଳ ପିଲା ତଳେ ଦିଆଯାଇଥିବା କାମରୁ ଅତି କମ୍‌ରେ ଦୁଇଟି କରିପାରିବ ।

### ହାତୀ ପୋଷ୍ଟର

ଏହି ପରଖ ପାଇଁ ପୂରା ଶ୍ରେଣୀକୁ ପାଞ୍ଚଟି ଦଳରେ ଭାଗ କର । ପ୍ରତି ଦଳ ପୋଷା ହାତୀ ଉପରେ ଗୋଟିଏ ବଡ଼ ପୋଷ୍ଟର ତିଆରି କରିବେ ବୋଲି ତାଙ୍କୁ କହିଦିଅ । ପ୍ରତି ଦଳର ପୋଷ୍ଟର ପାଇଁ ଗୋଟିଏ ନିର୍ଦ୍ଦିଷ୍ଟ ବିଷୟ ଦିଆଯାଇପାରେ । ଏଭଳି କିଛି ବିଷୟ ହେଉଛି -

- ଚିଡ଼ିଆଖାନାରେ ହାତୀ
- ସର୍କସରେ ହାତୀ
- ମନ୍ଦିରର ହାତୀ
- ଜଙ୍ଗଲ ଶିବିରରେ ହାତୀ
- ଯୁଦ୍ଧରେ ହାତୀ

ପ୍ରତି ଦଳକୁ କହିଦିଅ ପୋଷ୍ଟରରେ ଯେପରି ତଳ ତଥ୍ୟଗୁଡ଼ିକ ରହିଥିବ ।

- ବିଷୟ ଅନୁସାରେ ହାତୀର ଚିତ୍ର
- ଗୋଟିଏ ମନଛୁଆଁ ଶୀର୍ଷକ
- କିଛି ଆଗ୍ରହଜନକ ତଥ୍ୟ
- କିଛି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ବା ସମସ୍ୟା । ଯଥା, ହାତୀର ଚିକିତ୍ସା ଦାୟିତ୍ୱ



Digitized by srujanika@gmail.com



ସେମାନେ ପୋଷ୍ଟରରେ କି ତଥ୍ୟ ରଖିପାରିବେ ତା'ର ଏଗୁଡ଼ିକ କିଛି ନମୁନା । ଏଥିରେ ଆହୁରି ବେଶି କଥା ଯୋଡ଼ି ପୋଷ୍ଟରକୁ ଯେତେ ସମ୍ଭବ ସେତେ ଆଗ୍ରହଜନକ କରିବାକୁ ସେମାନଙ୍କୁ କୁହ ।

ପୋଷ୍ଟରରେ ଲଗାଇବା ପାଇଁ ପୁସ୍ତକାଳୟ ବା ଘରେ ଥିବା ବିଭିନ୍ନ ବନ୍ୟପ୍ରାଣୀ ପତ୍ରିକା ଓ ବହିରୁ ଚିତ୍ର ଖୋଜିବା ପାଇଁ ପିଲାଙ୍କୁ କୁହ । ଯଦି ପୁରୁଣା ପତ୍ରିକା ପାଇବେ ଏବଂ ସେଥିରୁ କାଟିବା ପାଇଁ ଅନୁମତି ମିଳେ, ତେବେ ସେଥିରୁ ଚିତ୍ର କାଟି ସିଧାସଳଖ ଲଗାଇ ପାରିବେ । ନହେଲେ ସେମାନେ ଏଗୁଡ଼ିକର ଫଟୋକପି କରି ପୋଷ୍ଟରରେ ଲଗାଇ ପାରିବେ । ଶ୍ରେଣୀରେ ଭଲ ଚିତ୍ର କରୁଥିବା ପିଲା ଥିଲେ ସେମାନେ ହାତରେ ବି ତାହା ଆଙ୍କି ଦେଇପାରିବେ ।

ପ୍ରସ୍ତୁତ ହୋଇସାରିଲେ ପୋଷ୍ଟରଗୁଡ଼ିକୁ ବୁଲେଟିନ୍ ବୋର୍ଡ଼ରେ ଲଗାଯାଇ ପାରିବ । ହାତୀମେଳାରେ ଏକ ସ୍ୱତନ୍ତ୍ର କୋଣ - କାମରେ ହାତୀ - ବସାଇ ପୋଷ୍ଟର ସବୁ ସେଠାରେ ଦେଖାଯାଇପାରିବ ।

## ପୋଷାହାତୀର ମନକଥା

ଏହି ପରଖରେ ପୋଷା ହାତୀର ମନକଥା ବିଷୟରେ କିଛି ଲେଖିବାକୁ ପିଲାମାନଙ୍କୁ କୁହ । ଏଥିପାଇଁ ପିଲାମାନେ ନିଜକୁ ଗୋଟିଏ ହାତୀ ମନେକରିବେ ଏବଂ ତଳର କୌଣସି କଥା ଉପରେ ନିଜର ଅନୁଭୂତି ଲେଖିବେ । ହାତୀ କେଉଁଠି ରହେ, ହାତୀର ଅନୁଭୂତି, ସେ କ'ଣ କାମ କରେ, ସେ କ'ଣ ଭାବେ, ସେ ତା'ର ବନ୍ଧୁବାନ୍ଧବ ଓ ସାଙ୍ଗସାଥିଙ୍କୁ ଖୋଜୁଥିବ କି, ତା'ର କେହି ସାଙ୍ଗ ଅଛନ୍ତି କି, ତା'ର ଯତ୍ନ ଭଲରେ ନିଆଯାଉଛି କି, ସେ ସେହି ଜାଗାରେ ଖୁସିରେ ଅଛି କି ଆଦି ପିଲାମାନେ ଲେଖିପାରିବେ । ତଳ ବିଷୟରୁ ଗୋଟିକ ଉପରେ ପ୍ରତି ପିଲା ୧୦୦ ଶବ୍ଦ ଭିତରେ ଗୋଟିଏ ଅନୁଚ୍ଛେଦ ଲେଖିବେ ।

- ଚିଡ଼ିଆଖାନାରେ ମୋ ଜୀବନ
- ମନ୍ଦିରରେ ଜୀବନ - ଏକ ହାତୀ-ଠାକୁର
- ଜଙ୍ଗଲ ଶିବିରରେ ଜୀବନ
- ସର୍କସରେ ଜୀବନ

## ପୋଷା ହାତୀ ବିଷୟରେ ବିତର୍କ

ହାତୀକୁ ପୋଷା ମନେଇବା ଉଚିତ କି ନୁହେଁ - ଏହି ବିଷୟରେ ଏକ ବିତର୍କ ଚଳାଯାଇପାରେ ।

କେତେ ଲୋକ ବିଶ୍ୱାସ କରନ୍ତି ଯେ କେବଳ ହାତୀ ନୁହେଁ, କୌଣସି ଜୀବଙ୍କୁ ବି ପୋଷା ମନାଇବା ଉଚିତ ନୁହେଁ । କାରଣ ପୃଥିବୀରେ ପ୍ରତି ଜୀବର ସ୍ୱାଧୀନ ଭାବରେ ଚଳିବାର ଅଧିକାର ରହିଛି । ଆଉ କେତେକ ବିଶ୍ୱାସ କରନ୍ତି ଯେ ହାତୀକୁ ପୋଷା ନମନାଇଲେ ଆମେ ତା'ର ଭବିଷ୍ୟତକୁ ସୁରକ୍ଷିତ ରଖିପାରିବା ନାହିଁ । ବରଂ ଜଙ୍ଗଲରେ ତା'ର ବିଲୋପ ପାଇଁ ବାଟ ଖୋଲିଯିବ । ଭାରତରେ ହାତୀ ଆମ ପରମ୍ପରାର ଏକ ଅଂଶ ହୋଇଥିବାରୁ ତାଙ୍କୁ ବେଶ୍ ଉଚ୍ଚ ଆସନ ଦିଆଯାଏ ଏବଂ ବହୁତ ସ୍ନେହ ଓ ସମ୍ମାନ କରାଯାଏ । ଏହି ଲୋକମାନେ ବିଶ୍ୱାସ କରନ୍ତି ଯେ ହାତୀକୁ ପୋଷା ମନାଇଲେ ବି ତା ପ୍ରତି ଦୟା କରିବା ଏବଂ ତା'ର ଯତ୍ନ ନେବା ବହୁତ ଗୁରୁତ୍ୱପୂର୍ଣ୍ଣ ।

ଜଙ୍ଗଲ ଶିବିର ଏବଂ ମନ୍ଦିରରେ ଦେଖିବା କଥା ଯେପରି ହାତୀର ଯତ୍ନ ନିଆଯାଉଛି, ସମସ୍ତେ ତାଙ୍କୁ ଭଲ ପାଉଛନ୍ତି, ସମ୍ମାନ ଦେଖାଉଛନ୍ତି, ଉତ୍ତମ ପୁଷ୍ଟିକର ଖାଦ୍ୟ ଦିଆଯାଉଛି, ଅଯଥାରେ ବହୁତ କାମରେ ଲଗାଯାଉ ନାହିଁ ।

ପୋଷା ହାତୀର ଅନେକ ଯତ୍ନ ଦରକାର । ସକାଳ ଓ ସନ୍ଧ୍ୟାର ଥଣ୍ଡା ସମୟରେ ସୁସ୍ଥ ହାତୀ ୬ରୁ ୭ ଘଣ୍ଟା କାମ କରିପାରେ । କିନ୍ତୁ ହାତୀକୁ ଏକାଦିକ୍ରମେ ତିନି ଘଣ୍ଟାରୁ ବେଶି ସମୟ ପାଇଁ କଠିନ କାମରେ ଲଗାଯିବା ଉଚିତ ନୁହେଁ । ହାତୀ ଜିନିଷ ବୋହିକରି ଦିନକୁ ୧୬ କି.ମି.ରୁ ଅଧିକା ବାଟ ଚାଲିବା ଉଚିତ ନୁହେଁ ଏବଂ ଟାଣ ଖରାରୁ ତାକୁ ରକ୍ଷା କରିବା ଦରକାର ।

ହାତୀ ପାଇଁ ସ୍ୱତନ୍ତ୍ର ଘର ବା ହାତୀଶାଳ ତିଆରି କରିବା ଦରକାର । ଏଗୁଡ଼ିକ ଇଟାରେ ଏବଂ ପାଣି ଗଡ଼ିଯିବା ପାଇଁ ବେଶ୍ ଉଚ୍ଚରେ ହେବା ଉଚିତ । ଉପରେ ଟାଇଲ ବା ଛପରର ଛାତ ମଧ୍ୟ ତିଆରି କରିବା ଦରକାର । ହାତୀଶାଳରେ ସୂର୍ଯ୍ୟକିରଣ ଯେପରି ସିଧାସଳଖ ପଡୁନଥିବ ତାହା ମଧ୍ୟ ଦେଖିବା ଦରକାର ।

## କବିତା

ତଳର କବିତା ବା ସେହିଭଳି ଅନ୍ୟ କିଛି ପିଲାଙ୍କ ଆଗରେ ପଢ଼ି ଆଲୋଚନା କରାଯାଇପାରିବ ।

### *ସର୍କସର ହାତୀମାନେ*

କ'ଣ ସେ ଭାବୁଛନ୍ତି ?<br>
ସର୍କସର ହାତୀମାନେ,<br>
ରାତି ପରେ ରାତି<br>
ଖେଳ ଦେଖାଇଲା ବେଳେ ?

କିନ୍ତୁ ଏହା କ'ଣ ଠିକ୍ ?<br>
ସେଠାରେ କ'ଣ ତାଙ୍କ ରହିବାର କଥା ?<br>
ବନ୍ଦୀ ତାଙ୍କୁ କରିବା କି ଠିକ୍ ?<br>
- ଉନ୍ ଫୋରଷ୍ଟର

ଇଚ୍ଛା କରନ୍ତି କି ସିଏ<br>
ଥା'ନ୍ତେ କି ଆହା,<br>
ଦୂରେ କାହିଁ ସବୁଭରା ଜଙ୍ଗଲରେ ?

ଯେଉଁଠି ସେ ମନଇଚ୍ଛା ବୁଲନ୍ତେ ଘୁରନ୍ତେ<br>
ଖା'ନ୍ତେ ଭରି ତାଙ୍କ ପେଟ<br>
ମଣିଷର ଅଦେଖା ଦୂରରେ ?

ଏତେ ଭଦ୍ର ଜୀବ ସେ ବିଶାଳ<br>
ଖେଳ ଯେବେ ଦେଖାନ୍ତି ତାଙ୍କର<br>
ଖୁସିରେ ପିଲାଏ ରହିଥା'ନ୍ତି ଚାହିଁ ।





Digitized by srujanika@gmail.com

# ତଥ୍ୟ ଭଣ୍ଡାର

## ହାତୀ ଧରା କୌଶଳ

### ଖାତ ଖୋଳି

ଏହି ଧାରାରେ ଭୂମିରେ ସ୍ୱତନ୍ତ୍ର ଧରଣର ଖାତ ଖୋଳାଯାଏ । ଗୋଟିଏ ହାତୀକୁ ଧରି ରଖିବା ପାଇଁ ଯେତିକି ବଡ଼ ଦରକାର ଏହି ଖାତଗୁଡ଼ିକ ସେତିକି ଲମ୍ବା ଓ ଗଭୀର ହୋଇଥାଏ । ଖାତଗୁଡ଼ିକ ତଳ ଆଡ଼କୁ ଗୋଜିଆ ହୋଇଥାଏ । ଫଳରେ ହାତୀ ତାହା ଭିତରେ ପଡ଼ିଗଲେ ତା'ର ଗୋଡ଼ଗୁଡ଼ିକ ଜାକି ହୋଇଯାଏ । ଦେଶର ବିଭିନ୍ନ ଅଞ୍ଚଳର ଏହି ଖାତର ଆକୃତି ଅଲଗା ଅଲଗା ହୋଇଥାଏ - ତାମିଲନାଡୁରେ ତାହା ଗୋଲ ଏବଂ କେରଳରେ ବର୍ଗାକାର କରାଯାଏ । ଏହି ଧାରାରେ ଧରା ଯାଇଥିବା ହାତୀ ପ୍ରାୟ ଆଘାତ ପାଏ ଏବଂ କାମ କରିପାରେ ନାହିଁ ।

### ଫାଶ ବସାଇବା

ଫାଶ ବସାଇବା ହାତୀ ଧରିବାର ଆଉ ଏକ କୌଶଳ । ଆଗରୁ ବାଛିକରି କୌଣସି ନିର୍ଦ୍ଦିଷ୍ଟ ହାତୀକୁ ଏହି କୌଶଳରେ ଧରିହୁଏ । ଏହି କୌଶଳରେ ମାଟି ଉପରେ ବା ମୁଣ୍ଡ ଉଚ୍ଚତାରେ ଲତା ସବୁ ଛନ୍ଦି ବା ଫୁଗୁଲା ଗଣ୍ଠି ପକାଇ ରଖାଯାଇଥାଏ । ଦରକାର ବେଳେ ଏଗୁଡ଼ିକୁ ଟାଣି ଭିଡ଼ି ଦିଆଯାଏ । ଏହି କୌଶଳରେ ଧରା ହୋଇଥିବା ହାତୀକୁ ତା'ର ନୂଆ ଘରକୁ ନେବା ପାଇଁ ଗଛରେ ବାନ୍ଧି ଛାଡ଼ି ଦିଆଯାଏ । ଏହି ଉପାୟରେ ସବୁଠୁ ବଡ଼ ବିପଦ ହେଉଛି ଏଥିରେ ହାତୀର ଶୁଣ୍ଢ ଆଘାତ ପାଇପାରେ ।

### ହାତୀ ଖେଦା

ଏହି କୌଶଳଟି ସବୁଠାରୁ ବେଶୀ ବ୍ୟବହାର କରାଯାଏ । ଏଥିରେ ଦଳେ ହାତୀଙ୍କୁ ଅଡ଼େଇ ନେଇ ଗୋଟିଏ ଅଡ଼ା ଭିତରେ ପୂରାଇ ଦିଆଯାଏ ଏବଂ ଧରାଯାଏ । ଖେଦାର ଅର୍ଥ ହେଉଛି ଅଡ଼େଇ ନେବା । କିନ୍ତୁ ଏହି କାମ ପାଇଁ ବଡ଼ ଧରଣର ବ୍ୟବସ୍ଥା କରିବାକୁ ହୁଏ, ତେଣୁ ଏହା ଖର୍ଚ୍ଚବହୁଳ । ଏହା ଏକ ପୁରୁଣା ପାରମ୍ପରିକ ଧାରା ଯାହାର ବ୍ୟବହାର ତୃତୀୟ ଶତାବ୍ଦୀ ବେଳରୁ ଜଣାଇଛି । ୧୮୭୩ରେ ଜି· ପି· ସାଣ୍ଡରସନଙ୍କ ଦ୍ୱାରା ପ୍ରଥମ ଥର ପାଇଁ ଖେଦା କରାଯାଇଥିଲା । ଏଥିରେ ମୋଟରେ ୫୩ଟି ହାତୀ ଧରା ଯାଇଥିଲେ । ହାତୀ ଖେଦା କରିବା ପାଇଁ ଜାନୁଆରୀରୁ ଫେବୃଆରୀ ଭିତରେ ଶୀତଦିନେ ସବୁଠାରୁ ଭଲ ସମୟ । କାରଣ ଏହି ସମୟରେ ଉତ୍ତରପୂର୍ବ ମୌସୁମୀ ବାୟୁ ଛାଡ଼ି ଯାଇଥିବାରୁ ଜଙ୍ଗଲ ବେଶି ଓଦା ନଥାଏ । ଆହୁରି ମଧ୍ୟ ଏହି ସମୟରେ ଥଣ୍ଡା ଥିବାରୁ ହାତୀଙ୍କ ଉପରେ ବେଶି ଚାପ ପଡ଼େନାହିଁ ।

### ମେଲ୍ଲା ଶିଖାର

ହାତୀ ଧରିବା ପାଇଁ ଏହା ଆଉ ଗୋଟିଏ ବାଟ । ଆସାମରେ ଏହା ବହୁତ ଲୋକପ୍ରିୟ । ଏହାର ଅର୍ଥ ହେଉଛି ଅଡ଼ା ନଥାଇ ଖୋଲାରେ ଧରିବା । ଏହା ଗୋଟିଏ ଖେଳ ଭଳି । ହାତୀ ପିଠିରେ ଦଶ ଲୋକ ବସି ଫାଶ ପକାଇ ଅନ୍ୟ ହାତୀ ଧରନ୍ତି । ହାତୀ ଖେଦାର ଏହା ପ୍ରଥା ଓଲଟା ଏବଂ ଖୋଲା ସ୍ଥଳରେ ଏହା କରାଯାଏ । ହାତୀଛୁଆ ଜୋରରେ ଧାଇଁପାରୁ ନଥିବାରୁ ଏହି ବାଟରେ ପ୍ରଥମେ ତାକୁ ଧରାଯାଏ ।



## ହାତୀ ମେଳା

### ସୋନପୁର ମେଳା (ବିହାର)

ଭାରତର ବିଭିନ୍ନ ହାତୀମେଳା ଭିତରୁ ବିହାରର ସୋନପୁରଠାରେ ହେଉଥିବା ମେଳାଟି ସବୁଠାରୁ ବେଶି ଜଣାଶୁଣା । ନଭେମ୍ବର ଆରମ୍ଭରୁ ଡିସେମ୍ବର ପାଏଁ ମାସେ କାଳ ଏହି ବିରାଟ ମେଳା ଚାଲେ । ପାଟନା ସହରର ୨୫ କି·ମି· ଉତ୍ତରକୁ ଗଣ୍ଡକ ଏବଂ ଗଙ୍ଗା ନଦୀର ମିଳନ ସ୍ଥଳରେ ଥିବା ଗାନ୍ଧୀପୋଲ ପାଖରେ ଏହା ହୁଏ ।

ଗୋରୁଗାଈ, ହାତୀ, ଓଟ ଏବଂ ଅନ୍ୟ ଜୀବଙ୍କର କିଣାବିକା ଏଠାରେ ହୁଏ ।

ପ୍ରାୟ ୧୦୦୦ ବର୍ଷର ପୁରୁଣା ଆହୁରି ତିନୋଟି ହାତୀମେଳା ରହିଛି । ଏପରିକି ଆଜି ବି ଏହି ମେଳାରେ ହାତୀ କିଣାବିକା ହୁଏ । ଏଗୁଡ଼ିକ ହେଲା - ଜାନୁଆରୀ ମାସରେ ହେଉଥିବା ଖାଗ୍ରା ମେଳା, ମାର୍ଚ୍ଚରେ ହେଉଥିବା ସିମେଶ୍ୱର ମେଳା ଏବଂ ଏପ୍ରିଲରେ ହେଉଥିବା ନକମର୍ଦ ମେଳା ।



Digitized by srujanika@gmail.com

## ଭାରତରେ ପୋଷା ହାତୀ (ଡିସେମ୍ବର ୨୦୦୦)

| ଅଞ୍ଚଳ | ରାଜ୍ୟ | ସଂଖ୍ୟା | ଅଞ୍ଚଳରେ ମୋଟ |
|---|---|---|---|
| ଉତ୍ତର-ପୂର୍ବ | ଆସାମ | ୧୨୪୩ - ୧୨୯୦ | ୧୯୦୩ - ୧୯୭୦ |
| | ଅରୁଣାଚଳ ପ୍ରଦେଶ | ୪୬୫ - ୪୮୦ | |
| | ମେଘାଳୟ | ୧୪ - ୪୫ | |
| | ନାଗାଲାଣ୍ଡ | ୬ | |
| | ତ୍ରିପୁରା | ୩୪ - ୫୦ | |
| ପୂର୍ବ | ବିହାର | ୭୬ - ୯୨ | ୨୦୯ - ୨୫୦ |
| | ଝାଡ଼ଖଣ୍ଡ | ୧୪ - ୨୦ | |
| | ଓଡ଼ିଶା | ୮ | |
| | ପଶ୍ଚିମବଙ୍ଗ | ୧୧୦ - ୧୨୦ | |
| ଉତ୍ତର | ଉତ୍ତରପ୍ରଦେଶ | ୧୧୪ - ୧୫୦ | ୨୭୧ - ୩୦୦ |
| | ଉତ୍ତରାଞ୍ଚଳ | ୧୮ - ୨୨ | |
| | ଦିଲ୍ଲୀ | ୩୧ | |
| | ପଞ୍ଜାବ | ୧୭ | |
| | ରାଜସ୍ଥାନ | ୯୦ | |
| ପଶ୍ଚିମ | ଗୁଜୁରାଟ | ୨ | ୭୯ - ୯୨ |
| | ମହାରାଷ୍ଟ୍ର | ୨୦ - ୨୬ | |
| | ମଧ୍ୟପ୍ରଦେଶ | ୪୩ - ୬୦ | |
| | ଗୋଆ | ୨ | |
| | ଦାଦ୍ରା - ନଗର ହାଭେଳି | ୨ | |
| ଦକ୍ଷିଣ | ଆନ୍ଧ୍ରପ୍ରଦେଶ | ୨୦ - ୨୪ | ୮୯୦ - ୯୨୦ |
| | କର୍ଣ୍ଣାଟକ | ୧୦୧ - ୧୧୪ | |
| | କେରଳ | ୬୧୨ - ୬୩୪ | |
| | ତାମିଲନାଡୁ | ୧୨୭ - ୧୫୪ | |
| ଦ୍ୱୀପ ସମୂହ | ଆଣ୍ଡାମାନ ଓ ନିକୋବର | ୭୮ | ୭୮ |
| **ମୋଟ** | | | **୩୫୦୦ - ୩୬୦୦** |

ଉତ୍ସ: ବିସ୍ତ, ଏସ୍. ଏସ୍., *ଆନ୍ ଓଭରଭିଉ ଅଫ୍ ଏଲିଫାଣ୍ଟ କନ୍‌ଜରଭେସନ ଇନ୍ ଇଣ୍ଡିଆ: ନାସନାଲ ସିମ୍ପୋଜିଅମ୍ ଅନ୍ ଏଲିଫାଣ୍ଟ କନ୍‌ଜରଭେସନ, ମାନେଜ୍‌ମେଣ୍ଟ ଆଣ୍ଡ ରିସର୍ଚ୍ଚ*, ହରଦ୍ୱାର, ୨୦୦୧



Digitized by srujanika@gmail.com

# ହାତୀକୁ ଜାଣିବା

**ପିଲା ହାତୀ ବିଷୟରେ ନିଜର ଜ୍ଞାନକୁ ପରଖିବ ।**

| | |
|---|---|
| *ଉଦ୍ଦେଶ୍ୟ* | **ପିଲାଙ୍କୁ ସାହାଯ୍ୟ କରିବ**<br>• **ହାତୀ ବିଷୟରେ ନିଜର ଜ୍ଞାନକୁ ଜାଣିବାରେ**<br>• **ହାତୀକୁ ନେଇଥିବା କିଛି ସାଧାରଣ ଭୁଲ ଧାରଣା ବଦଳାଇବାରେ** |
| *ସ୍ତର* | **ମାଧ୍ୟମିକ** |
| *ବିଷୟ* | **ବିଜ୍ଞାନ, ଭାଷା** |
| *ଦଳର ଆକାର* | **ଜଣିକିଆ** |
| *ସ୍ଥାନ* | **ଶ୍ରେଣୀଗୃହ ଭିତରେ** |
| *ସମୟ ଅବଧି* | **୩୦ ମିନିଟ** |
| *ସାମଗ୍ରୀ* | **ଲେଖିବା ପାଇଁ କାଗଜ, କଲମ** |

ପିଲାଙ୍କୁ କୁହ ଯେ ହାତୀ ବିଷୟରେ ସେମାନେ କେତେ ଜାଣିଛନ୍ତି ତାହା ସେମାନେ ନିଜକୁ ନିଜେ ପରୀକ୍ଷା କରି ଜାଣିବେ ।

## ପରଖର ଧାରା

ତଳେ ଥିବା "ତମେ ତୁମର ହାତୀକୁ ଜାଣ କି ?" କୁଇଜ୍‌ର ପ୍ରଶ୍ନ ସବୁର ଉତ୍ତର ଠିକ ବା ଭୁଲ ତାହା ଲେଖିବା ପାଇଁ ପିଲାମାନଙ୍କୁ କୁହ । ନଚେତ ପ୍ରଶ୍ନଗୁଡ଼ିକ ତମେ ବଡ଼ ପାଟିରେ ପଢ଼ ଏବଂ ଠିକ ବା ଭୁଲ ଲେଖିବା ପାଇଁ ପିଲାଙ୍କୁ କୁହ ।

ପ୍ରତି ପ୍ରଶ୍ନର ଚାରୋଟି ଲେଖାଏଁ ସମ୍ଭାବ୍ୟ ଉତ୍ତର ଦେଇ ଠିକ ଉତ୍ତର ପାଖରେ ଚିହ୍ନ ଦେବାକୁ ବି ସେମାନଙ୍କୁ କହିପାର ।

ପିଲାଙ୍କ ଲେଖା ସରିବା ପରେ ଉତ୍ତରଗୁଡ଼ିକ ଆଲୋଚନା କର । ସେମାନଙ୍କର ଉତ୍ତର କେତେ ଠିକ ହୋଇଛି, ସେଇ ଅନୁସାରେ ସେମାନେ ନିଜକୁ ପରଖିବେ ।

### ମୂଲ୍ୟାଙ୍କନ ଫର୍ଦ୍ଦ

ତୁମ ଉତ୍ତର ସବୁ ଦେଖ ଏବଂ ତଳ ମୂଲ୍ୟାଙ୍କନ ଫର୍ଦ୍ଦ ସହ ମିଳାଇ ନିଜକୁ ନିଜେ ପରୀକ୍ଷା କର ।

| | |
|---|---|
| ୧୫-୧୮ | ବହୁତ ଭଲ । ହାତୀ ଭଳି ବୁଦ୍ଧି ! |
| ୧୦-୧୪ | ଭଲ |
| ୫-୯ | ଆହୁରି ଭଲ କରିପାରିବ |
| ୧-୪ | ହାତୀ ବିଷୟରେ ଆହୁରି ପଢ଼ । |

## ତୁମେ ତୁମର ହାତୀକୁ ଜାଣ କି?

କ· *ମୋଏରିଥେରିଅମ୍* ନାମକ ଘୁଷୁରୀ ଭଳି ଜୀବଠାରୁ ହାତୀର ସୃଷ୍ଟି ।

ଖ· ଦାନ୍ତ ନଥିବା ଏସୀୟ ଅଣ୍ଡିରା ହାତୀକୁ ଚିକନା କୁହାଯାଏ ।

ଗ· ଏସୀୟ ହାତୀର ଉଚ୍ଚତା ଆଫ୍ରିକୀୟ ହାତୀଠାରୁ ଅଧିକ ।

ଘ· ଏସୀୟ ହାତୀ ତା'ର ଖାଦ୍ୟ ଚାହିଦା ପୂରଣ ପାଇଁ ଦୁଇ ଘଣ୍ଟା ଖାଏ ।

ଙ· ଭାରତରେ ଉତ୍ତରପ୍ରଦେଶରେ ସବୁଠାରୁ ଅଧିକ ସଂଖ୍ୟକ ଏସୀୟ ହାତୀ ଅଛନ୍ତି ।

ଚ· ଉଭୟ ମାଈ ଓ ଅଣ୍ଡିରା ଏସୀୟ ହାତୀର ଲମ୍ବା ଦାନ୍ତ ଥାଏ ।

ଛ· ଏବେ ଥିବା ପ୍ରାୟ ୫୦,୦୦୦ ଏସୀୟ ହାତୀ ଭିତରୁ ଭାରତରେ ପ୍ରାୟ ଅଧା ଅଛନ୍ତି ।

ଜ· ଭାରତରେ ହାତୀଦାନ୍ତ ଓ ସେଥିରେ ତିଆରି ଜିନିଷର କିଣାବିକା ବେଆଇନ ।

ଝ· ହାତୀର ମଳରୁ ତାଙ୍କ ସଂଖ୍ୟା ଗଣାଯାଏ ।

ଞ· ଆଫ୍ରିକୀୟ ହାତୀର କାନ ଏସୀୟ ହାତୀର କାନର ଚାରିଗୁଣ ।

ଟ· ଏସୀୟ ହାତୀର ଉଚ୍ଚତା ତା'ର ଆଗ ଗୋଡ଼ର ଗୋଲେଇର ପ୍ରାୟ ଦୁଇଗୁଣ ।

ଠ· ହାତୀ ଦଳରେ ଅଣ୍ଡିରା ହାତୀ ଦଳର ମୁଖ୍ୟ ଥାଏ ଏବଂ ସେ ଅନ୍ୟ ମାଈ ହାତୀ, ଛୁଆମାନଙ୍କୁ ରକ୍ଷା କରେ ।

ଡ· ଏସୀୟ ହାତୀର ଦାନ୍ତ ସାରା ଜୀବନ ବଢୁଥାଏ ।

ଢ· ଏସୀୟ ହାତୀଛୁଆ ମା' ପେଟ ଭିତରେ ୧୨ ମାସ ରହେ ।

ଣ· ଭାରତରେ ହାତୀ ସଂରକ୍ଷଣ ପାଇଁ ୧୯୯୨ ମସିହାରେ ହାତୀ ପ୍ରକଳ୍ପ ଆରମ୍ଭ କରାଯାଇଛି ।

ତ· ସବୁଦିନ ଗାଧୋଇବା ପରେ ଧୂଳିରେ ଗଡ଼ିବା ହାତୀର ଅଭ୍ୟାସ ।

ଥ· ଗୋଟିଏ ବୟସ୍କ ହାତୀର ମସ୍ତିଷ୍କର ଓଜନ ପ୍ରାୟ ୫ କି.ଗ୍ରା. ।

ଦ· ହାତୀର ହୃତପିଣ୍ଡ ତା' ଦେହ ଓଜନର ଶତକଡ଼ା ପ୍ରାୟ ଦୁଇ ଭାଗ ।



Digitized by srujanika@gmail.com

# ତଥ୍ୟ ଭଣ୍ଡାର

## ଉତ୍ତର

କ· ଠିକ୍ - ପ୍ରାୟ ପାଞ୍ଚ କୋଟି ବର୍ଷ ପୂର୍ବେ ଘୁଷୁରୀ ଭଳି ଜୀବ ମୋଏରିଥେରିଅମ ଠାରୁ ହାତୀ ସୃଷ୍ଟି ।

ଖ· ଭୁଲ - ଦାନ୍ତ ନଥିବା ଏସୀୟ ଅଣ୍ଡିରା ହାତୀକୁ ମାଖନା କୁହାଯାଏ ।

ଗ· ଭୁଲ - ଏସୀୟ ହାତୀର କାନ୍ଧ ଉଚ୍ଚତା ହେଉଛି ୩·୨ ମିଟର । କିନ୍ତୁ ତା'ଠାରୁ ବଡ଼ ଆଫ୍ରିକୀୟ ହାତୀର କାନ୍ଧଠାରେ ଉଚ୍ଚତା ପ୍ରାୟ ୪ ମିଟର ।

ଘ· ଭୁଲ - ଏସୀୟ ହାତୀ ଅଧିକାଂଶ ସମୟ ଖାଇବାରେ କଟାଏ । ସେମାନେ ୧୨ରୁ ୧୬ ଘଣ୍ଟା ଖାଇବାରେ କଟାଇଥାନ୍ତି ।

ଙ· ଭୁଲ - ବେଶି ସଂଖ୍ୟାର ଏସୀୟ ହାତୀ ଭାରତର ଦକ୍ଷିଣରେ କେରଳ, କର୍ଣ୍ଣାଟକ, ତାମିଲନାଡୁ ଏବଂ ଉତ୍ତରପୂର୍ବରେ ମେଘାଳୟ ଓ ଆସାମରେ ଦେଖାଯା'ନ୍ତି ।

ଚ· ଭୁଲ - ଏସୀୟ ମାଈ ହାତୀର ଲମ୍ବାଦାନ୍ତ ନଥାଏ । କିନ୍ତୁ ଉଭୟ ମାଈ ଓ ଅଣ୍ଡିରା ଆଫ୍ରିକୀୟ ହାତୀଙ୍କର ଲମ୍ବାଦାନ୍ତ ଥାଏ ।

ଛ· ଠିକ୍ - ପୃଥିବୀରେ ପ୍ରାୟ ୫୦,୦୦୦ ଏସୀୟ ହାତୀ ଦେଖାଯାନ୍ତି । ତା' ଭିତରୁ ୨୩,୦୦୦ରୁ ୨୮,୦୦୦ ହାତୀ ଭାରତରେ ଦେଖାଯାନ୍ତି ।

ଜ· ଠିକ୍ - ଭାରତରେ ହାତୀଦାନ୍ତର ବ୍ୟବସାୟ ବେଆଇନ ଘୋଷିତ ହୋଇଛି ।

ଝ· ଠିକ୍ - ହାତୀ ଗଣନାର ସବୁଠାରୁ ଲୋକପ୍ରିୟ ପଦ୍ଧତି ହେଉଛି ସିଧାସଳଖ ସେମାନଙ୍କ ସଂଖ୍ୟା ଗଣିବା । ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳରେ ପଡ଼ିଥିବା ହାତୀ ମଳକୁ ଗଣି ମଧ୍ୟ ହାତୀ ସଂଖ୍ୟା ହିସାବ କରାଯାଏ । କିନ୍ତୁ ଏହି ଧାରାର ବିଶେଷ ବ୍ୟବହାର କରାଯାଏ ନାହିଁ ।

ଞ· ଠିକ୍ - ଆଫ୍ରିକୀୟ ହାତୀର କାନ ଆକାରରେ ଏସୀୟ ହାତୀର କାନଠାରୁ ବଡ଼ । ହାତୀ କେତେ ସମୟ ଖରାରେ ରହେ ସେଇ ଅନୁସାରେ ତା'ର କାନ ସାନ ବଡ଼ ହୋଇଥାଏ । ଆଫ୍ରିକୀୟ ହାତୀ ବିଷୁବ ମଣ୍ଡଳ ପାଖ ତୃଣଭୂମିରେ ଅଧିକ ଖରାରେ ରହେ । ସେଥିପାଇଁ ଦେହର ତାପମାତ୍ରା ନିୟନ୍ତ୍ରଣ କରିବା ପାଇଁ ତା'ର ବଡ଼ ବଡ଼ କାନ ରହିଛି ।

ଟ· ଠିକ୍ - ଏସୀୟ ହାତୀର ଉଚ୍ଚତା ମାପିବା ପାଇଁ ଏହା ଗୋଟିଏ ଭଲ ବାଟ ।

ଠ· ଭୁଲ - ଅଣ୍ଡିରା ହାତୀ ଦଳର ମୁଖ୍ୟ ନଥାଏ । ପ୍ରାୟ ୧୫ ବର୍ଷର ହେଲାବେଳକୁ ଅଣ୍ଡିରା ହାତୀ ଦଳ ଛାଡ଼ି ଏକା ରହେ । ହାତୀ ଦଳର ମୁଖ୍ୟ ସବୁବେଳେ ଜଣେ ବୟସ୍କା ମାଈ ହାତୀ ହୁଏ ।

ଡ· ଠିକ୍ - ହାତୀର ଜୀବନସାରା ତା'ର ଦାନ୍ତ ବର୍ଷକୁ ପ୍ରାୟ ୧୭ ସେ·ମି· ହାରରେ ବଢ଼ିଥାଏ ।

ଢ· ଭୁଲ - ଏସୀୟ ମାଈ ହାତୀ ପେଟରେ ଛୁଆ ୧୮-୨୨ ମାସ ଯାଏଁ ବଢ଼େ । ଏହା ସବୁ ସ୍ତନ୍ୟପାୟୀଙ୍କ ଭିତରେ ସବୁଠାରୁ ଅଧିକ ।

ଣ· ଠିକ୍ - ହାତୀ ସଂରକ୍ଷଣ ଦିଗରେ ଭାରତ ସରକାର ନେଇଥିବା ପଦକ୍ଷେପ ଭିତରୁ ହାତୀ ପ୍ରକଳ୍ପ ଗୋଟିଏ । ଏହି ପ୍ରକଳ୍ପ ୧୯୯୨ରେ ଆରମ୍ଭ କରାଯାଇଥିଲା ।

ତ· ଠିକ୍ - ପାଣିରେ ଗାଧୋଇ ସାରିବା ପରେ ହାତୀ ତା' ଦେହସାରା ଧୂଳି ବୋଳିହୁଏ । ଏହା ତାଙ୍କୁ ତାପ ଏବଂ କୀଟ ଦାଉରୁ ରକ୍ଷା କରେ ।

ଥ· ଠିକ୍ - ଗୋଟିଏ ବୟସ୍କ ହାତୀର ମସ୍ତିଷ୍କର ଓଜନ ପ୍ରାୟ ୪·୫ରୁ ୫·୫ କେ·ଜି· ।

ଦ· ଭୁଲ - ହାତୀର ହୃତପିଣ୍ଡ ବହୁତ ବଡ଼ - ଓଜନରେ ୧୨ରୁ ୨୧ କି·ଗ୍ରା· । କିନ୍ତୁ ହାତୀର ଦେହ ଓଜନର ଶତକଡ଼ା ମାତ୍ର ୦·୫ ଭାଗ ।

## ଧଳା ହାତୀ

ଧଳା ହାତୀ ! ଏଗୁଡ଼ିକ ସତରେ କ'ଣ ଧଳା ? ବା ସେମାନେ ଧବଳି ? ଭାରତରେ ଧଳା ହାତୀ ଅଛନ୍ତି କି ? ଧଳା ହାତୀ ସହ ଅନେକ ଗପ ଏବଂ କିମ୍ବଦନ୍ତୀ ଯୋଡ଼ା । ଚାଲ ଠିକ୍ କ'ଣ ଦେଖିବା । ଧଳା ହାତୀ ଭାରତରେ ଦେଖାଯାଏ ନାହିଁ । ଆଜିକାଲି ଏମାନେ ମୁଖ୍ୟତଃ ଥାଇଲାଣ୍ଡ ଏବଂ ଲାଓସ ଭଳି ଦକ୍ଷିଣପୂର୍ବ ଏସୀୟ ଦେଶରେ ଅଛନ୍ତି । କିଛି ବର୍ଷ ଆଗରୁ ମିଆଁମାରରେ ବି ଧଳା ହାତୀ ଥିଲେ । କିନ୍ତୁ ସେଠିକାର ଶେଷ ଧଳା ହାତୀଟି ୧୯୬୨ରେ ଜନ୍ମ ହେଇ ୧୯୭୨ରେ ମରିଗଲା ।

ବିଶ୍ୱାସ କରାଯାଏ ଯେ ହାତୀର ବୟସ ସହିତ ତା'ର ଧଳା ରଙ୍ଗ ବି ବଢ଼େ । ଆଜି ବି ଧଳା ହାତୀ ବିଷୟରେ *କୋଜାଲା* ସବୁଠାରୁ ଭଲ ବହି ଭାବରେ ଧରାଯାଏ । ସାଧାରଣ ହାତୀଠାରୁ ଧଳା ହାତୀର ଫରକ ଥିବା ଗୁଣଗୁଡ଼ିକ ହେଉଛି -

- ଏହାର ଚମଡ଼ାର ରଙ୍ଗ ଫିକା ଧୂସର ।
- ଆଖି ପାଖ ଅଞ୍ଚଳ ଗୋଲାପୀ ରଙ୍ଗର ।
- ପାଟିର ତାଳୁ ବି ଗୋଲାପୀ ରଙ୍ଗର ।
- ଗୋଡ଼ ନଖର ରଙ୍ଗ ଧଳା ବା ଗୋଲାପୀ ।
- ଜନନାଙ୍ଗ ବି ଗୋଲାପୀ ରଙ୍ଗର ।
- ଗୋଟିଏ ଲୋମକୂପରୁ ଦୁଇରୁ ଅଧିକା ରୁମ ବାହାରେ । କିନ୍ତୁ ସାଧାରଣ ହାତୀଙ୍କର ଗୋଟିଏ ଲୋମକୂପରୁ ଗୋଟିଏ ମାତ୍ର ରୁମ ବାହାରେ ।
- ଗାଲରେ କଳା ଲମ୍ବାଦାନ୍ତ ଥାଇପାରେ ।

ଥାଇଲାଣ୍ଡରେ ଧଳା ହାତୀକୁ ନେଇ ଅନେକ ଗପ ରହିଛି । ବିଶ୍ୱାସ ରହିଛି ଯେ ଧଳା ହାତୀ କେବଳ ରାଜାଙ୍କ ସମ୍ମାନ ବଢ଼ାଏ ନାହିଁ, ବରଂ ରାଜ୍ୟରେ ଶାନ୍ତି ଏବଂ ସମୃଦ୍ଧି ଆଣେ । ଆହୁରି ବି ବିଶ୍ୱାସ କରାଯାଏ ଯେ ଯେଉଁ ରାଜାଙ୍କର ଧଳା ହାତୀ ଅଛି, ସେ ଚକ୍ରବର୍ତ୍ତୀ ହେବେ । ଥାଇଲାଣ୍ଡରେ ଧଳା ହାତୀକୁ ବହୁତ ସମ୍ମାନ ଦିଆଯାଏ ଏବଂ ଆଇନ ମୁଖ୍ୟର ସ୍ଥାନରେ ବସାଯାଏ । ଧଳା ହାତୀଟିଏ ମରିଗଲେ ସମସ୍ତେ ସେଥିପ୍ରତି ଦୃଷ୍ଟି ଦିଅନ୍ତି ଏବଂ ମାହୁନ୍ତକୁ ଅଭିଯୁକ୍ତ କରାଯାଇପାରେ । ଥାଇଲାଣ୍ଡରେ କୌଣସି ଲୋକ ଧଳା ହାତୀଟିଏ ଖୋଜିପାଇଲେ ତା'କୁ ବହୁତ ସମ୍ମାନିତ କରାଯାଏ, ପୁରସ୍କୃତ ବି କରାଯାଏ । କିନ୍ତୁ ଏଥିପାଇଁ ରାଜାଙ୍କ ପଶୁଡାକ୍ତର ହାତୀଟିକୁ ଭଲକରି ପରୀକ୍ଷା କରନ୍ତି । ଏଥିପାଇଁ ପ୍ରଥମେ ହାତୀକୁ ତେନ୍ତୁଳି ପାଣିରେ ଗାଧୋଇ ଦିଆଯାଏ । ଏହା ଫଳରେ ହାତୀର ପ୍ରକୃତ ରଙ୍ଗ ଜଣାପଡ଼େ ।



Digitized by srujanika@gmail.com

# ଅଭିନୟ କରି ଦେଖାଅ !

କେବଳ କଥାରେ ନୁହେଁ, କାମ ମାଧ୍ୟମରେ ହାତୀ ବିଷୟରେ କଥା ହୁଅ ।

| | |
|---|---|
| ଉଦ୍ଦେଶ୍ୟ | ହାତୀ ବିଷୟରେ ପିଲାଙ୍କର ଶବ୍ଦ ଜ୍ଞାନ ବଢ଼ାଇବା |
| ସ୍ତର | ମାଧ୍ୟମିକ |
| ବିଷୟ | ବିଜ୍ଞାନ, ଅଭିନୟ |
| ଦଳର ଆକାର | ପାଞ୍ଚଜଣିଆ ଦଳ |
| ସ୍ଥାନ | ଶ୍ରେଣୀଗୃହ ଭିତରେ |
| ସମୟ ଅବଧି | ୪୫ ମିନିଟ |
| ସାମଗ୍ରୀ | ଛୋଟ କାର୍ଡ଼, କାର୍ଡ଼ ରଖିବା ପାଇଁ ଡାଗା |

ମୂକାଭିନୟ ଅର୍ଥ କେବଳ ମୁହଁ ଏବଂ ଅଙ୍ଗଭଙ୍ଗୀ ମାଧ୍ୟମରେ ଗପ କହିବା । ଏହାକୁ ଲଗାଇ ଆମେ ଏକ ପ୍ରକାରର ଖେଳ ଖେଳିବା । ଏହି ଖେଳର ନାଁ ହେଉଛି ମୂକ ପ୍ରହେଳିକା ବା *ଡମ୍ ସରେଡ୍* ।

ଏହି କାମ ମାଧ୍ୟମରେ ହାତୀ ସମ୍ବନ୍ଧୀୟ ଶବ୍ଦ ସବୁ ବୁଝିବାରେ ଏବଂ ଶିଖିବାରେ ମଜା ଲାଗିବ ଏବଂ ପିଲାଙ୍କ ଅଭିନୟ ଦକ୍ଷତା ମଧ୍ୟ ବଢ଼ିବ ।

## କାମ ଆରମ୍ଭ ଆଗରୁ

ପ୍ରଥମେ ହାତୀ ସମ୍ବନ୍ଧୀୟ ଶବ୍ଦ ସବୁର ଏକ ତାଲିକା କର । ତଳ ତାଲିକାରୁ କିଛି ଶବ୍ଦ ବାଛିପାର ବା ଏଥିରେ ଆହୁରି ଅନ୍ୟ ଶବ୍ଦ ମିଶାଇପାର । ୩୦ ଜଣିଆ ଶ୍ରେଣୀକୁ ୬ଟି ପାଞ୍ଚଜଣିଆ ଦଳରେ ଭାଗ କର, ୩ ଥର ଖେଳିବା ପାଇଁ ପ୍ରାୟ ୧୮ଟି ଶବ୍ଦ ବାଛି ରଖ ।

ଛୋଟ କାଗଜ ଟୁକୁଡ଼ାରେ ଗୋଟିଏ କରି ଶବ୍ଦଗୁଡ଼ିକ ଲେଖିଦିଅ ଏବଂ ଏଗୁଡ଼ିକୁ ଗୋଟିଏ ଛୋଟ ପାତ୍ରରେ ରଖ । ଦରକାର ପଡ଼ିଲେ ଶବ୍ଦଗୁଡ଼ିକର ସଂଜ୍ଞା ବି ସେ କାଗଜରେ ଲେଖିଦେଇପାର ।

ଏହି ଖେଳ ମାଧ୍ୟମରେ କେତେକ ଶବ୍ଦ ସହ ପିଲାମାନଙ୍କର ପରିଚିତି ବଢ଼ିବ ବୋଲି କହିଦିଅ । ଏହି ଶବ୍ଦଗୁଡ଼ିକ ହାତୀ ଏବଂ ତା'ର ଚାଲିଚଳଣ ବୁଝିବାରେ ବହୁତ ଉପଯୋଗୀ ।

## ପରଖର ଧାରା

ପୂରା ଶ୍ରେଣୀକୁ ପାଞ୍ଚଜଣିଆ ଦଳରେ ଭାଗ କର । ପ୍ରତି ଦଳରୁ ଜଣେ ପିଲା ଆସି ଗୋଟିଏ କାଗଜ ଟୁକୁଡ଼ା ନେବ । ସେଥିରେ ଲେଖାଥିବା ଅନୁସାରେ ଅଭିନୟ କରିବ । ଡାଗାରେ ଥିବା ପ୍ରତିଟି କାଗଜ ଟୁକୁଡ଼ାରେ ହାତୀ ସମ୍ବନ୍ଧୀୟ ଲେଖା ହିଁ ରହିଛି ବୋଲି ପିଲାଙ୍କୁ କହିଦିଅ ।

ମୂକାଭିନୟରେ କେବଳ ମୁହଁ ବା ଅଙ୍ଗର ଭଙ୍ଗୀ ଦ୍ୱାରା କୌଣସି କଥା ବା ଗପକୁ ପ୍ରକାଶ କରାଯାଏ ବୋଲି ପିଲାଙ୍କୁ ବୁଝାଇଦିଅ ।

### ଖେଳର ନିୟମ

- ଅଭିନୟ ମାଧ୍ୟମରେ କୁହାଯାଇଥିବା କଥାଟି ଅନୁମାନ କରିବା ପାଇଁ ପ୍ରତି ଦଳକୁ ମାତ୍ର ଏକ ମିନିଟ ସମୟ ଦିଆଯିବ ।
- କୌଣସି ପିଲା କଥା କହିପାରିବ ନାହିଁ । ଯଦି କେହି ପିଲା କଥା କହେ ବା ଶବ୍ଦ ଉଚ୍ଚାରଣ କରେ ତେବେ ତା' ଦଳର ଗୋଟିଏ ପାଳି ଯିବ ।

ଯଦି ପିଲାଟି ଲେଖାଥିବା ଶବ୍ଦଟିକୁ ଅଭିନୟ କରିପାରିବ ଏବଂ ତା' ଦଳ ଏକ ମିନିଟ ଭିତରେ କହିଦେଇ ପାରିବେ ତେବେ ତାଙ୍କ ଦଳ ଗୋଟିଏ ପଏଣ୍ଟ ପାଇବେ । ଦୁଇ ତିନି ଥର ଏହି ଖେଳ ଖେଳାଯାଇ ପାରିବ ।

### ଶବ୍ଦ ତାଲିକା

- ନାରୀମୁଖ୍ୟ
- ବିପନ୍ନ
- ଦଳ
- ଶିକାର
- କାଦୁଅରେ ଲଟପଟ
- ହାତୀ ଦାନ୍ତ
- ଶୋଖାଦ୍ୟ
- ମୋଟା ଚମଡ଼ାର ଜନ୍ତୁ
- ବାସସ୍ଥଳୀ
- ଶୁଣ୍ଢ
- ଚରିବା
- ଅବଶ୍ରାବ୍ୟ

## ସଂପ୍ରସାରଣ/ପରିବର୍ତ୍ତନ

ପିଲାମାନେ ଶବ୍ଦକୁ ବୁଝାଇବା ପାଇଁ ଚିତ୍ର ବି କରିପାରିବେ ।





Digitized by srujanika@gmail.com

# ତଥ୍ୟ ଭଣ୍ଡାର

- **ଜାଦୁଅଘଷା** - କାଦୁଅରେ ଗଡ଼ିବା ।
- **ଚରିବା** - ଗଛ, ବାଉଁଶର ଡାଳ ପତ୍ର ଖାଇବା ।
- **ତୃଣଭୋଜୀ** - ଉଦ୍ଭିଦ ଖାଉଥିବା ଜୀବ ।
- **ସଂରକ୍ଷଣ** - ବୁଦ୍ଧି ବିଚାର ସହ ପ୍ରାକୃତିକ ସମ୍ବଳର ବ୍ୟବହାର ବା ସୁରକ୍ଷା (ହାତୀ କ୍ଷେତ୍ରରେ ତା'କୁ ଶିକାରୀଠାରୁ ରକ୍ଷା କରିବା ଏବଂ ସେମାନଙ୍କ ଆବାସସ୍ଥଳୀ ନଷ୍ଟ ହେବାରୁ ବଞ୍ଚାଇବା) ।
- **ପର୍ଣ୍ଣମୋଚୀ** - ପ୍ରତିବର୍ଷ ପତ୍ରଝଡ଼ା ଦେଉଥିବା ଗଛ ।
- **ନିପୁଣ** - ହାତ କାମରେ ଦକ୍ଷ ।
- **ପୋଷା** - ମଣିଷ ଦ୍ୱାରା ବଶ କରାଯାଇଥିବା ପଶୁ ।
- **ବିପନ୍ନ** - ସବୁଆଡୁ ବା ମୁଖ୍ୟ ଆବାସସ୍ଥଳୀରୁ ଉଭେଇ ଯିବାର ଭୟ ଥିବା ଜୀବଜାତି ।
- **ବିକଶିତ ହେବା** - ବିବର୍ତ୍ତନର ଧାରାରେ ଲମ୍ବା ସମୟ ଧରି ପ୍ରାକୃତିକ ଭାବରେ ବିକଶିତ ହେବା ।
- **ଫଡ଼ ଫଡ଼ ହେବା** - କ୍ରମାଗତ ଭାବରେ ଉପର ତଳ ବା କଡ଼ରୁ କଡ଼ ବୁଲିବା ।
- **ଗୋଚର** - ଉଭୟ ପୋଷା ଏବଂ ଜଙ୍ଗଲୀ ତୃଣଭୋଜୀ ଜୀବଙ୍କ ସବୁଜ ଖାଦ୍ୟ ।
- **ଆବାସସ୍ଥଳୀ** - ହାତୀ ରହୁଥିବାର ପ୍ରାକୃତିକ ଜାଗା ଓ ପରିବେଶ, ଜୀବନ କ୍ଷେତ୍ର (ଲାଇଫ ରେଞ୍ଜ) ଯେଉଁଠି ଖାଦ୍ୟ, ପାଣି, ଆଶ୍ରୟ, ସୁରକ୍ଷିତ ପଳାୟନ ପଥ, ଶୀତଦିନ ପାଇଁ ସୁରକ୍ଷିତ ଜାଗା, ଛୋଟ ଛୁଆଙ୍କୁ ବଢ଼ାଇବା ପାଇଁ ସୁରକ୍ଷିତ ଜାଗା ଏପରିକି ଖେଳିବା ଜାଗା ମଧ୍ୟ ରହିଥାଏ ।
- **ବିଚରଣ ଇଲାକା** - ନିଜର ନିତିଦିନିଆ କାମ ପାଇଁ ଜୀବଟି ଘୁରିବୁଲୁଥିବା ଅଞ୍ଚଳ ।
- **ସ୍ଥୂଳଚର୍ମା** - ମୋଟା ଚମଡ଼ା ଥିବା ଜୀବ ।
- **ଦଳ** - ଏକାଠି ମିଶିକରି ବୁଲାଚଲା ଓ ଖିଆପିଆ କରୁଥିବା ତିନିଚାରିଟି ହାତୀ ପରିବାର ।
- **ଅବଶବ୍ଦ** - ମଣିଷ ଶୁଣିପାରିବାଠାରୁ କମ୍ ଆବୃତ୍ତିର ତରଙ୍ଗରେ ଯାଉଥିବା ଶବ୍ଦ ।
- **ନାରୀମୁଖ୍ୟ** - କୌଣସି ପରିବାର, ଗୋଷ୍ଠୀ ବା ସମୂହର ମୁଖ୍ୟ ଥିବା ନାରୀ ।
- **ଶିକାର** - ମୁଖ୍ୟତଃ ଦାନ୍ତ ପାଇଁ ବେଆଇନ ଭାବରେ ହାତୀକୁ ମାରିବା ।
- **ଶୁଣ୍ଢ** - ନାକ ଓ ଉପର ଓଠର ମିଳିତ ଅଙ୍ଗ ।
- **ହାତୀଦାନ୍ତ** - ହାତୀର ବାହାରି ରହିଥିବା ଲମ୍ବା କର୍ତ୍ତନ ଦାନ୍ତ ଯାହା ଖୋଳିବା, ଗଛର ବକଳ ଛଡ଼ାଇବା, ଆତ୍ମରକ୍ଷା ପାଇଁ କାମରେ ଲାଗୁଥିବା ଅସ୍ତ୍ର ଭଳି ବ୍ୟବହାର ହୁଏ ।





Digitized by srujanika@gmail.com

**ପରଖ**

# ହାତୀ ବିଷୟରେ ଲେଖା

**ବିଭିନ୍ନ ଭାଷାରେ କବିତା, ଗପ ଏବଂ ଲୋକଉକ୍ତି ସଂଗ୍ରହ**

| | |
|---|---|
| *ଉଦ୍ଦେଶ୍ୟ* | **ହାତୀ ଉପରେ ବିଭିନ୍ନ ଭାଷାରେ କବିତା, ଗପ, ଲୋକଉକ୍ତି, ମଜାକଥା ସଂଗ୍ରହ କରିବା ପାଇଁ ପିଲାଙ୍କୁ ଉତ୍ସାହିତ କରିବା** |
| *ସ୍ତର* | **ମାଧ୍ୟମିକ** |
| *ବିଷୟ* | **ଭାଷା** |
| *ଦଳର ଆକାର* | **ଚାରୋଟି ଦଳ** |
| *ସ୍ଥାନ* | **ଘରେ, ଶ୍ରେଣୀଗୃହ ଭିତରେ** |
| *ସମୟ ଅବଧି* | **୩୦ ମିନିଟ** |
| *ସାମଗ୍ରୀ* | **ଲେଖିବା ଜିନିଷ** |

## କାମ ଆରମ୍ଭ ଆଗରୁ

ଏହି କାମ ମାଧ୍ୟମରେ ପିଲାମାନେ ବୁଝିପାରିବେ ଯେ ହାତୀ ଆମ ସଂସ୍କୃତି ଓ ପରମ୍ପରାର ଏକ ଅଂଶ । କବିତା, ଗପ, ଲୋକଉକ୍ତି ସବୁରେ ହାତୀର କଥାରୁ ହାତୀ ଆମ ଜୀବନ ସହ କେତେ ଯୋଡ଼ା ତାହା ପିଲାମାନେ ଜାଣିପାରିବେ ।

## ପରଖର ଧାରା

ହାତୀ ଉପରେ ବିଭିନ୍ନ ଭାଷାରେ କବିତା, ଲୋକଉକ୍ତି, ଗପ, ମଜାକଥା ଆଦି ସଂଗ୍ରହ କରିବା ପାଇଁ ପିଲାଙ୍କୁ କୁହ । ପ୍ରତି ପିଲା ଚେଷ୍ଟା କରି ନିଜ ମାତୃଭାଷାରେ ଏସବୁ ତଥ୍ୟ ସଂଗ୍ରହ କରିବେ । ଏଥିପାଇଁ ସେମାନେ ତାଙ୍କ ବାପା ମା', ଜେଜେ ବାପା, ଜେଜେ ମା'ଙ୍କ ସାହାଯ୍ୟ ନେଇପାରିବେ । ସେମାନେ ତାଙ୍କ ସାଙ୍ଗ, ପଡ଼ୋଶୀଙ୍କ ଠାରୁ ବି ଏସବୁ ସଂଗ୍ରହ କରିପାରିବେ । ପ୍ରତି ପିଲା ଏଗୁଡ଼ିକୁ ପ୍ରଥମେ ମୂଳ ଭାଷାରେ ତା' ପରେ ତା'ର ଭାବାର୍ଥ ଇଂରାଜୀ ବା ସବୁ ପିଲା ବୁଝିପାରୁଥିବା ଏକ ଭାଷାରେ ଲେଖିବେ । ଏଠାରେ ଗୋଟିଏ ନମୁନା ଦିଆଯାଇଛି ।

ତଥ୍ୟ ସଂଗ୍ରହ କରିପାରିବା ପରେ ପିଲା ତାଙ୍କ ହାତୀଖାତା ତିଆରି କରିପାରିବେ । ଏଥିପାଇଁ ପୂରା ଶ୍ରେଣୀକୁ ଚାରୋଟି ଦଳରେ ଭାଗ କର । ପ୍ରତି ଦଳ ତଳ ବିଷୟରୁ ଗୋଟିଏକୁ ନେଇ ତାଙ୍କର ହାତୀଖାତା ତିଆରି କରିବେ ।

- କବିତା
- ଗପ
- ଲୋକଉକ୍ତି
- ମଜାକଥା

ପିଲା ପ୍ରଥମେ ତଥ୍ୟକୁ ମୂଳ ଭାଷାରେ ଲେଖିବେ ଏବଂ ତା'ର ସଠିକ ଇଂରାଜୀ ବା ସେ ରାଜ୍ୟର ଭାଷାରେ ଅନୁବାଦ କରିବେ । ଏହାକୁ ଆହୁରି ଆକର୍ଷଣୀୟ କରିବା ପାଇଁ ସେମାନେ ଏଥିରେ ସୁନ୍ଦର ଚିତ୍ର ଲଗାଇ ପାରିବେ । ପୃଷ୍ଠାର ଚାରିପାଖରେ ଗାର ପକାଇ ତାକୁ ସୁଦୃଶ୍ୟ କରାଯାଇପାରିବ । ପ୍ରତି ଭାଗପାଇଁ ବିଷୟ ଅନୁସାରେ କିଛି ପ୍ରତୀକ ମଧ୍ୟ ଦିଆଯାଇପାରେ ।

ହାତୀ ମେଳାର ପ୍ରଦର୍ଶନ ବିଭାଗରେ ଏହି ହାତୀଖାତା ସବୁ ରଖି ନୂଆ କଥା ବା ଚିତ୍ର ଏଥିରେ ଯୋଡ଼ିବା ପାଇଁ ଦର୍ଶକମାନଙ୍କୁ କୁହାଯାଇ ପାରିବ ।

## ସଂପ୍ରସାରଣ/ପରିବର୍ତ୍ତନ

- ହାତୀ ସମ୍ବନ୍ଧୀୟ କିଛି ଜଣାଶୁଣା ଲୋକଉକ୍ତି ପିଲାଙ୍କୁ ଦେଇ ସେଗୁଡ଼ିକୁ ଖାପଖାଉଥିବା ଚିତ୍ର କରିବା ପାଇଁ କୁହାଯାଇପାରେ ।
- ପିଲାମାନେ ହାତୀ ଚିତ୍ର ଥାଇ ଗୋଟିଏ ଡାକଟିକଟର ନକ୍ସା ତିଆରି କରିପାରିବେ ।

### ପିଲାଙ୍କ ନାନାବାୟା ଗୀତ

ହାତୀଟି କାଳିଆ ଅପଲ ମେଳିଆ
ନ ଜାଣଇ ଖାଲ ଖମା
ଗୋପପୁରେ ଥାଇ ଦୁଧସର ଖାଇ
ହୋଇଛି ଧୂପରଧୁମା
ମୋ ହାତୀ ଝୁଲରେ
ବାଆପାଣି ଖାଇ ଫୁ'ଲ୍‌ରେ

ଝୁଲୁରେ ହାତୀ ଝୁଲୁ
ବାଆ ପାଣି ଖାଇ ଫୁଲୁ
ହାତୀ ବୁଲୁଥାଏ ନଗର ପଗର
କିଆ କଦା ଖାଇବାକୁ
କୁନା ଝୁଲୁଥାଏ ମା'ର କୋଳରେ
ଦୁଧ ଭାତ ଖାଇବାକୁ

### ଲୋକଉକ୍ତି

ହାତୀ ଗଳିଯାଏ
ପିମ୍ପୁଡ଼ି ନଗଳେ ।

ଅର୍ଥ: ବଡ଼ ଭୁଲ ଖସିଯାଏ, କିନ୍ତୁ ଛୋଟ ଛୋଟ କଥା ସବୁକୁ ଧରାଯାଏ ।





Digitized by srujanika@gmail.com

# ଗଣେଶ ଗପ

## ଗଣେଶ କିପରି ହାତୀମୁଣ୍ଡିଆ ଠାକୁର ହେଲେ

କୈଳାଶ ପର୍ବତ ଉପରେ ସବୁଠାରୁ ସମ୍ମାନ ପାଉଥିବା ଠାକୁର ଶିବ ରହୁଥିଲେ । ଏହା ଗୋଟିଏ ସୁନ୍ଦର ଜାଗା । ଶୀତଦିନେ ଏଠାରେ ବରଫ ପଡ଼ି ପୁରା ଧଳା ଟକ ଟକ କରେ । ଆଖି ପାଉଥିବା ପାଏଁ ଖାଲି ବରଫ ଆଉ ବରଫ । ଶାନ୍ତ ପରିବେଶ । ଖରାଦିନେ ବରଫ ତରଳି ଏଠାରୁ ଅନେକ ନଈ ବାହାରେ । ସେଗୁଡ଼ିକ ଗର୍ଜନ କରି ତଳକୁ ବୋହିଯା'ନ୍ତି । ରାତାରାତି ଘାସ ଉଠେ ଓ ଫୁଲ ଫୁଟେ । ତା ପଛେ ପଛେ ହରିଣ, ପାହାଡ଼ି ଛେଳି ଓ ଆହୁରି କେତେ ଛୋଟ ଛୋଟ ଜୀବ ଆସିଯାନ୍ତି । ଚଢ଼େଇ ଶବ୍ଦରେ ଜାଗାଟି ଭରିଯାଏ ।

ଶୀତଦିନର ଶୁନ୍‌ଶାନ୍ କୈଳାସ ଶିବଙ୍କୁ ବହୁତ ଭଲ ଲାଗେ । ତାଙ୍କ ଖୁସିବାସିଆ ସ୍ତ୍ରୀ ପାର୍ବତୀଙ୍କୁ କିନ୍ତୁ ଖରାଦିନ ଭଲ ଲାଗେ । ଶୀତଦିନେ ତାଙ୍କର କେହି ସାଙ୍ଗ ନଥାନ୍ତି । ଜୀବ, ଜନ୍ତୁ, ଚଢ଼େଇ, ସାଙ୍ଗସାଥି, ସ୍ୱର୍ଗ ବା ମର୍ତ୍ତ୍ୟର ବନ୍ଧୁବାନ୍ଧବ କେହି ବି ଆସନ୍ତି ନାହିଁ । ସେଥିରେ ପୁଣି ଶିବ ଲମ୍ବା ସମୟ ଧରି ତପସ୍ୟା କରିବାକୁ ଚାଲିଯା'ନ୍ତି । ଏକା ବା ସେ କ'ଣ କରିବେ ? ତେଣୁ ତାଙ୍କ ପୁଅ ଗଣେଶ ସୃଷ୍ଟି ହେବାରୁ ସେ ଖୁବ ଖୁସି ହୋଇଗଲେ । ଦିନସାରା ତାଙ୍କ ସାଙ୍ଗରେ ରହିବା ପାଇଁ କେହି ଜଣେ ମଣିଷ ମିଳିଗଲେ । ବର୍ଷସାରା ତାଙ୍କ ସହ ଖେଳିବା, ଗୀତ ଗାଇବା, ନାଚିବା ପାଇଁ ଜଣେ ଆସିଲେ । ସେ ଦୁହେଁ ସ୍ୱର୍ଗ, ମର୍ତ୍ତ୍ୟ, ଧର୍ମ, ଭଲ, ମନ୍ଦ, ଦର୍ଶନ ବିଷୟରେ ଅନେକ କଥା ହୋଇପାରିବେ ।

ଏମିତି ହିଁ ଚାଲିଲା । ଗଣେଶ ପାର୍ବତୀଙ୍କ ସାଙ୍ଗରେ ସବୁବେଳେ ରହିଲେ । ସେ ଭାରି ଖୁସିବାସିଆ ପିଲା ଥିଲେ । ବୟସ ତୁଳନାରେ ସେ ବହୁତ ବୁଦ୍ଧିଆ ଓ ସାହସୀ ଥିଲେ । କିନ୍ତୁ ବେଶ୍ ସାବଧାନ ବି ଥିଲେ । ଚିନ୍ତା ନକରି ସେ କିଛି କରୁନଥିଲେ । କିନ୍ତୁ କିଛି କାମ ପାଇଁ ଥରେ ମନ ଠିକ୍ କରିନେଲେ ଆଉ ସେ ପଛକୁ ହଟୁନଥିଲେ । ଯେମିତି ହେଲେ ବି କାମଟି କରୁଥିଲେ । ପାର୍ବତୀ ଶିଖାଉଥିବା ପାଠ ସବୁ ସେ ବହୁତ ଶୀଘ୍ର ଏବଂ ଭଲରେ ଶିଖିଗଲେ । ପଢ଼ିବାକୁ ତାଙ୍କୁ ଭଲ ଲାଗୁଥିଲା । ପାର୍ବତୀଙ୍କ ଜୀବନ ବଦଳିଗଲା । ଗଣେଶ ତାଙ୍କ ପାଖରେ ଥିବାରୁ ସେ ଆଉ ଏକଲା ଅନୁଭବ କଲେନାହିଁ ।

ଥରେ ଶିବ ଆଗ ଭଳି ପାହାଡ଼ ଉପରକୁ ଯାଇ ଲମ୍ବା ସମୟ ପାଇଁ ତପସ୍ୟା କରୁଥା'ନ୍ତି । ସେଦିନ ପାର୍ବତୀ ଓ ଗଣେଶ ସକାଳୁ ଉଠିପଡ଼ି ଗଡ଼ାଣିଆ ପାହାଡ଼ ଉପରେ ଗୋଡ଼ିଆଗୋଡ଼ି ଖେଳୁଥିଲେ ।

ଶେଷରେ ପାର୍ବତୀ କହିଲେ, "ଓଃ ! ମତେ ହାଲିଆ ଲାଗିଲାଣି । ବହୁତ ଖେଳ ହେଲା । ମୁଁ ଏବେ ଗାଧୋଇବାକୁ ଯାଉଛି । ତା'ପରେ ଆମେ ବସି କିଛି ସମୟ ପଢ଼ିବା ।"

"ଠିକ ଅଛି, ମା' । ତମେ ଯାଇ ଗାଧାଅ । ମୁଁ ଯାଉଛି କିଛି ଖାଇବା ପାଇଁ । ମତେ ଭାରି ଭୋକ ହେଲାଣି ।" ଗଣେଷ କହିଲେ ।

"ହଁ । କିଛି ଲଡୁ ଅଛି । କିନ୍ତୁ ତମେ ଏଇଠି ଘର ସାମନାରେ ବସି ଦୁଆର ଜଗ । ତମେ ତ ଜାଣ । ବର୍ଷର ଏହି ସମୟରେ କେତେ ରକମର ଜୀବ ପାହାଡ଼ ଉପରକୁ ଆସନ୍ତି ଏବଂ କୁଆଡ଼େ ଯିବେ ଜାଣିନଥାନ୍ତି । ମୁଁ ଗାଧୋଇଲା ବେଳେ ଯେମିତି କେହି ହଇରାଣ ନକରନ୍ତି । ତେଣୁ ଏଇଠି ବସି ରହ ଯେପରି କେହି ବି ମୋ ଘର ଭିତରକୁ ନ ପଶନ୍ତି । ମୁଁ ମୁଣ୍ଡରେ ତେଲ ଲଗେଇ ଆରାମରେ ଗାଧୋଇବା ପାଇଁ ଯାଉଛି ।" ପାର୍ବତୀ କହିଲେ ।

ଗଣେଷ ଲଡୁ ଆଣି ମା'ଙ୍କ ଦୁଆର ମୁହଁରେ ଜଗି ବସିଲେ । ସେ ଲଡୁ ଖାଇ ଖାଇ ଆଗ ଦିନର ପାଠ ସବୁ ମନେ ପକାଇଲେ । ଗୋଟିଏ କାଠି ଧରି ଶ୍ଲୋକଗୁଡ଼ିକୁ ମାଟିରେ ଲେଖି ଚାଲିଲେ । ହଠାତ୍ କାହାର ସ୍ୱର ଶୁଣି ସେ ମୁଣ୍ଡ ଉଠାଇ ଚାହିଁଲେ ।

"ଗଣେଶ! ତମେ କେତେ ବଡ଼ ହୋଇଯାଇଛ । ପାର୍ବତୀଙ୍କ ଘର ସାମନାରେ ବସି ନଥିଲେ ମୁଁ ତମକୁ ଚିହ୍ନିପାରିନଥାନ୍ତି ।" ହଠାତ୍ ଶୂନ୍ୟରୁ ଖସିଲା ଭଳି ଜଣେ ଭୟଙ୍କର ରୂପ ଲୋକ ଗଣେଶଙ୍କ ସାମନାରେ ଉଭା ହୋଇଗଲେ । ମୁଣ୍ଡରେ ଜଟା, ଦେହସାରା ପାଉଁଶ ବୋଳା ହୋଇଛି ଏବଂ ସେ ଗୋଟିଏ ବାଘ ଚମଡ଼ା ପିନ୍ଧିଥା'ନ୍ତି ।

ଗଣେଶଙ୍କୁ ସେ ଲୋକଙ୍କର ଚାହାଣୀ ଭଲ ଲାଗିଲା ନାହିଁ । ସେ ତାଙ୍କୁ ଦୋ ଦୋ ଚିହ୍ନା ହେଲେ । କିନ୍ତୁ କେଉଁଠି ଦେଖିଛନ୍ତି ମନେ ପକାଇ ପାରିଲେ ନାହିଁ । ସେ ବିରକ୍ତ ହୋଇ ସେ ଲୋକଙ୍କୁ ଚାହିଁଲେ ।

"ଠିକ୍ ଅଛି । ମତେ ଭିତରକୁ ଯିବାକୁ ଦେବ କି?" ସେ ଲୋକ ଜଣଙ୍କ ହେଉଛନ୍ତି ଶିବ । ସେ ଗଣେଶଙ୍କୁ ଅନୁରୋଧ କଲେ । "ମୁଁ ଫେରିଆସିଛି ବୋଲି ପାର୍ବତୀଙ୍କୁ କହିବାକୁ ଚାହେଁ । ସେ ମତେ ଦେଖି ଖୁସି ହୋଇଯିବେ । ମୁଁ ଏତେ ଶୀଘ୍ର ଫେରିଆସିବି ବୋଲି ସେ ଭାବିପାରି ନଥିବେ ।"

"ନାଁ, ମୁଁ ଆପଣଙ୍କୁ ଛାଡ଼ିପାରିବି ନାହିଁ । ମା' ମତେ କାହାରିକୁ ଭିତରକୁ ନ ଛାଡ଼ିବାକୁ କହିଛନ୍ତି ।" ଗଣେଶ କହିଲେ ।

"ତମେ ମତେ ଛାଡ଼ି ଦେଇପାର । ମୁଁ ତାଙ୍କ ସ୍ୱାମୀ । ସେ ମତେ ସାଙ୍ଗେ ସାଙ୍ଗେ ଭେଟିବା ପାଇଁ ଚାହିଁବେ ।" ଶିବ ଜୋରରେ ହସି କହିଲେ ।

ଗଣେଶ ତାଙ୍କ କଥାରେ ଅଟଳ ରହିଲେ । "ମୁଁ ଦୁଃଖିତ । ସେ କହିଛନ୍ତି କେହି ବି ଭିତରକୁ ଯିବେନାହିଁ । ଆପଣ ଏଠାରେ ଅପେକ୍ଷା କରନ୍ତୁ । ତାଙ୍କ ଗାଧୁଆ ସରିବା ମାତ୍ରେ ଆପଣ ଦେଖା କରିପାରିବେ ।"

ଶିବ ରାଗିଗଲେ । "ବାଳକ! ନିଜକୁ ତମେ ବହୁତ ବଡ଼ ବୋଲି ଭାବୁଛ । ମତେ ସାଙ୍ଗେ ସାଙ୍ଗେ ଭିତରକୁ ଯିବାକୁ ଦିଅ । ନହେଲେ ମୁଁ ତମକୁ ଠିକ କରିଦେବି । ବେଶି ସମୟ ପାଇଁ ମୋ ଧୈର୍ଯ୍ୟର ପରୀକ୍ଷା କରନାହିଁ ।"

"ମୁଁ ଦୁଃଖିତ । ମତେ ମୋର କର୍ତ୍ତବ୍ୟ କରିବାକୁ ହିଁ ହେବ ଏବଂ ମା'ଙ୍କୁ ଦେଇଥିବା ବଚନ ପାଳନ କରିବାକୁ ହେବ ।" ଶିବଙ୍କ ନାଲି ଆଖିକୁ ନଡ଼ରି ଗଣେଶ ଉତ୍ତର ଦେଲେ ।

"ଆଚ୍ଛା, ଏପରି କଥା । ଯଥେଷ୍ଟ ହୋଇଗଲା । ପାର୍ବତୀ ପିଲାଟିକୁ ନଷ୍ଟ କରିଦେଇଛନ୍ତି । ସେ ତା' ବାପାଙ୍କୁ ବି ଚିହ୍ନିପାରୁନାହିଁ । ଉଚିତ କଥା ଶୁଣୁ ନାହିଁ । ବଡ଼ମାନଙ୍କୁ ସମ୍ମାନ ଦେଉନାହିଁ । ମୁଁ କୁଆଡ଼େ ଯିବି କ'ଣ କରିବି ଗୋଟିଏ ଛୋଟ ପିଲା ମତେ କହିବା ଦରକାର ନାହିଁ ।" ଶିବ ଗର୍ଜନ କରି କହିଲେ । ତମ ତମ ହୋଇ ସେ ଖଣ୍ଡାରେ ଏକା ଚୋଟକେ ଗଣେଶଙ୍କ ମୁଣ୍ଡ କାଟିଦେଲେ ।

କାମଟି କରିସାରିବା ପରେ ତାଙ୍କ ହୋସ ଆସିଲା । ସେ କ'ଣ କଲେ ? କର୍ତ୍ତବ୍ୟ କରୁଥିବା ନିର୍ଦ୍ଦୋଷ ପିଲାକୁ ମାରିଦେଲେ ? ତା' ବି ତାଙ୍କର ଏବଂ ପାର୍ବତୀଙ୍କ ପୁଅ । ଘଟଣାଟିରେ ନିଜକୁ ସମ୍ଭାଳିବା ଆଗରୁ ପାର୍ବତୀ ବାହାରି ଆସିଲେ । ଥରେ ମାତ୍ର ଚାହିଁଦେଇ ସେ ବୁଝିପାରିଲେ ଯେ ଘଟଣାଟି କ'ଣ ହୋଇଥିବ । କାରଣ ସେ ଗଣେଶ ଓ ଶିବ ଉଭୟଙ୍କୁ ଜାଣିଛନ୍ତି ।

ଦୁଃଖ ଏବଂ ରାଗରେ ତାଙ୍କ ଆଖିରେ ଲୁହ ଆସିଗଲା ଓ ସେ ପୁଅର ମୁଣ୍ଡବିହୀନ ଶବ ଉପରେ ପଡ଼ିଗଲେ । "ଦେଖ, ତମେ କ'ଣ କଲ, ଶିବ! ଗୋଟିଏ ନିର୍ଦ୍ଦୋଷ





Digitized by srujanika@gmail.com

ଶାନ୍ତ ପିଲାକୁ ମାରିଦେଲ । ତା' ବି ମୋ ପିଲାକୁ । ମୋ ପ୍ରିୟ ବନ୍ଧୁ, ମୋ ସାଙ୍ଗ, ମୋ ଛାତ୍ର, ମୋ ଖେଳସାଥି, ମୋ ପୁଅ । ମୁଁ ତମକୁ କେବେ ବି କ୍ଷମା କରିବି ନାହିଁ । ମୁଁ ତୁମ ମୁହଁ ଆଉ ଚାହିଁବି ନାହିଁ ।"

"ପାର୍ବତୀ, ମତେ କ୍ଷମା କରିଦିଅ । ମୁଁ ରାଗରେ ଏପରି କରିଦେଇଛି । ତମେ ତ ଜାଣ । ମୁଁ ମୋ ରାଗ ନିୟନ୍ତ୍ରଣ କରିପାରେନାହିଁ । ମୋର ଉଦ୍ଦେଶ୍ୟ ଏହା ନଥିଲା । ବିଶ୍ୱାସ କର, ମୁଁ ଦୁଃଖିତ । ଶିବ ମନ ଦୁଃଖରେ କହିଲେ ।

"ତମେ ଦୁଃଖ କଲେ କ'ଣ ହେବ? କ'ଣ ମୋ ପୁଅ ଫେରିଆସିବ? ତମେ ଦୁଃଖିତ ହେଲେ ବି ମୋର କିଛି ଯାଏ ଆସେ ନାହିଁ ।" ପାର୍ବତୀ ପାଟି କଲେ ।

"ମୁଁ ତା'ର ଜୀବନ ଫେରାଇ ଆଣିବି । କେବଳ ମତେ କ୍ଷମା କରିଦିଅ ।" ଶିବ କହିଲେ ।

ପାର୍ବତୀ ଧ୍ୟାନର ସହ ଶୁଣିଲେ । "ଜୀବନ ଫେରାଇ ଆଣିବ? ତମେ ଏହା କରିପାରିବ? କିପରି? ତା' ଦେହ ତ ପୂରା ଥଣ୍ଡା ହୋଇଗଲାଣି ।"

"ମୁଁ ଭାବୁଛି ମୁଁ ପାରିବି । କିନ୍ତୁ ତମ କହିବା ଅନୁସାରେ ଯଦି ତା' ଦେହ ଥଣ୍ଡା ହୋଇଯାଇଥିବ, ତେବେ ତା'ର ଆଗ ଭଳି ଚେହେରା ହୋଇପାରିବ ନାହିଁ । ମୁଁ ଗୋଟିଏ ତାଜା ଉଷ୍ମ ଶରୀର ଖୋଜି ତା' ମୁଣ୍ଡ ଆଣି ଏହି ଦେହରେ ଲଗାଇବି । ତା'ହେଲେ କାମ କରିପାରେ ।" ଶିବ କହିଲେ ।

"ତେବେ ଆଉ କ'ଣ ପାଇଁ ଅପେକ୍ଷା କରିଛ? ଯାଅ, ଗୋଟିଏ ମୁଣ୍ଡ ଖୋଜି ମୋ ପୁଅର ଜୀବନ ଫେରାଇଆଣ । ଆଉ କ'ଣ ପାଇଁ ଅପେକ୍ଷା କରିଛ? କ'ଣ ଏତିକି କରିବା ପାଇଁ ବି ଯେମିତି ବହୁତ ଡେରି ହୋଇଯାଉ? ପାର୍ବତୀ ଅତି ବେଶି ଆଶା କରୁନଥିଲେ । କିନ୍ତୁ ଆଶାର ଛୋଟିଆ କିରଣଟିଏ ତାଙ୍କ ଭିତରେ ଆସିଥିଲା ।

ଶିବ ବାହାରିଗଲେ । ତାଙ୍କର ସବୁ ଦେବ ମହିମା ଲଗାଇ ସେ ଏଠି ସେଠି ଘୂରିବୁଲିଲେ । ଏପଟ ସେପଟ ଘୂରି ବୁଲିବା ଭିତରେ ଗୋଟିଏ ଜଙ୍ଗଲ ଭିତରେ ହାତୀଟିଏ ମରି ପଡ଼ିଥିବାର ଦେଖିଲେ । ସେ ଭାରି ଖୁସି ହୋଇଗଲେ । "ଓଃ ! ଗୋଟିଏ ହାତୀର ମୁଣ୍ଡ ମୋ ପୁଅ ପାଇଁ ଭଲ ହେବ । ହାତୀ ହେଉଛି ବୁଦ୍ଧିଆ, ଜ୍ଞାନୀ, ସାହସୀ ଏବଂ ବଳୁଆ । ମୁଁ ଏଇଟିକୁ ନେଇଯିବି ।" ଏହା ଭାବି ସେ ତା' ମୁଣ୍ଡଟି ନେଇଗଲେ ଏବଂ ନିମିଷକ ଭିତରେ କୈଳାଶ ପର୍ବତରେ ପହଞ୍ଚିଗଲେ ।

ପାର୍ବତୀ ଆଗ୍ରହର ସହ ଅପେକ୍ଷା କରିଥିଲେ । "ମୋ ପୁଅ ପାଇଁ ଗୋଟିଏ ହାତୀ ମୁଣ୍ଡ?" ସେ ଅତି ବେଶି ଖୁସି ହୋଇପାରିଲେ ନାହିଁ । "ତମର ସବୁ ଶକ୍ତି ଲଗାଇ ତମେ ଗୋଟିଏ ମଣିଷ ମୁଣ୍ଡ ଖୋଜିପାରିଲ ନାହିଁ?" ସେ ଥଟ୍ଟା କରି ପଚାରିଲେ ।

"ପାର୍ବତୀ, ହାତୀ ଗୋଟିଏ ମହତ ଜୀବ । ଆମ ପୁଅକୁ ଏହି ମୁଣ୍ଡରୁ ଅନେକ ଲାଭ ମିଳିବ । ତା'ର ବହୁତ ବଳ ହେବ ଏବଂ ପୃଥିବୀସାରା ତାକୁ ବହୁତ ସମ୍ମାନ ଦେଖେଇବେ । ସେ ସାରା ଦୁନିଆର ଠାକୁର ହେବ । ଡେରି ହେବା ଆଗରୁ ମୁଁ ଏଇଟି ଲଗାଇଦିଏ ।" ଶିବ କହିଲେ ।

ଉତ୍କଣ୍ଠା ଓ ଉତ୍ତେଜନା ଭିତରେ ପାର୍ବତୀ ରାଜି ହେଲେ । ଏବେ ମୁଣ୍ଡଟି ଯୋଡ଼ା ନଗଲେ ଆଉ କାମ କରିନପାରେ ଏବଂ ତାଙ୍କ ପୁଅ ବଞ୍ଚିନପାରେ ।

"ଓଃ ମା ! ମୁଁ କ'ଣ ଶୋଇପଡ଼ିଥିଲି?" ଶିବ ମୁଣ୍ଡ ଲଗାଇଦେବା ପରେ ଗଭୀର ନିଦରୁ ଉଠିଲା ପରି ଗଣେଶ ପଚାରିଲେ ।

"ହଁ ପୁଅ । ତମେ ଏତେ ଘୋର ନିଦରେ ଶୋଇଥିଲ ଯେ ଏଇ ପୃଥିବୀରେ ନଥିଲ ।" ପାର୍ବତୀ ତାଙ୍କୁ କୁଣ୍ଢେଇ ପକେଇ କହିଲେ ।

ଗଣେଶ ତାଙ୍କ ଶୁଣ୍ଢ ଦେଖିଲେ ଏବଂ ମୁହଁ ଅଣ୍ଡାଳିଲେ । ସେ ଡରିଗଲେ । "କିନ୍ତୁ ମୋ ମୁହଁର କ'ଣ ହେଲା?" ସେ ପଚାରିଲେ ।

ପାର୍ବତୀ ତାଙ୍କୁ କୋଳରେ ବସାଇ ସବୁ କଥା କହିଲେ । "ପୁଅ ତୁ ତୋର ନୂଆ ମୁହଁରେ ଭଦ୍ର ଏବଂ ଚମତ୍କାର ଦେଖାଯାଉଛୁ । ମୁଁ ଭାବୁଛି ମୁଁ ଆଗ ଅପେକ୍ଷା ତମକୁ ଏବେ ବେଶି ଭଲ ପାଉଛି ।" ସେ କହିଲେ । ଶିବ ଉଦ୍‌ବିଗ୍ନ ହୋଇ ଅନେଇଥିଲେ ।

"ପୁଅ, ମୁଁ ଦୁଃଖିତ । ଏହାଛଡ଼ା ମୁଁ ଆଉ କ'ଣ କହିପାରେ?" ଶିବ ଗୁଣୁ ଗୁଣୁ ହୋଇ କହିଲେ ।

ଗଣେଶ ଉତ୍ତେଜିତ ହୋଇ ପାର୍ବତୀଙ୍କ କୋଳରୁ ଡେଇଁପଡ଼ିଲେ । "ମୁଁ ଭାବୁଛି ହାତୀର ମୁଣ୍ଡ ହେବା ପ୍ରକୃତରେ ମଜାର କଥା । ଶୁଣ୍ଢ ଆଉ ଦାନ୍ତ ବି । ବହୁତ ମଜା ହେବ । ପ୍ରକୃତରେ ବହୁତ ଅଲଗା ହେବ । ମୁଁ ଯାଏ, ନଈରେ ମୋ ଛବି ଦେଖିବି । ତା'ପରେ ଯାଇ ମୋର ସାଙ୍ଗମାନଙ୍କୁ ଦେଖାଇବି । ସେମାନେ ହାବା ହୋଇଯିବେ ।" ସେ ଧାଇଁ ପଳାଇବାରୁ ଶିବ ଓ ପାର୍ବତୀ ସ୍ୱସ୍ତିର ନିଶ୍ୱାସ ମାରିଲେ ।

ଏହିଭଳି ଗଣେଶଙ୍କର ହାତୀ ମୁଣ୍ଡ ଲାଗିଲା । ତାଙ୍କର ଏଥିପାଇଁ କେବେ ବି ଦୁଃଖ ନଥିଲା ।

## ଉଡ଼ନ୍ତା ହାତୀ ମାଟିକୁ ଖସିଲେ

ତମେ ଜାଣିଛ କି ଦିନ ଥିଲା ଯେତେବେଳେ ହାତୀମାନେ ଆକାଶରେ ଉଡ଼ି ବୁଲୁଥିଲେ? ଏହି ବିଷୟରେ ଗୋଟିଏ ଭାରତୀୟ ଲୋକଗଳ୍ପ ରହିଛି ।

ତେବେ ଆଜି କାହିଁକି ହାତୀ ଆକାଶରେ ଉଡ଼ିବା ଦେଖାଯାଉନାହିଁ? ଏହାର ଉତ୍ତର ସେଇ ଲୋକଗପରେ ରହିଛି ଯାହାକି ଆମକୁ ସେଇ ସମୟକୁ ନେଇଯିବ ।

ଥରେ ଜଣେ ସାଧୁ ଗୋଟିଏ ବରଗଛ ତଳେ ଧ୍ୟାନ କରୁଥିଲେ । ଦଳେ ହାତୀ ସେ ଗଛ ଉପରେ ଖେଳୁଥିଲେ । ଗୋଟିଏ ଡାଳ ଭାଙ୍ଗିଯାଇ ତାଙ୍କ ଉପରେ ପଡ଼ିବାରୁ ତାଙ୍କ ଧ୍ୟାନ ଭାଙ୍ଗିଗଲା । ସାଧୁ ବହୁତ ବିରକ୍ତ ହୋଇଗଲେ ଏବଂ ତାଙ୍କ ଶକ୍ତି ବଳରେ ହାତୀମାନଙ୍କୁ ଅଭିଶାପ ଦେଲେ ଯେ ହାତୀମାନଙ୍କର ଆଉ ଡେଣା ରହିବ ନାହିଁ ବା ସେମାନେ ଆଉ ଉଡ଼ିପାରିବେ ନାହିଁ । ସେହି ଦିନଠାରୁ ହାତୀମାନଙ୍କର ଆଉ ଡେଣା ରହିଲା ନାହିଁ । ସେମାନେ ମାଟି ଉପରେ କେବଳ ଚାଲବୁଲ କରିପାରିଲେ ।





Digitized by srujanika@gmail.com

# ବିପଦରେ ହାତୀ

**ଅତୀତରେ** ଏସୀୟ ହାତୀ ଏସିଆର ପ୍ରାୟ ସବୁ ଅଞ୍ଚଳରେ ଦେଖାଯାଉଥିଲେ । ଏବେକାର ଇରାକ ଓ ତା'ର ଆଖପାଖ ଦେଶଠାରୁ ଆରମ୍ଭ କରି ଦକ୍ଷିଣ ଇରାନ, ପାକିସ୍ଥାନ, ଭାରତ ଉପମହାଦେଶ, ଦକ୍ଷିଣପୂର୍ବ ଏସିଆ, ଦକ୍ଷିଣ ଏବଂ ପୂର୍ବ ଚୀନ, ଶ୍ରୀଲଙ୍କା ଏବଂ ଇଣ୍ଡୋନେସିଆ ଯାଏଁ ସବୁଠି ଥିଲେ ।

ଏବେ ବାଂଲାଦେଶ, ଭୁଟାନ, କାମ୍ବୋଡ଼ିଆ, ଚୀନ, ଭାରତ, ଇଣ୍ଡୋନେସିଆ, ଲାଓସ, ମାଲେସିଆ, ମିଆଁମାର, ନେପାଳ, ଶ୍ରୀଲଙ୍କା, ଥାଇଲାଣ୍ଡ ଏବଂ ଭିଏତନାମ ଭଳି ୧୩ଟି ଦେଶରେ ହାତୀ ଅଛନ୍ତି । କିନ୍ତୁ ଏସବୁ ଦେଶର ଏସୀୟ ହାତୀଙ୍କ ସଂଖ୍ୟା କମିଯାଉଛି । ଏବେ ଏସିଆରେ ମାତ୍ର ୫୦,୦୦୦ଟି ହାତୀ ଅଛନ୍ତି ।



## ଏସୀୟ ହାତୀର ବିସ୍ତାର

### ଏସିଆ

ଅତୀତରେ ହାତୀ ଏକ ବିରାଟ ଅଞ୍ଚଳରେ ବ୍ୟାପି ରହିଥିଲା । ଏଥିରୁ ସେ ସମୟରେ ଜଙ୍ଗଲର ବ୍ୟାପ୍ତି ବିଷୟରେ ମଧ୍ୟ ଜଣାଯାଉଛି । ଆହୁରି ମଧ୍ୟ ୬୦୦୦ ବର୍ଷ ପୂର୍ବର ଟାଇଗ୍ରୀସ ଇଉଫ୍ରେଟିସ୍ ଉପତ୍ୟକାର ଅବସ୍ଥା ଆଜିକା ଶୁଖିଲା ଅବସ୍ଥାଠାରୁ ବହୁତ ଅଲଗା ଥିବ । ବୈଜ୍ଞାନିକମାନେ ବିଶ୍ୱାସ କରନ୍ତି ଯେ ସେତେବେଳର ପଶ୍ଚିମ ଏସିଆରେ ହାତୀଙ୍କ ଅବସ୍ଥା ଯାହା ବର୍ଣ୍ଣନା କରାଯାଏ, ସେସବୁ ଆନୁମାନିକ । କିନ୍ତୁ ଖ୍ରୀଷ୍ଟପୂର୍ବ ୪୦୦ରୁ ୫୦୦ ଏପରିକି ପ୍ରଥମ ଶତାବ୍ଦୀ ଯାଏଁ ବି ପଶ୍ଚିମ ଏସିଆରେ ଆର୍ଦ୍ର ଜଳବାୟୁ ଥିବାର ଯଥେଷ୍ଟ ପ୍ରମାଣ ମିଳେ । ଏଥିରୁ ଜଣାପଡୁଛି ଆଜି ଯାହା ଶୁଖିଲା ବା ଅଧା ଶୁଖିଲା ଅଞ୍ଚଳ ହୋଇ ରହିଛି, ଦିନେ ସେଠାରେ ହାତୀ ରହୁଥିଲେ ।

ନଈକୂଳ ଓ ସମତଳ ଅଞ୍ଚଳରୁ ହାତୀ ଉଭେଇ ଯିବାର ମୁଖ୍ୟ କାରଣ ହେଉଛି ଏସବୁ ଅଞ୍ଚଳରେ ଜନବସତି ବଢ଼ିଲା । ଜନବସତି ବଢ଼ିବାରୁ ହାତୀମାନେ ଜଙ୍ଗଲ ଭିତରକୁ ଚାଲିଗଲେ । ସେତେବେଳେ ଏହି ଅଞ୍ଚଳକୁ ପ୍ରାୟ ଯାଇ ହେଉନଥିଲା । କିନ୍ତୁ ଗତ ଶତାବ୍ଦୀରେ ମଣିଷ ତା'ର ଖାଦ୍ୟ ଏବଂ ନିତିଦିନିଆ ଚାହିଦା ପୂରଣ ପାଇଁ ଏବଂ ଜୀବନରେ ଆରାମ ପାଇବା ପାଇଁ ରାସ୍ତା, ବନ୍ଧ, ରେଳପଥ ତିଆରି କରି ଜଙ୍ଗଲର ଭିତର ବି ସଫା କରିସାରିଲାଣି ।

### ଭାରତ

ଆଜି ଅପେକ୍ଷା ଅତୀତରେ ଭାରତରେ ଏସୀୟ ହାତୀ ଆହୁରି ବ୍ୟାପକ ଅଞ୍ଚଳରେ ଥିଲେ (ପୃଷ୍ଠା ୬୦ରେ ମାନଚିତ୍ର ଦେଖ) । ଚତୁର୍ଥ ଶତାବ୍ଦୀରେ ଆଜିର ଶୁଖିଲା ଅଞ୍ଚଳ ପଞ୍ଜାବ ଏବଂ ସୌରାଷ୍ଟ୍ରରେ ବି ହାତୀ ଥିଲେ । ମଧ୍ୟପ୍ରଦେଶ ଏବଂ ମୁମ୍ବାଇ ଅଞ୍ଚଳରେ ବି ହାତୀ ଥିଲେ ବୋଲି ପୁରୁଣା ଲେଖାରୁ ଜଣାଯାଏ । ସେମାନେ ରାଜସ୍ଥାନରେ ବି ଥିଲେ ଏବଂ ପ୍ରାୟ ୧୮୮୫ ସମୟରେ ସେଠାରୁ ହାତୀ ଉଭେଇଗଲେ । ଭାରତରେ ଆସାମଠାରୁ ଆରମ୍ଭ କରି ଗୋଦାବରୀ ନଈ ଯାଏ ହାତୀ ରହିଥିଲେ । ବ୍ୟାପକ ଜଙ୍ଗଲ କଟା ହେବା ଆଗରୁ ଏସବୁ ଅଞ୍ଚଳରେ ପ୍ରଚୁର ହାତୀ ରହୁଥିଲେ ।

ପରିବେଶ ବଦଳିବା ଯୋଗୁଁ ଭାରତରେ ହାତୀର ଆବାସସ୍ଥଳୀ ଏବଂ ସଂଖ୍ୟା କମିବାରେ ଲାଗିଛି । ଅତୀତ ଏବଂ ବର୍ତ୍ତମାନ ଭିତରେ ହାତୀମାନଙ୍କ ସ୍ଥିତିର ତୁଳନା କଲେ ଆମ ଦେଶରେ ପରିବେଶର ଅବସ୍ଥା ଜଣାପଡେ ।

ଏସୀୟ ହାତୀର ୧୦,୦୦୦ ବର୍ଷ ତଳର ବ୍ୟାପ୍ତି



Digitized by srujanika@gmail.com

ସହ ଏବେକାର ବିତରଣ ତୁଳନା କଲେ ସ୍ପଷ୍ଟ ଜଣାପଡେ ଯେ ନଦୀ ଉପତ୍ୟକାମାନଙ୍କରୁ ହାତୀମାନେ ଦୂରେଇ ଯାଇଛନ୍ତି । ଏହା ମୁଖ୍ୟତଃ ନଦୀ ଉପତ୍ୟକାରେ ଜନସଂଖ୍ୟା ଏବଂ ବସତି ବଢ଼ିବା ଯୋଗୁଁ ହୋଇଛି । ସେଥିପାଇଁ ବେଶି ସଂଖ୍ୟାରେ ହାତୀ ଏବେ ବି ମଣିଷ ଯାଇ ପାରୁନଥିବା ଘଞ୍ଚ ଜଙ୍ଗଲରେ ଦେଖାଯାଉଛି ।

### ବର୍ତ୍ତମାନର ବିତରଣ

ଏବେ ଭାରତରେ ଚିରହରିତ ଜଙ୍ଗଲରୁ ଆରମ୍ଭ କରି ଶୁଖିଲା ମରୁଭୂମି, ସନ୍ତସନ୍ତିଆ ଜଳାଭୂମି ଏବଂ ତୃଣଭୂମି ସବୁଆଡ଼େ ହାତୀ ଅଛନ୍ତି । ଆର୍ଦ୍ର ପର୍ଣ୍ଣମୋଚୀ ଜଙ୍ଗଲ ହାତୀ ପାଇଁ ସବୁଠାରୁ ଭଲ ଆବାସ । ଏବେ ଭାରତରେ ମୁଖ୍ୟତଃ ଚାରୋଟି ଅଞ୍ଚଳରେ ହାତୀ ଅଛନ୍ତି । ସେଗୁଡ଼ିକ ହେଉଛି -

- ଉତ୍ତରପଶ୍ଚିମରେ ଉତ୍ତରପ୍ରଦେଶର ଡେରାଡୁନ୍, ବିଜ୍‌ନୋର ଏବଂ ନୈନିତାଲ ଜିଲ୍ଲାର ବନଖଣ୍ଡଗୁଡ଼ିକରେ ।
- ଦେଶର ଦକ୍ଷିଣ ଭାଗରେ, କର୍ଣ୍ଣାଟକ, କେରଳ, ତାମିଲନାଡୁ, ପାଲଘାଟର ଉତ୍ତରାଞ୍ଚଳ ଏବଂ ପାଲଘାଟର ଦକ୍ଷିଣକୁ କେରଳ-ତାମିଲନାଡୁ ରାଜ୍ୟର ପଶ୍ଚିମଘାଟ ଅଞ୍ଚଳରେ ।
- ଭାରତର ମଝି ଅଞ୍ଚଳରେ - ଦକ୍ଷିଣ ବିହାର, ପଶ୍ଚିମବଙ୍ଗର ଦକ୍ଷିଣାଞ୍ଚଳ ଏବଂ ଓଡ଼ିଶା ।
- ପୂର୍ବ ଭାରତରେ - ପଶ୍ଚିମବଙ୍ଗର ଉତ୍ତରାଞ୍ଚଳ, ଆସାମ ଏବଂ ଉତ୍ତରପୂର୍ବ ଭାରତର ଅନ୍ୟ ରାଜ୍ୟଗୁଡ଼ିକରେ ।

  ଏହି ଅଞ୍ଚଳର କିଛି ହାତୀ ଦଳ ବାଂଲାଦେଶ ଏବଂ ମିଆଁମାରର ଜଙ୍ଗଲକୁ ଯିବାଆସିବା କରୁଥିବାର ସମ୍ଭାବନା ରହିଛି ।

## ଏସୀୟ ହାତୀର ସ୍ଥିତି

### ଜଙ୍ଗଲୀ ହାତୀଙ୍କ ସଂଖ୍ୟା

ଜଙ୍ଗଲରେ ଥିବା ଏସୀୟ ହାତୀଙ୍କ ସଂଖ୍ୟାର ଅଟକଳ ଅନେକାଂଶରେ କେବଳ ଅନୁମାନ ହିଁ ହୋଇଥାଏ । ଅବଶ୍ୟ ଅନେକ ସମୟରେ ଏହି ଅନୁମାନ ପଛରେ ବେଶ୍ ଅଭିଜ୍ଞତା ରହିଥାଏ । କାରଣ ଜଙ୍ଗଲ ଭିତରେ ହାତୀମାନଙ୍କର ସଠିକ ଗଣନା କରିବା ଖୁବ୍ କଷ୍ଟକର କଥା ।

**ବର୍ତ୍ତମାନ ସମୟରେ ଏସୀୟ ହାତୀର ବିତରଣ**



ଉତ୍ସ: *ଗିଭର୍ଜିଙ୍କ ଦି ଡିକ୍ଲାଇନ ଅଫ୍ ଦି ଏସିଆନ୍ ଏଲିଫାଣ୍ଟ*, ୱାଇଲଡ୍ ଲାଇଫ୍ ପ୍ରୋଟେକ୍‌ସନ୍ ସୋସାଇଟି ଅଫ୍ ଇଣ୍ଡିଆ, ୱାଇଲଡ୍ ଲାଇଫ୍ ଟ୍ରଷ୍ଟ ଅଫ୍ ଇଣ୍ଡିଆ, ଏସିଆନ୍ ଏଲିଫାଣ୍ଟ ରିସର୍ଚ୍ଚ ଆଣ୍ଡ କଞ୍ଜରଭେସନ୍ ସେଣ୍ଟର, ବାଙ୍ଗାଲୋର, ୨୦୦୦ ।

## ଏସୀୟ ହାତୀଙ୍କ ଉପଜାତି

ଏସୀୟ ଏବଂ ଆଫ୍ରିକୀୟ ହାତୀ ଦୁଇଟିର ଅଲଗା ପ୍ରଜାତିର ପ୍ରାଣୀ । ଏସୀୟ ହାତୀଙ୍କ ଭିତରେ ମୁଖ୍ୟତଃ ସିଂହଳୀୟ, ମୁଖ୍ୟଭୂଖଣ୍ଡ ଏବଂ ସୁମାତ୍ରୀୟ - ତିନୋଟି ମୁଖ୍ୟ ଉପଜାତି ରହିଛି । ଏହି ଉପଜାତିମାନଙ୍କର ବାହ୍ୟଗୁଣରେ ଥିବା ତଫାତକୁ ନେଇ ତାଙ୍କର ଏହି ଶ୍ରେଣୀବିଭାଗ କରାଯାଇଛି । ସେମାନଙ୍କର ଓଜନ, ଉଚ୍ଚତା, ଦେହର ରଙ୍ଗ ଏବଂ କାନର ଆକାର ସବୁ ଅଲଗା ।

| ଗୁଣ | ସିଂହଳୀୟ ଉପଜାତି | ମୁଖ୍ୟଭୂଖଣ୍ଡ ଉପଜାତି | ସୁମାତ୍ରୀୟ ଉପଜାତି |
|---|---|---|---|
| କେଉଁଠି ଦେଖାଯା'ନ୍ତି | ଶ୍ରୀଲଙ୍କା | ଭାରତ, ବର୍ମା, ଲାଓସ, ଥାଇଲାଣ୍ଡ, ଭିଏତନାମ, କାମ୍ବୋଡ଼ିଆ, ଚୀନ, | ମାଲେସିଆ, ସୁମାତ୍ରା |
| ବିଜ୍ଞାନ ନାମ | *ଏଲିଫସ୍ ମାକ୍ସିମସ୍ ମାକ୍ସିମସ୍* | *ଏଲିଫସ୍ ମାକ୍ସିମସ୍ ଇଣ୍ଡିକସ୍* | *ଏଲିଫସ୍ ମାକ୍ସିମସ୍ ସୁମାତ୍ରାନସ୍* |
| ଓଜନ | ୩ - ୫ ଟନ୍ | ୨.୫ - ୪.୫ ଟନ୍ | ୨ - ୪ ଟନ୍ |
| ଉଚ୍ଚତା | ୨ - ୩.୫ ମି. | ୨ - ୩ ମି. | ୨ - ୨.୫ ମି. |
| ଦେହର ରଙ୍ଗ | ବହୁତ ଗାଢ଼ | ମଝିଲା ଗାଢ଼ | ଫିକା |
| ଦେହରେ ଫିକା ଛାପ | ଆଖି, ମୁହଁ, ଶୁଣ୍ଢ ଓ ପେଟ ଉପରେ ବଡ଼, ସ୍ପଷ୍ଟ ଛାପ | ମଝି ମଝିଆ ମାତ୍ରାର ଛାପ | ଖୁବ୍ କମ୍ ଛାପ ଦାଗ |
| କାନର ଆକାର | ସବୁଠାରୁ ବଡ଼ | ମଝି ମଝିଆ | ସାନ |
| ପଞ୍ଜରା ହାଡ଼ ସଂଖ୍ୟା | ୧୯ ଯୋଡ଼ା | ୧୯ ଯୋଡ଼ା | ୨୦ ଯୋଡ଼ା |

ଉତ୍ସ: ଏଲ୍‌ଟ୍ରିଙ୍ଗହାମ ଏସ୍. କେ., *ଦି ଇଲଷ୍ଟ୍ରେଟେଡ୍ ଏନ୍‌ସାଇକ୍ଲୋପିଡ଼ିଆ ଅଫ୍ ଏଲିଫ୍ୟାଣ୍ଟସ୍*, ସାଲାମାଣ୍ଡର ବୁକ୍‌ସ ଲିମିଟେଡ୍, ୟୁ.କେ., ୧୯୯୧



Digitized by srujanika@gmail.com

ତେଣୁ ପ୍ରଶ୍ନ ଉଠୁଛି ଯେ ହାତୀମାନଙ୍କୁ କିପରି ଗଣାଯାଏ । ଏହାର ଗୋଟିଏ ସରଳ ବାଟ ହେଉଛି ବିଭିନ୍ନ ସ୍ଥାନରେ ପଡ଼ିଥିବା ସେମାନଙ୍କର ଗୋବର ଗଦାଗୁଡ଼ିକୁ ଗଣିବା । ୧୯୭୦ ଦଶକଠାରୁ ଆମ ଦେଶରେ ପ୍ରତ୍ୟକ୍ଷ ଗଣନା ପଦ୍ଧତିରେ ଏସୀୟ ହାତୀଙ୍କ ସଂଖ୍ୟା ଆକଳନ କରାଯାଉଛି । (ଅଧିକ ତଥ୍ୟ ପାଇଁ ୯୩ ପୃଷ୍ଠା ଦେଖ)

ଏବେକାର ଆକଳନ ଅନୁସାରେ ଏସିଆର ୧୩ଟି ଦେଶର ପ୍ରାୟ ୫,୦୦,୦୦୦ ବର୍ଗ କି·ମି· ଅଞ୍ଚଳରେ ୩୫,୦୦୦ରୁ ୫୫,୦୦୦ ଯାଏଁ ଏସୀୟ ହାତୀ ଅଛନ୍ତି । ୧୯୮୫ରେ ଆଇୟୁସିଏନ୍ ଏବଂ ଏସ୍‌ଏସ୍‌ସି ଏସୀୟ ହାତୀ ବିଶେଷଜ୍ଞ ଦଳଙ୍କ ଗଣନା ଅନୁସାରେ ଭାରତରେ ଜଙ୍ଗଲୀ ହାତୀଙ୍କ ନ୍ୟୁନତମ ସଂଖ୍ୟା ହେଉଛି ୧୬,୫୯୫ ଏବଂ ସର୍ବାଧିକ ହେଉଛି ୨୨,୨୬୧ । ଏସୀୟ ହାତୀ ସଂରକ୍ଷଣ କେନ୍ଦ୍ରର ଡଃ ଆର୍· ସୁକୁମାରଙ୍କ ଅନୁସାରେ ଭାରତରେ ଜଙ୍ଗଲୀ ଏସୀୟ ହାତୀଙ୍କ ସଂଖ୍ୟା ୧୭,୩୧୦ରୁ ୨୨,୧୧୫ ହେବ । ହାତୀଙ୍କର ଘନତା ପାହାଡ଼ି ଅଞ୍ଚଳରେ ପ୍ରତି ବର୍ଗ କିଲୋମିଟରରେ ୦·୦୪ ହୋଇଥିବା ବେଳେ ଦକ୍ଷିଣର ଶୁଖିଲା ପର୍ଣ୍ଣମୋଚୀ ଜଙ୍ଗଲରେ ଏହା ବର୍ଗ କିଲୋମିଟର ପିଛା ୧ରୁ ୨ ହୁଏ ।

## ଏସୀୟ ହାତୀ ପ୍ରତି ବିପଦ

ବୟସ୍କ ହାତୀଙ୍କର କେହି ପ୍ରାକୃତିକ ଶତ୍ରୁ ନାହାନ୍ତି । ହାତୀଛୁଆ ଅତି ଛୋଟ ହୋଇଥିଲା ବେଳେ ବାଘ ତାହା ପାଇଁ ବିପଦର କାରଣ ହୋଇପାରେ । ଅବଶ୍ୟ ବାଘ ହାତୀଛୁଆ ମାରିଥିବାର ବହୁତ କମ୍ ଦୃଷ୍ଟାନ୍ତ ରହିଛି । ଘନ ଜଙ୍ଗଲରେ ଅନେକ ହାତୀ ମରିବା ଘଟଣା ଲୋକଲୋଚନକୁ ଆସେ ନାହିଁ । ବେଳେ ବେଳେ ବୟସ୍କ ହାତୀକୁ ବାଘ ମାରିବାର ଦେଖାଯାଇଛି । କିନ୍ତୁ ଏହାକୁ ସାଧାରଣ ବଦଳରେ ବ୍ୟତିକ୍ରମ ବୋଲି କୁହାଯାଇପାରେ ।

ହାତୀର ଜୀବନକାଳ ବେଶ୍ ଲମ୍ବା, ପ୍ରାୟ ୬୦-୭୦ ବର୍ଷ । ଖାଦ୍ୟ ଖାଇନପାରିବା ବା ହଜମ କରିନପାରିବା ଯୋଗୁଁ ସାଧାରଣତଃ ହାତୀର ପ୍ରାକୃତିକ ମୃତ୍ୟୁ ହୋଇଥାଏ । କାରଣ ୫୦ ବର୍ଷ ବୟସ ବେଳକୁ ହାତୀର ଶେଷ ପେଷଣ ଦାନ୍ତଗୁଡ଼ିକ ଖସିପଡ଼େ । ଫଳରେ ସେମାନଙ୍କର ଏତେ ବଡ଼ ଦେହ ପାଇଁ ଦରକାର ମୁତାବକ ଖାଦ୍ୟ ସେମାନେ ଆଉ ଖାଇ ପାରନ୍ତି ନାହିଁ । କିନ୍ତୁ ହାତୀର ଅଧିକାଂଶ ଅସ୍ୱାଭାବିକ ମୃତ୍ୟୁ ପାଇଁ ପରୋକ୍ଷ ଭାବରେ ହେଉ ବା ପ୍ରତ୍ୟକ୍ଷ ଭାବରେ ହେଉ ମଣିଷ ହିଁ ଦାୟୀ ହୋଇଥାଏ ।

ହାତୀଦାନ୍ତ ପାଇଁ ହାତୀ ଶିକାର ଯୋଗୁଁ ଏସୀୟ ହାତୀଙ୍କ ସଂଖ୍ୟା ଅଧିକ ବେଗରେ କମିଚାଲିଛି । ଏଥିପାଇଁ ହିଁ ଆମ ଦେଶରେ ପ୍ରତିବର୍ଷ ପ୍ରାୟ ୧୦୦ଟି ହାତୀ ମରାଯାଉଛି ।

ଲୋକସଂଖ୍ୟା ବଢ଼ିବା ଏବଂ ସେମାନଙ୍କ ଚାହିଦା ପୂରଣ ପାଇଁ ଚାଷଜମି ଓ ପ୍ରାକୃତିକ ସମ୍ବଳ ଦରକାର ହେବା ଫଳରେ ମଧ୍ୟ ହାତୀ ସଂଖ୍ୟା କମୁଛି । ହାତୀର ଆବାସସ୍ଥଳୀରେ ଏବଂ ତା'ର ସିବାଆସିବା ରାସ୍ତାରେ ଚାଷଜମି ଓ ଘର ତିଆରି ହେଉଛି । ଏହିପରି ଆବାସସ୍ଥଳୀ ନଷ୍ଟ ହେଲେ ହାତୀ ପ୍ରଥମେ ପ୍ରଭାବିତ ହୁଏ । କାରଣ ସ୍ଥଳଚର ଜୀବଙ୍କ ଭିତରେ ହାତୀ ସବୁଠାରୁ ବଡ଼ ଏବଂ ତା'ର ଚଲାବୁଲା ପାଇଁ ବିରାଟ ଅଞ୍ଚଳ ଦରକାର ହୁଏ । ଗୋଟିଏ ଦଳ ହାତୀଙ୍କ ଆବାସସ୍ଥଳୀ କେତେ ଶହରୁ କେତେ ହଜାର ବର୍ଗ କିଲୋମିଟର ହୋଇଥାଏ । ହାତୀମାନଙ୍କର ବହୁତ ପରିମାଣର ଖାଦ୍ୟ ଏବଂ ପାଣି ଦରକାର । ସେଥିପାଇଁ ତା'ର ଆବାସସ୍ଥଳୀ ବି ସେଇ ଅନୁସାରେ ବଡ଼ ହେବା ଜରୁରୀ । ହାତୀର ଆବାସସ୍ଥଳୀ ମଣିଷର ବାସସ୍ଥଳୀ ପାଇଁ ଉପଯୋଗୀ ହୋଇଥିବାରୁ ମଣିଷ ତା' ଜାଗା ଅଧିକାର କରିନେଉଛି ।

ଊନବିଂଶ ଶତାବ୍ଦୀରୁ ଭାରତରେ କଫି, ଚା, ରବର ଚାଷ କରିବା ପାଇଁ ଏବଂ ନିର୍ଦ୍ଦିଷ୍ଟ ପ୍ରକାରର ଗଛ ଲଗାଇବା ପାଇଁ ମଣିଷ ହାତୀର ଆବାସସ୍ଥଳୀର ଅନେକ ଅଂଶ ନଷ୍ଟ କରିଦେଉଛି । ଦକ୍ଷିଣ ଭାରତରେ ଇଉକାଲିପଟାସ୍, ଶାଗୁଆନ ଏବଂ ସିଲଭରଓକ୍ ଭଳି ଗୋଟିଏ ପ୍ରକାରର ଗଛ ବଡ଼ ବଡ଼ ଅଞ୍ଚଳରେ ଲଗାଯାଉଛି । ଏଭଳି ଏକଜାତୀୟ ବୃକ୍ଷରୋପଣ ଫଳରେ ହାତୀର ଆବାସସ୍ଥଳୀର ଶତକଡ଼ା ୧୦ ଭାଗ କମିଯାଇଛି । ବ୍ୟାପକ ଜଙ୍ଗଲ ଧ୍ୱଂସ ଏବଂ ଖଣିଖୋଳା ଆଦି କାମ ହାତୀର ଆବାସସ୍ଥଳୀ କମିବାର ଆଉ କିଛି କାରଣ । କେତେ ଜାଗାରେ ଜଳବିଦ୍ୟୁତ ପ୍ରକଳ୍ପ ବସାଯିବା ଯୋଗୁଁ ଆବାସସ୍ଥଳୀ ପାଣିରେ ବୁଡ଼ିଯାଇଛି । ଦୁଃଖର କଥା ଯେ ଜମି ଏବଂ ପ୍ରାକୃତିକ ସମ୍ବଳ ପାଇଁ ଚାଲିଥିବା ଏହି ପ୍ରତିଯୋଗିତାରେ ହାତୀ ହିଁ ହାରୁଛି । କାରଣ ସେମାନେ ଚଲାବୁଲା ପାଇଁ ବଡ଼ ଅଞ୍ଚଳ ପାଉନାହାନ୍ତି କି ଯଥେଷ୍ଟ ଖାଦ୍ୟ ଓ ସୁରକ୍ଷିତ ଆବାସ ପାଉନାହାନ୍ତି ।

ହାତୀର ଚଲାବୁଲା ପାଇଁ ଯଥେଷ୍ଟ ଜାଗା ତାକୁ ମିଳୁନଥିବାରୁ ଏବଂ ମଣିଷ ତା'ର ଜମି ଓ ପ୍ରାକୃତିକ ସମ୍ବଳ ସବୁ ନେଇଯାଉଥିବାରୁ ହାତୀ ମଣିଷ ଭିତରେ ସଂଘର୍ଷ ବଢୁଛି । ସର୍ବାଧିକ ଏସୀୟ ହାତୀ ଥିବା ଉତ୍ତରପୂର୍ବ ଭାରତରେ ହାତୀ-ମଣିଷ ସଂଘର୍ଷ ସବୁଠାରୁ ବେଶୀ ।

## ହାତୀ ବିଷୟରେ ଲିଖିତ ବିବରଣୀ

ଇତିହାସ ଲେଖାହେବା ଦିନଠାରୁ ଯୁଦ୍ଧ ସହାୟକ ଭାବରେ ବା ପୋଷାଜୀବ ଭାବରେ କିମ୍ବା ଧାର୍ମିକ ଏବଂ ସାଂସ୍କୃତିକ ଗୁରୁତ୍ୱର ଜୀବ ଭାବରେ ହାତୀ ଭାରତର ସବୁ ସମ୍ରାଜ୍ୟର ଏକ ଅଂଶ ହୋଇ ଆସିଛି । କିନ୍ତୁ କେବଳ ଷୋଡ଼ଶ-ସପ୍ତଦଶ ଶତାବ୍ଦୀରେ ମୋଗଲ ସମ୍ରାଟମାନଙ୍କର ଲେଖାରୁ ହାତୀର ସ୍ଥିତି ବିଷୟରେ କିଛି ନିର୍ଦ୍ଦିଷ୍ଟ ତଥ୍ୟ ମିଳିପାରୁଛି । ବାବର ତାଙ୍କ ଆତ୍ମ ବିବରଣୀରେ ଲେଖିଛନ୍ତି ଯେ "କଲ୍‌ପି ଜିଲ୍ଲାରେ ହାତୀ ଦେଖାଯା'ନ୍ତି । ଏଠାରୁ ପୂର୍ବ ଦିଗରେ ଉଜତର ଅଞ୍ଚଳକୁ ଆଗେଇଲେ ହାତୀଙ୍କର ସଂଖ୍ୟା ମଧ୍ୟ ବଢ଼ିଚାଲେ ।" ଏବେ କଲ୍‌ପି ଅଞ୍ଚଳଟି ରାଜସ୍ଥାନରେ ଅଛି ।

ବ୍ରିଟିଶ ସମୟର ଇତିହାସ ଏବଂ 'ହାତୀ ଦୋହ' ବା ହାତୀ ପୋଖରୀ ଭଳି ଜାଗାର ନାଁରୁ ଜଣାଯାଏ ଯେ ଅତୀତରେ ମଧ୍ୟପ୍ରଦେଶର ଅନେକ ଜାଗାରେ ହାତୀ ଦେଖାଯାଉଥିଲା । କିନ୍ତୁ ଏବେ ସେସବୁ ଅଞ୍ଚଳରେ ହାତୀ ଆଉ ନାହାନ୍ତି । ସପ୍ତଦଶ ଶତାବ୍ଦୀରେ ରାଜପିପଲା ଏବଂ ଦୋହାଦ ଭଳି ଗିରିସଂକଟ ଅଞ୍ଚଳରେ ଜନବସତି ଗଢ଼ି ଉଠିବାରୁ ମଧ୍ୟ ଭାରତର ହାତୀମାନେ ପଶ୍ଚିମ ଭାରତର ହାତୀଙ୍କ ସହିତ ସଂଯୋଗ ହରାଇ ବସିଲେ ।



Digitized by srujanika@gmail.com

## ଶିକାର

ଭାରତରେ ସପ୍ତଦଶ-ଅଷ୍ଟାଦଶ ଶତାବ୍ଦୀରେ ବ୍ରିଟିଶ ଶାସନ ସମୟରେ ହାତୀ ଶିକାର ଗୋଟିଏ ବଡ଼ ସଉକ ହୋଇଗଲା । କେରଳର ୱାଇନାଡ୍ ଅଞ୍ଚଳ ହାତୀ ଶିକାର ପାଇଁ ମୁଖ୍ୟ ଆକର୍ଷଣ ହୋଇଗଲା । ସେତେବେଳେ ଜଣେ ମଣିଷ ସେଠାରେ ପ୍ରାୟ ୩୦୦ ହାତୀ ମାରିଥିବାର ବି ଦୃଷ୍ଟାନ୍ତ ରହିଛି । ଅବଶ୍ୟ ଭାରତରେ ୧୯୭୨ ମସିହା ପରଠାରୁ ସଉକ ପାଇଁ ହାତୀ ଶିକାର କରିବା ନିଷେଧ କରାଯାଇଛି ।

## ଆବାସସ୍ଥଳୀ କମିବା

ଆବାସସ୍ଥଳୀ କମିଯିବା ଏସୀୟ ହାତୀଙ୍କ ସଂଖ୍ୟା କମିବାର ଗୋଟିଏ ମୁଖ୍ୟ କାରଣ ।

ହାତୀ ଗୋଟିଏ ବଡ଼ ଜୀବ ହୋଇଥିବାରୁ ତା'ର ବହୁତ ପରିମାଣର ଖାଦ୍ୟ ଓ ପାଣି ଦରକାର ହୁଏ । ଯଥେଷ୍ଟ ଜଙ୍ଗଲ ଥିଲେ ହିଁ କେବଳ ଏହା ସମ୍ଭବ ହୋଇପାରିବ । ତେଣୁ କୌଣସି ଆବାସସ୍ଥଳୀର ଅବସ୍ଥା ବିଷୟରେ ହାତୀ ସୂଚନା ଦେଇଥାଏ । ହାତୀ କୌଣସି ଆବାସର ମୂଳବିନ୍ଦୁ ଜୀବଜାତି ଭାବରେ କାମ କରେ । ଯେଉଁ ଆବାସକୁ ହାତୀ ପସନ୍ଦ କରେ, ତାକୁ ସମ୍ବର, ଚିତଳ, ବାରହା ଏବଂ ବାଘ, କେନ୍ଦୁଆ ବାଘ, ଡାହାଳ କୁକୁର ଭଳି ଶିକାରୀ ପଶୁ ବି ପସନ୍ଦ କରନ୍ତି । (ପୃଷ୍ଠା ୩୩ରେ ଅଧିକ ତଥ୍ୟ ରହିଛି ।)

ଗତ କେତେ ବର୍ଷ ଭିତରେ ଦେଶର ଜଙ୍ଗଲ ପରିମାଣ ବେଶ୍ କମିଯାଇଛି । ହାତୀର ଆବାସସ୍ଥଳୀକୁ ମଣିଷ ଦଖଲ କରିନେଇଛି । ଚା, କଫି ଭଳି ଅନେକ ଏକଜାତୀୟ ଉଦ୍ଭିଦ ଚାଷ ହେବା ଫଳରେ ବି ଅନେକ ଜଙ୍ଗଲ ଏବଂ ହାତୀ ଆବାସ ନଷ୍ଟ ହୋଇଛି । ଏସବୁର ଫଳରେ ଜଙ୍ଗଲରେ ହାତୀର ଖାଦ୍ୟ ଆଉ ଯଥେଷ୍ଟ ପରିମାଣରେ ମିଳୁନାହିଁ ଏବଂ ତା'ର ଚଲାବୁଲା କରିବାର ଅଞ୍ଚଳ ବି କମିଯାଉଛି ।

## ବିଖଣ୍ଡିତ ଆବାସସ୍ଥଳୀ

ହାତୀର ଆବାସସ୍ଥଳୀରେ ଚାଷଜମି, ଘର, ବନ୍ଧ, ଜଳଭଣ୍ଡାର ଆଦି ଗଢ଼ିଉଠିବା ଫଳରେ ତା'ର ଆବାସସ୍ଥଳୀ କେବଳ କମୁନାହିଁ, ବରଂ ଖଣ୍ଡ ଖଣ୍ଡ ହୋଇଯାଉଛି । ଏସବୁ ଅଞ୍ଚଳରେ ହାତୀଙ୍କ ପାଇଁ ଅତି ଛୋଟିଆ ଜାଗାଟିଏ ମାତ୍ର ରହିଯାଉଛି । ଫଳରେ ସେମାନେ ନିଜ ଅଞ୍ଚଳରେ ମନଇଛା ଚାଲବୁଲ କରିପାରୁ ନାହାନ୍ତି ବା ଯଥେଷ୍ଟ ଖାଦ୍ୟ ବି ପାଇପାରୁ ନାହାନ୍ତି ।

ଉଦାହରଣ ସ୍ୱରୂପ, ଅରୁଣାଞ୍ଚଳ ପ୍ରଦେଶରେ ପାହାଡ଼ର ପାଦଦେଶ ଏବଂ ପୋତୁଚାଷ ଉପତ୍ୟକାରେ ରାସ୍ତା ତିଆରି ଏବଂ ଅନ୍ୟ ବିକାଶମୂଳକ କାମସବୁ ହେବା ଫଳରେ ହାତୀର ଆବାସସ୍ଥଳୀ ପ୍ରତି ବର୍ଷ କମି କମି ଯାଉଛି । ଉତ୍ତରପ୍ରଦେଶରେ କର୍ବେଟ ଜାତୀୟ ଉଦ୍ୟାନରେ ରାମଗଙ୍ଗା ଜଳଭଣ୍ଡାର ଓ ଚିଲା ଋଷିକେଶ ପାୱାର ଚାନେଲ ସ୍ଥାପିତ ହେବା ଯୋଗୁଁ ବିଭିନ୍ନ ଋତୁ ଅନୁସାରେ ହାତୀ ବ୍ୟବହାର କରୁଥିବା ସଂଯୋଗ ପଥଗୁଡ଼ିକ ଖଣ୍ଡ ଖଣ୍ଡ ହୋଇଯାଇଛି । ଉତ୍ତର ପ୍ରଦେଶରେ ୩୦ ବର୍ଷ ପୂର୍ବେ ଯମୁନା ଓ ଶାରଦା ନଦୀ ମଝିରେ ଗୋଟିଏ ବିଶାଳ ହାତୀ ଆବାସ ରହିଥିଲା । ଏବେ କିନ୍ତୁ ତାହା ରାସ୍ତା ଏବଂ ରେଳରାସ୍ତା ତିଆରି ଯୋଗୁଁ ତିନି ଭାଗ ହୋଇଯାଇଛି ।

## ସଂଯୋଗ ପଥ କମିବା

ଆବାସ ଭାଗ ଭାଗ ହୋଇଯିବାରୁ ହାତୀ ଆଉ ତା'ର ବିଚରଣ ଇଲାକାରେ ମନଇଛା ଚାଲବୁଲ କରିପାରୁନାହିଁ । ଏହି ସମସ୍ୟା ଜାଣିବା ପରେ ପରିବେଶ ଏବଂ ଜଙ୍ଗଲ ମନ୍ତ୍ରଣାଳୟ ତରଫରୁ ଦେଶ ସାରା ହାତୀଙ୍କର ମୁଖ୍ୟ ରାସ୍ତାଗୁଡ଼ିକର ଏକ ସର୍ବେକ୍ଷଣ କରାଗଲା । ଅନେକ ଜାଗାରେ ଦେଖାଗଲା ଯେ ହାତୀର ଚାଲବୁଲ ଉପରେ ପ୍ରତିବନ୍ଧକ ଥିବାରୁ ସେମାନେ ଗୋଟିଏ ଅଞ୍ଚଳରୁ ଆଉ ଗୋଟିଏ ଅଞ୍ଚଳକୁ ଯାଇପାରୁନାହାନ୍ତି ।

### ଭାରତରେ ଜଙ୍ଗଲର ଅବକ୍ଷୟ




ଉତ୍ସ: ଅଗ୍ରୱାଲ, ଅନୀଲ, ନାରାୟଣ, ସୁନୀତା, ସେନ୍, ସରାବାନୀ, *ଦି ସିଟିଜେନ୍ସ୍ ଫିଫ୍‌ଥ୍ ରିପୋର୍ଟ, ପାର୍ଟ ୨: ଦି ଷ୍ଟାଟିଷ୍ଟିକ୍ସ୍ ଡାଟାବେଶ୍*, ସେଣ୍ଟର ଫର୍ ସାଇନ୍ସ୍ ଆଣ୍ଡ ଏନ୍‌ଭାଇରନମେଣ୍ଟ, ୧୯୯୯.

ସବୁଠାରୁ ବଡ଼ ଉଦାହରଣ ହେଉଛି ହରଦ୍ୱାର ଋଷିକେଶ ପାଖରେ । ଏଠାରେ ହାତୀ ଗଙ୍ଗାର ପୂର୍ବ ପଟରୁ ପଶ୍ଚିମ ପଟକୁ ବି ଯାଇପାରୁ ନାହାନ୍ତି । ଉତ୍ତରପୂର୍ବ ଭାରତରେ ଏହି ଅବସ୍ଥା ଆହୁରି ଖରାପ । ଏଠାରେ ପ୍ରାୟ ୯୨୬୬-୯୨୯୧ ହାତୀ ଅଛନ୍ତି । ଓଡ଼ିଶାରେ ବଉଳା କ୍ରୋମାଇଟ ଖଣି ଯୋଗୁଁ ଶିମିଳିପାଳ ହାତୀଙ୍କର ସଂଯୋଗ ପଥ ଏବେ ବିପଦରେ । ସାତକୋଶିଆ ପଥ ଭିତର ଦେଇ ଜାତୀୟ ରାଜପଥ ଯାଇଥିବାରୁ ତାହା ମଧ୍ୟ ପ୍ରଭାବିତ । ଏଠାରେ ହୋଟେଲ ସବୁ ଗଢ଼ି ଉଠିଥିବାରୁ ହାତୀମାନେ ନିଜ ନିଜର ଆବାସ ଭିତରେ ବି ବୁଲିପାରୁ ନାହାନ୍ତି ।

## ଆବାସସ୍ଥଳୀର କ୍ଷୟ

ହାତୀର ପ୍ରାକୃତିକ ଆବାସସ୍ଥଳୀର କ୍ଷୟହେବା ହାତୀ ଫସଲ ନଷ୍ଟ କରିବାର ମୁଖ୍ୟ କାରଣ ବୋଲି ଧରାଯାଏ । ଭଲ ଆବାସସ୍ଥଳୀ ମାନେ ନୁହେଁ ଯେ ହାତୀ ଫସଲ ଖାଇବାକୁ ଯିବନାହିଁ । କିନ୍ତୁ ଚାଷଜମି ଆଖପାଖର ହାତୀର ଆବାସ ନଷ୍ଟ ହୋଇଗଲେ ସେ ନିଶ୍ଚୟ ଫସଲ ଖାଇବ ।

ଉଦାହରଣ ସ୍ୱରୂପ, ରାଜାଜୀ ଅଭୟାରଣ୍ୟରେ ବହୁତ ପରିମାଣର ଗଛର ଡାଳ କାଟି ନିଆଯାଉଛି ଏବଂ ଗାଈଗୋରୁ ଚରାଯାଉଛି । ଫଳରେ ଏବେ ଶତକଡ଼ା ୫୭ ଭାଗ ଜାଗାରେ ନାଗଅଇରୀ (*ଲାଣ୍ଟାନା କାମାରା*), ବାସଙ୍ଗ (*ଆଧାଟୋଡା ଭାସିକା*) ଭଳି ଅଖାଦ୍ୟ ଗଛ ମାଡ଼ିଯାଇଛି । ଏଠାରେ କଷି (*ବ୍ରିଡେଲିଆ ରୋଟୁସା*), ଭାମଣା (*ଗ୍ରେୱିଆ ଟିଲେଫୋଲିଆ*), କୋଦାଳ



Digitized by srujanika@gmail.com

(ଷ୍ଟେରକୁଲିଆ ଭିଲୋସା) ଭଳି ହାତୀର ଖାଦ୍ୟ ଗଛ ଆଉ ପ୍ରାୟ ବଢୁନାହିଁ । ଦକ୍ଷିଣ ଭାରତର ମୁଦୁମଲାଇ ଅଭୟାରଣ୍ୟର ପର୍ଣ୍ଣମୋଚୀ ଜଙ୍ଗଲରେ ଗୋଚାରଣ ଏବଂ ନିଆଁ ଯୋଗୁଁ ଗୋଠ (ଜିଜିଫସ୍ ଜାଇଲୋପାଇରସ୍) ଭଳି ହାତୀର ପ୍ରିୟ ଖାଦ୍ୟଗଛ ଆଉ ମୋଟେ ବଢୁନାହିଁ ।

## ଫସଲ ନଷ୍ଟ

ହାତୀର ଆବାସସ୍ଥଳୀ ଭାଗ ଭାଗ ହୋଇଗଲେ ସେ ଫସଲ ନଷ୍ଟ କରିଥାଏ । ଖାଦ୍ୟ ଓ ପାଣି ଖୋଜିବୁଲିଲା ବେଳେ ସେମାନେ ଏହି ଫସଲ କିଆରି ଦେଖନ୍ତି । ଯେପର୍ଯ୍ୟନ୍ତ ହାତୀର ଆବାସସ୍ଥଳୀ ବେଶ୍ ବଡ଼ ଥାଏ ଓ ତା'ର ବୁଲିବା ବାଟରେ ଚାଷଜମି ଆସେ ନାହିଁ, ସେପର୍ଯ୍ୟନ୍ତ ହାତୀ-ମଣିଷ ସଂଘର୍ଷ ବି ଦେଖାଯାଏ ନାହିଁ । କିନ୍ତୁ ହାତୀର ଚଲାପଥରେ ମଣିଷର ବସତି ଓ ଚାଷଜମି ପଡ଼ିଲେ ସଂଘର୍ଷ ଲାଗିବାର ସମ୍ଭାବନା ବେଶ୍ ବଢ଼ିଯାଏ ।

ଆଜିକାଲି ମଣିଷର ଜବରଦଖଲ ଯୋଗୁଁ ହାତୀର ଆବାସସ୍ଥଳୀ କ୍ରମେ ବେଶି ବେଶି ଭାଗ ହୋଇଯାଉଛି । ଫଳରେ ଛୋଟ ଛୋଟ ଜଙ୍ଗଲରେ ହାତୀକୁ ରହିବାକୁ ହେଉଛି ଏବଂ ତା' ଚାରିପଟେ ବିରାଟ ଅଞ୍ଚଳରେ ଚାଷ ଜମି ରହୁଛି । ଏହି ଛୋଟ ଅଞ୍ଚଳଗୁଡ଼ିକ ବର୍ଷକୁ ବର୍ଷ ଆହୁରି ବେଶି କ୍ଷୟ ହୋଇଚାଲୁଛି । ଏସବୁ ଫଳରେ ହାତୀ ବାରମ୍ବାର ଲୋକଙ୍କ ସଂସ୍ପର୍ଶରେ ଆସି ଫସଲ ଖାଇବାର ସୁଯୋଗ ପାଉଛି ଏବଂ ବାଧ୍ୟ ବି ହେଉଛି ।

ଅଧିକାଂଶ ସମୟରେ ଧାନ, ଆଖୁ, ମକା ଭଳି ସ୍ଥାନୀୟ ଫସଲକୁ ଖାଇବା ହାତୀ ପାଇଁ ସହଜ ହୋଇଥାଏ । ଜଙ୍ଗଲରେ ଯଥେଷ୍ଟ ଖାଦ୍ୟ ଥିଲେ ବି ହାତୀ ଥରେ ଏଭଳି ଫସଲ ଖାଇଥିଲେ ବାରମ୍ବାର ତାକୁ ଖାଇବା ପାଇଁ ଆସେ । ଏହାର ଗୋଟିଏ କାରଣ ହେଉଛି ଚାଷଜମିରୁ ଯେଉଁ ଖାଦ୍ୟ ସେ ପାଏ ସେଗୁଡ଼ିକ ଅଧିକ ପୁଷ୍ଟିକର । ଆଉ ଗୋଟିଏ କାରଣ ହେଉଛି ଯେ ଏଗୁଡ଼ିକ ପାଇବା ପାଇଁ ତାକୁ ବିଶେଷ ପରିଶ୍ରମ କରିବାକୁ ପଡ଼େନାହିଁ । ସେଥିପାଇଁ ଏବେ ହାତୀ ଆବାସ ଆଖପାଖର ଫସଲକୁ ହାତୀ ଆକ୍ରମଣ କରିବା ଗୋଟିଏ ନିୟମିତ ଘଟଣା ହୋଇଗଲାଣି ।

ଦକ୍ଷିଣ ଭାରତ, ଦକ୍ଷିଣ ବିହାର ଓ ତାକୁ ଲାଗିରହିଥିବା ଓଡ଼ିଶାର ଅଞ୍ଚଳରେ ହାତୀ ଫସଲ ନଷ୍ଟ କରିବା ଏକ ବହୁତ ବଡ଼ ସମସ୍ୟା । ହାତୀ-ମଣିଷ ସଂଘର୍ଷ ଯୋଗୁଁ ପଶ୍ଚିମବଙ୍ଗରେ ସବୁଠାରୁ ବେଶି ଅସୁବିଧା ଦେଖାଯାଉଛି । ଫସଲ ନଷ୍ଟ ଯୋଗୁଁ ହିଁ ହାତୀ ମଣିଷର ସଂଘର୍ଷ ହେଉଛି ।

ହାତୀ-ମଣିଷ ସଂଘର୍ଷରେ ଉଭୟ ହାତୀ ଏବଂ ମଣିଷର କ୍ଷତି ହୋଇଥାଏ । ହାତୀ ଫସଲ, ଗଛପତ୍ର, ଘର ନଷ୍ଟ କରିବା ଯୋଗୁଁ ମଣିଷର କ୍ଷତି ହୁଏ । ବେଳେ ବେଳେ ଏହି ସଂଘର୍ଷରୁ ମଣିଷର ମୃତ୍ୟୁ ମଧ୍ୟ ହୁଏ । ହାତୀର ବି ଏହି ସଂଘର୍ଷରେ ବିଶେଷ କ୍ଷତି ହୁଏ । ସେମାନେ ଆସିଲେ ତାଙ୍କୁ ହଇରାଣ କରାଯାଏ, ଗୋଡ଼ାଯାଏ, ଭଗେଇ ଦିଆଯାଏ । ଅନେକ ସମୟରେ ଏହି ସଂଘର୍ଷରୁ ହାତୀ ଦେହରେ ଖଣ୍ଡିଆ ହେବାର ବି ଦେଖାଯାଏ । ବେଳେ ବେଳେ ହାତୀକୁ ମାରି ବି ଦିଆଯାଏ ।

## ହାତୀ-ମଣିଷ ସଂଘର୍ଷର କାରଣ

ହାତୀ-ମଣିଷ ସଂଘର୍ଷ କୌଣସି ଗୋଟିଏ ମାତ୍ର କାରଣରୁ ଆସେ ନାହିଁ । ଉପରର ଆଲୋଚନାରେ ସୂଚିତ ସଂଘର୍ଷର କିଛି ମୁଖ୍ୟ କାରଣ ହେଉଛି -

**ଆବାସସ୍ଥଳୀ କମିବା ଏବଂ ଖଣ୍ଡିତ ହେବା:** ହାତୀର ଆବାସସ୍ଥଳୀରେ ଚାଷଜମି, ଚା ବଗିଚା, ରାସ୍ତା, ରେଳରାସ୍ତା, ଖଣି, କାରଖାନା, ଜଳସେଚନ ପ୍ରକଳ୍ପ ଆଦି ଗଢ଼ିଉଠୁଛି । ଏସବୁ ଆବାସସ୍ଥଳୀକୁ ଛୋଟ କରିଦେଉଛି ଏବଂ ଖଣ୍ଡ ଖଣ୍ଡ କରିଦେଉଛି । ତେଣୁ ଏସବୁ ଅଞ୍ଚଳର ହାତୀ ବାରମ୍ବାର ମଣିଷ ସଂସ୍ପର୍ଶରେ ଆସୁଛି ଏବଂ ତାଙ୍କ ମଧ୍ୟରେ ସଂଘର୍ଷ ହେଉଛି ।

**ଚାରଣ ଭୂମି:** ଜଙ୍ଗଲ ଭିତରେ ଗାଈଗୋରୁ ଚରିବା ମଧ୍ୟ ଗୋଟିଏ ବଡ଼ ବିପଦ ହେଲାଣି । ଏହା ଯୋଗୁଁ ହାତୀ ଏବଂ ଅନ୍ୟ ତୃଣଭୋଜୀଙ୍କର ଖାଦ୍ୟ ତ କମୁଛି । ଅନେକ ରୋଗ ମଧ୍ୟ ସେମାନଙ୍କ ଭିତରେ ବ୍ୟାପୁଛି । ତାଳପତ୍ର

## ପୋଡୁଚାଷ

ପୋଡୁଚାଷ ବିଷୁବ ମଣ୍ଡଳୀୟ ଆର୍ଦ୍ର ଜଙ୍ଗଲରେ ରହୁଥିବା ଲୋକଙ୍କର ଏକ ପାରମ୍ପରିକ କୃଷି ପ୍ରଣାଳୀ । ଏଥିପାଇଁ ପ୍ରଥମେ ଗଛ କାଟି ଜଙ୍ଗଲ ସଫା କରାଯାଏ । ଜଙ୍ଗଲ ସଫା ହେବା ପରେ ବାକି ଗଛ ସବୁକୁ ନିଆଁ ଲଗାଇ ପୂରା ସଫା କରାଯାଏ । ଏଥିରୁ ବାହାରୁଥିବା ପାଉଁଶ ଜମିକୁ ଉର୍ବର କରେ ଏବଂ ଚାଷ ଉପଯୋଗୀ କରାଏ । ଗୋଟିଏ ଜାଗାରେ କିଛି ବର୍ଷ ଚାଷ କଲା ପରେ ଜମିର ଉର୍ବରତା କମିଯାଏ, ତେଣୁ ଚାଷୀମାନେ ଜଙ୍ଗଲରେ ଆଉ ଗୋଟିଏ ଜାଗାକୁ ଚାଲିଯାଆନ୍ତି । ସେଠି ପୁଣି ସଫା କରି ଚାଷ ଆରମ୍ଭ କରନ୍ତି । ପୁରୁଣା ଜାଗାରେ ପୁଣି ଗଛ ଉଠିଯାଏ । ଅତୀତରେ ବଡ଼ ଜଙ୍ଗଲରେ ଅଳ୍ପ ଲୋକ ରହୁଥିବାର ଯେକୌଣସି ଜାଗାରେ ପୁଣିଥରେ ଚାଷ ହେବା ଆଗରୁ ସେଠାରେ ନୂଆ ଜଙ୍ଗଲ ସୃଷ୍ଟି ହେବା ପାଇଁ ଯଥେଷ୍ଟ ସମୟ ମିଳୁଥିଲା । ତେଣୁ ଏପ୍ରକାର ଚାଷ ଚିରନ୍ତନ ଥିଲା ।

କିନ୍ତୁ ଏବେ ଆଉ ସେଭଳି ନାହିଁ । ଜଙ୍ଗଲ ପୁଣିଥରେ ବଢ଼ିବା ପାଇଁ ଲୋକମାନେ ଯଥେଷ୍ଟ ସମୟ ଦେଉନାହାନ୍ତି । ଏବେ ବହୁତ ଲୋକ ଅନେକ ଜଙ୍ଗଲ ଅଞ୍ଚଳ ପୋଡ଼ି ଦେଉଛନ୍ତି । ଫଳରେ ବଡ଼ ଅଞ୍ଚଳରେ ଜଙ୍ଗଲ ନଷ୍ଟ ହେଉଛି ଏବଂ ଅଧିକାଂଶ ଜଙ୍ଗଲ ଚାଷଜମିରେ ପରିଣତ ହୋଇଯାଉଛି । ଉତ୍ତରପୂର୍ବ ଭାରତର ମେଘାଳୟ, ଅରୁଣାଚଳ ପ୍ରଦେଶ, ମଣିପୁର, ମିଜୋରାମ, ନାଗାଲାଣ୍ଡ ଏବଂ ତ୍ରିପୁରାରେ ପୋଡୁଚାଷ ହାତୀର ଆବାସ ଉପରେ ବହୁତ ଖରାପ ପ୍ରଭାବ ପକାଉଛି । ଏଠାରେ ହାତୀର ଆବାସସ୍ଥଳୀରୁ ବେଶ୍ କିଛି ଜଙ୍ଗଲ ସଫା କରି ଚାଷଜମିରେ ପରିଣତ କରାଯାଇଛି । ତ୍ରିପୁରାରେ ୧୯୫୦-୧୯୮୦ ଭିତରେ ସଂରକ୍ଷିତ ଜଙ୍ଗଲର ଶତକଡ଼ା ୨୫ ଭାଗ ବା ପ୍ରାୟ ୧୬୬୦ ବର୍ଗ କି.ମି. ଅଞ୍ଚଳ ଚାଷ ପାଇଁ ସଫା କରାହୋଇଛି । ନାଗାଲାଣ୍ଡରେ ଶତକଡ଼ା ୩୫ ଭାଗ ବା ପ୍ରାୟ ୫୭୪୮ ବର୍ଗ କି.ମି. ଅଞ୍ଚଳରେ ପୋଡୁଚାଷ କରାଯାଉଛି । ମେଘାଳୟରେ ଜୟନ୍ତିଆ ପାହାଡ ସଂରକ୍ଷିତ ଜଙ୍ଗଲର ଶତକଡ଼ା ୪୩ ଭାଗ ବା ୩୧୧୫ ବର୍ଗ କି.ମି. ପୋଡୁଚାଷ ଯୋଗୁଁ ନଷ୍ଟ ହୋଇଯାଇଛି । ଓଡ଼ିଶାର ସାତୋଟି ଜଙ୍ଗଲ ବିଭାଗର ଶତକଡ଼ା ୫୫ ଭାଗ ବା ୧୧,୦୦୦ ବର୍ଗ କି.ମି. ହାତୀ ରହୁଥିବା ଅଞ୍ଚଳରେ ପୋଡୁଚାଷ କରାଯାଉଛି ।



Digitized by srujanika@gmail.com

କମିଯିବାରୁ ହାତୀ ଜଙ୍ଗଲରେ ବେଶି ସମୟ ନବୁଲି ଚାଷଜମି ଆଡ଼କୁ ମୁହାଁଉଛି ।

**ଫସଲର ଲୋଭ:** ହାତୀ ବହୁତ ପରିମାଣର ଖାଦ୍ୟ ଖାଏ । ଚାଷଜମିରୁ ଅଳ୍ପ ପରିଶ୍ରମରେ ବେଶ୍ ପରିମାଣର ପୁଷ୍ଟିକର ଖାଦ୍ୟ ତାକୁ ମିଳିଯାଏ । ଏଥିଯୋଗୁଁ ଜଙ୍ଗଲରେ ଯଥେଷ୍ଟ ଖାଦ୍ୟ ଥିଲେ ବି ଫସଲ ପ୍ରତି ହାତୀର ଲୋଭ ହୁଏ ।

**ବିଶୃଙ୍ଖଳା:** ମଣିଷ ଏବଂ ଅନ୍ୟ ଜୀବଙ୍କର କେତେକ କାମ ହାତୀଙ୍କୁ ବିରକ୍ତ କରେ । ଜୀବଜନ୍ତୁ ଚରିବା, ଜାଳେଣୀ କାଠ କାଟିବା ଯୋଗୁଁ ହାତୀର ଖାଦ୍ୟ କମିବାରୁ ସେ ବିରକ୍ତ ହୁଏ । ବେଳେ ବେଳେ ମଇଁଷି ହାତୀର ପୋଖରୀରେ ପରିସ୍ରା କରିବା ବା କାଦୁଅରେ ନଟପଟ ହେବା ଯୋଗୁଁ ହାତୀ ସେ ପାଣି ଆଉ ପିଇପାରେ ନାହିଁ । ଏସବୁ ଯୋଗୁଁ ହାତୀପଲ ସେ ଜାଗାକୁ ଯାଆନ୍ତି ନାହିଁ ।



## ଏକଜାତୀୟ ବୃକ୍ଷରୋପଣ

ଦେଶର ଅନେକ ଅଞ୍ଚଳରେ ପ୍ରାକୃତିକ ଜଙ୍ଗଲ କଟାଯାଇ ବ୍ୟବସାୟିକ କାଠ ବା କାଗଜକଳ ପାଇଁ ଗଛ ଲଗାଯାଉଛି । ଦକ୍ଷିଣ ଭାରତରେ ହାତୀ ଆବାସସ୍ଥଳୀର ଶତକଡ଼ା ୧୦ ଭାଗ ଅଞ୍ଚଳରେ ଶାଗୁଆନ, ଇଉକାଲିପଟାସ, ପିଇଭର ଓକ୍ ଭଳି ଏକଜାତୀୟ ଗଛ ଲଗାଯାଉଛି । ଏଗୁଡ଼ିକ ହାତୀ ଖାଏନାହିଁ. ଉତ୍ତରପ୍ରଦେଶରେ ୧୯୬୬ରୁ ୧୯୭୬ ମସିହା ଭିତରେ ହାତୀ ଆବାସସ୍ଥଳୀର ତିନିଭାଗରୁ ଭାଗେ ଅଞ୍ଚଳରେ ଇଉକାଲିପଟାସ ଏବଂ ଅନ୍ୟ ଶୀଘ୍ର ବଢୁଥିବା ଗଛ ଲଗାଯାଇଛି ।

ଅଧିକାଂଶ କ୍ଷେତ୍ରରେ ପ୍ରାକୃତିକ ଜଙ୍ଗଲ ତୁଳନାରେ ଏକଜାତୀୟ ଗଛ ଲାଗିଥିବା ଅଞ୍ଚଳରେ ଖାଦ୍ୟ ଉପଯୋଗୀ ଗଛ କମ୍ ଥାଏ । ଗଛ ତଳେ ଉଠୁଥିବା ଛୋଟ ବୁଦା ଗଛ ସବୁ ହାତୀର ବଡ଼ ଗୁରୁତ୍ୱପୂର୍ଣ୍ଣ ଖାଦ୍ୟ । କିନ୍ତୁ ଲଗାଯାଉଥିବା ଗଛ ଭଲ ବଢ଼ିବା ପାଇଁ ତା' ତଳୁ ବୁଦା ସବୁ ସଫା କରିଦିଆଯାଉଛି । ଫଳରେ ହାତୀ ପାଇଁ ଖାଦ୍ୟ କମିଯାଉଛି । ଗଛ ଲଗାଇବା ପାଇଁ ପାହାଡ଼ର ଢାଲୁ ଅଞ୍ଚଳରୁ ବି ବୁଦା ଓ ଗୁଳ୍ମ ଆଦି ସଫା କରାଯାଉଥିବାରୁ ସେଠାର ଉପର ମାଟି ଧୋଇଯାଉଛି ।

**ପାଣି ପାଇଁ ପ୍ରତିଯୋଗିତା:** ଦେଶର ଅନେକ ଜାଗାରେ ଦେଖାଯାଇଛି ଯେ ପାଣିର ଅଭାବ ସମୟରେ ହାତୀ ଆସି ଗାଁ ପୋଖରୀ ଏବଂ ଜଳସେଚନ ଭଣ୍ଡାରରୁ ପାଣି ପିଇଦେଉଛି । ଏପରିକି ଚାଷଜମିର ପାଣି ବି ପିଇଦେଉଛି ।

## ଅବୈଧ ଶିକାର

ଅନେକ ଏସୀୟ ଦେଶରେ ଅବୈଧ ଭାବରେ ଅନେକ ହାତୀ ଶିକାର କରାଯାଉଛି । ଭାରତରେ ଶିକାର ଯୋଗୁଁ ହାତୀ ସଂଖ୍ୟା ଅନେକ କମିଯାଉଛି । କିନ୍ତୁ ଅତୀତରେ ହାତୀ ଶିକାର ଏତେ ହେଉନଥିଲା । ଏବେ ବିଶେଷ କରି ଦକ୍ଷିଣ ଭାରତର ସଂରକ୍ଷିତ ଜଙ୍ଗଲଗୁଡ଼ିକରେ ହେଉଥିବା ହାତୀ ଶିକାର ଏକ ଚିନ୍ତାର କାରଣ ।

ଭାରତ ଏବଂ ଆଫ୍ରିକାରେ ଶିକାରୀ ହାତୀ ଶିକାର କରିବା ପାଇଁ ଖରାଦିନର ଶୁଖିଲା ପାଗ ବେଶି ପସନ୍ଦ କରନ୍ତି । କାରଣ ଏହି ସମୟରେ ଖାଦ୍ୟ ଓ ପାଣିର ଅଭାବ ଥାଏ ଏବଂ ମାତ୍ର ଅଳ୍ପ କେତେ ଜାଗାରେ ମିଳେ । ତେଣୁ ସେହିସବୁ ଜାଗାରେ ହାତୀ ଶିକାର ପାଇଁ ତାଙ୍କୁ ସୁବିଧା ହୁଏ ।

## ହାତୀଦାନ୍ତ ପାଇଁ ଲୋଭ

କେବଳ ଅଣ୍ଡିରା ଏସୀୟ ହାତୀର (ତା' ବି ସମସ୍ତଙ୍କର ନୁହେଁ) ଲମ୍ବା ଦାନ୍ତ ଥାଏ । ସେଥିପାଇଁ ଏଇମାନେ ହେଉଛନ୍ତି ଶିକାରୀଙ୍କ ମୁଖ୍ୟ ଲକ୍ଷ । ଏଭଳି ବାଛିକରି ହାତୀ ମାରିବା ଯୋଗୁଁ ଅଣ୍ଡିରା ହାତୀଙ୍କ ସଂଖ୍ୟା ବହୁତ କମିଗଲାଣି । ଫଳରେ ଲିଙ୍ଗ ଅନୁପାତ ବି ବଦଳିଗଲାଣି । କେରଳର ପେରିୟାର ବାଘ ସଂରକ୍ଷଣ ଜଙ୍ଗଲରେ ଅଣ୍ଡିରା ହାତୀଙ୍କ ସଂଖ୍ୟା ବହୁତ କମିଯିବାରୁ ଏବେ ସେଠାରେ ପ୍ରଜନନ ମଧ୍ୟ ବହୁତ କମିଗଲାଣି ।

ପ୍ରଜନନକ୍ଷମ ଅଣ୍ଡିରାଙ୍କ ସଂଖ୍ୟା କମିଯିବାରୁ ଆନୁବଂଶିକ ବିବିଧତା ମଧ୍ୟ କମିଯାଉଛି । ଏହା ହାତୀର ତିଷ୍ଠି ରହିବାରେ ଗୋଟିଏ ବଡ଼ ବିପଦ ସୃଷ୍ଟି କରିବ । ଏପରି ସମୟ ଆସିପାରେ ଯେ ଦାନ୍ତବାଲା ହାତୀ ନଥିବାରୁ ଦାନ୍ତବିହୀନ ଅଣ୍ଡିରା ବା ମାଖନା କେବଳ ପ୍ରଜନନ କରିବେ । ଫଳରେ ଅଳ୍ପସଂଖ୍ୟକ ଦାନ୍ତବାଲା ହାତୀ ଜନ୍ମ ହେବେ । ଆନୁବଂଶିକ ଅସୁବିଧା ସହିତ ଦାନ୍ତବାଲା ହାତୀ ନଥିବାରୁ ସୌନ୍ଦର୍ଯ୍ୟଗତ ଏବଂ ସାଂସ୍କୃତିକ କ୍ଷତି ମଧ୍ୟ ହେବ । ମାଖନାମାନେ ଶିକାରୀଙ୍କ କବଳରୁ ବଞ୍ଚିଯିବେ । ଏମାନେ ବି ଦେଖିବାକୁ ସୁନ୍ଦର ଜୀବ, କିନ୍ତୁ ଦାନ୍ତବାଲା ହାତୀ ଉଭେଇ ଯିବାଟା ନିଶ୍ଚୟ ବହୁତ ବଡ଼ କ୍ଷତି ହେବ ।

ହାତୀ ଶିକାର ଫଳରେ ସାଧାରଣ ଭାବରେ ଜଣାପଡୁନଥିବା ପ୍ରକାରର ଆହୁରି ଅନେକ କ୍ଷତି ମଧ୍ୟ ହୁଏ । ନୀଳଗିରି ଅଞ୍ଚଳର ରେଡିଓ-ଗଳାବନ୍ଧ ଲାଗିଥିବା ଗୋଟିଏ ହାତୀ ଦେହରେ ଥରେ ଗୁଳି ବାଜିଥିଲା । ସେ ହାତୀଟି ବର୍ଷସାରା ମସ୍ତରେ ଆସିଲା ନାହିଁ । ଏହା ତା'ର ପ୍ରଜନନ କ୍ରିୟାରେ ବାଧା ଆଣିଲା । ଶିକାର ଯୋଗୁଁ ବୟସ୍କ ଅଣ୍ଡିରା ମରିଯାଉଥିବାରୁ ପ୍ରଜନନ ପାଇଁ ଅଳ୍ପ



Digitized by srujanika@gmail.com

ବୟସ୍କ ଅଣ୍ଡିରାମାନେ ରହିଯାଉଛନ୍ତି । ପ୍ରଜନନ ପାଇଁ ଏମାନେ ବେଶ୍ ସାନ ।

## ମାଂସ ପାଇଁ ଶିକାର

ଦକ୍ଷିଣପୂର୍ବ ଏସିଆର ଅନେକ ଅଞ୍ଚଳରେ କେତେ ବର୍ଷ ଧରି ମାଂସ ପାଇଁ ହାତୀ ଶିକାର କରାଯାଉଛି । ଭାରତର ମେଘାଳୟ, ତ୍ରିପୁରା ଏବଂ ଆସାମର କିଛି ଅଂଶରେ ବି ମାଂସ ପାଇଁ ହେଉଥିବା ହାତୀ ଶିକାର ଏବେ ଚିନ୍ତାର କାରଣ ହୋଇଗଲାଣି । ଉତ୍ତରପୂର୍ବ ଅଞ୍ଚଳରେ ଗୁପ୍ତ ଶିବିର ଏବଂ ଉଗ୍ରବାଦୀ ସଂସ୍ଥାମାନଙ୍କରେ ହାତୀ ମାଂସ ଅତି ପ୍ରିୟ । କାରଣ ହାତୀଠାରୁ ଅଳ୍ପ ବିପଦରେ ବହୁତ ପରିମାଣର ମାଂସ ସେମାନଙ୍କୁ ଏକା ସାଙ୍ଗରେ ମିଳିଯାଏ ।

### ଭାରତରେ ଅବୈଧ ହାତୀଶିକାର




ଉତ୍ସ: ମେନନ୍, ବିବେକ, ସୁକୁମାର, ଆର, କୁମାର, ଅଶୋକ, *ଏ ଗଡ୍ ଇନ୍ ଡିସ୍‌ଟ୍ରେସ୍*, ଏସିଆନ୍ ଏଲିଫାଣ୍ଟ କନ୍‌ଜରଭେସନ୍ ସେଣ୍ଟର, ବାଙ୍ଗାଲୋର, ୧୯୯୭.

## ହାତୀଦାନ୍ତ

ହାତୀର ଲମ୍ବା ଦାନ୍ତ ପାଇଁ ଏସୀୟ ହାତୀ ଏବଂ ଆଫ୍ରିକୀୟ ହାତୀଙ୍କୁ ଶିକାର କରାଯାଉଛି । ହାତୀଦାନ୍ତ ବା *ଆଇଭରୀ* ଶବ୍ଦଟି କେବଳ ପ୍ରୋବୋସିଡେଙ୍କର ଲମ୍ବାଦାନ୍ତକୁ ବୁଝାଏ । ହାତୀଦାନ୍ତ ଛଡ଼ା ଜଳହସ୍ତୀ, ନରହ୍ୱାଲ ଆଦିଙ୍କର ଲମ୍ବା ଦାନ୍ତ ମଧ୍ୟ ଆନ୍ତର୍ଜାତୀୟ ବଜାରରେ ବିକ୍ରି କରାଯାଏ ।

## ଭାରତର ମୁଖ୍ୟ ହାତୀଶିକାର କେନ୍ଦ୍ର

ଏହା ସତ କିନ୍ତୁ ଦୁଃଖର କଥା ଯେ ହାତୀକୁ ଭାରତରେ ଉଚ୍ଚ ସମ୍ମାନ ଦିଆଯାଉଥିଲେ ବି ତା'ର ଦାନ୍ତ ପାଇଁ ତାକୁ ଶିକାର କରାଯାଏ । ଉଦାହରଣ ସ୍ୱରୂପ, ଭାରତରେ ୧୯୮୬ରେ ହାତୀ ଶିକାର ସଂଖ୍ୟା ୨୨ରୁ ବଢ଼ି ୧୯୯୫ରେ ତାହା ୮୮ ଏବଂ ୨୦୦୦-୨୦୦୧ରେ ୬୦ ହୋଇଥିଲା । ୧୯୮୦ ଦଶକରେ ଦକ୍ଷିଣ ଭାରତରେ ସବୁଠାରୁ ଅଧିକ ହାତୀ ଶିକାର କରାଯାଇଥିଲା । ଆନ୍ତର୍ଜାତୀୟ ବଜାରରେ ହାତୀଦାନ୍ତର ବେପାର ନିଷିଦ୍ଧ ହେବା ପରେ ହାତୀ ଶିକାର କିଛି ପରିମାଣରେ କମିଛି । ୧୯୯୭ ମସିହାରେ ହୋଇଥିବା ହାରାରେ ସମ୍ମିଳନୀରେ ଆଫ୍ରିକୀୟ ହାତୀଦାନ୍ତର ବେପାର ଉପରେ କିଛିଟା ରିହାତି ଘୋଷଣା ହେବା ପରେ ଦେଶରେ ସବୁଠାରୁ ଅଧିକ ହାତୀ ଶିକାର କରାଯାଇଛି । (ଆଫ୍ରିକୀୟ ହାତୀଦାନ୍ତର ଆନ୍ତର୍ଜାତିକ ବ୍ୟବସାୟ ଏବଂ ଏସୀୟ ହାତୀଦାନ୍ତ ଉପରେ ତା'ର ପ୍ରଭାବ ବିଷୟରେ ପୃଷ୍ଠା ୬୮ରେ ଅଧିକ ତଥ୍ୟ ରହିଛି ।)

## ହାତୀଦାନ୍ତ ବ୍ୟବସାୟ

ଆଜିକାଲି ହାତୀଦାନ୍ତର ବ୍ୟବସାୟ ବେଆଇନ ଏବଂ ହାତୀଦାନ୍ତ ବିକିବା ପୂରା ନିଷିଦ୍ଧ । ତଥାପି ହାତୀଦାନ୍ତର କିଣାବିକା ପାଇଁ ଏକ ଚୋରା ବଜାର ରହିଛି । ଚୀନ ଓ ଜାପାନରେ ହାତୀଦାନ୍ତ ଚୋରା ବ୍ୟବସାୟର ସବୁଠାରୁ ବଡ଼ କେନ୍ଦ୍ର ରହିଛି ।

ବେଆଇନ ହୋଇଥିଲେ ବି ହାତୀଦାନ୍ତର ଚାହିଦା ବହୁତ । ଆଜିକାଲି ଏକ କିଲୋଗ୍ରାମ ଏସୀୟ ହାତୀଦାନ୍ତର ମୂଲ୍ୟ ପ୍ରାୟ ୧୨,୦୦୦ ଟଙ୍କା । ଭାରତରେ ହାତୀଦାନ୍ତର ମୂଲ୍ୟ ୧୯୮୯ ମସିହାରେ ୧୮୫ ଆମେରିକୀୟ ଡଲାର ଥିବାବେଳେ ୧୯୯୬ରେ ତାହା ବଢ଼ି ୨୮୫ ଆମେରିକୀୟ ଡଲାର ହୋଇଛି (୧୯୮୯ରେ ପ୍ରାୟ ୨,୭୭୦ ଟଙ୍କାରୁ ୧୯୯୬ରେ ୧୧,୯୭୦ ଟଙ୍କା) । ଭାରତରେ ହାତୀଦାନ୍ତ ଖୋଦେଇ ପାଇଁ ଜୟପୁର ହେଉଛି ମୁଖ୍ୟ କେନ୍ଦ୍ର । ୧୯୯୮ ମସିହାରେ ଜୟପୁରରେ ହାତୀଦାନ୍ତ ବ୍ୟବସାୟୀମାନେ କିଲୋଗ୍ରାମ ପିଛା ୮,୦୦୦ରୁ ୧୦,୦୦୦ ଟଙ୍କା ଦେଇ କିଣିଥିବାର ଜଣାଅଛି । ସେହି ସମୟରେ ଗୁଜରାଟରେ ହାତୀଦାନ୍ତର ମୂଲ୍ୟ କିଲୋଗ୍ରାମ ପ୍ରତି ୧୦,୦୦୦ରୁ ୧୫,୦୦୦ ଟଙ୍କା ଥିଲା ।

## ଏସୀୟ ହାତୀଦାନ୍ତ ବ୍ୟବସାୟ କେନ୍ଦ୍ର

ଜାପାନ ଏବଂ ଚୀନ ହେଉଛି ଏସୀୟ ହାତୀଦାନ୍ତ ବ୍ୟବସାୟର ମୁଖ୍ୟ କେନ୍ଦ୍ର । ପ୍ରାୟ ଦୁଇ ଦଶନ୍ଧି ଧରି ଜାପାନ ଆନ୍ତର୍ଜାତୀୟ ହାତୀଦାନ୍ତ ବ୍ୟବସାୟର ଏକ ଗୁରୁତ୍ୱପୂର୍ଣ୍ଣ କେନ୍ଦ୍ର ହୋଇଆସିଛି । ଏବେ ଚୀନ ଦ୍ୱିତୀୟ ବଡ଼ କେନ୍ଦ୍ର ଭାବରେ ଉଠୁଛି । ଚୀନରେ ହାତୀଦାନ୍ତର ବ୍ୟବସାୟ ଜାପାନଠାରୁ ଆଗରୁ, ପ୍ରାୟ ଷଷ୍ଠ ଶତାବ୍ଦୀର ପୂର୍ବ ସମୟରୁ, ଆରମ୍ଭ ହୋଇଛି ।

ହାତୀଦାନ୍ତ ତିଆରି ହାଙ୍କୋସ୍‌ର ବ୍ୟବହାର ବଢ଼ିବାରୁ ଜାପାନ ହାତୀଦାନ୍ତ ବ୍ୟବସାୟର ଏକ

### ହାତୀଦାନ୍ତ କ'ଣ

ହାତୀଦାନ୍ତ ହେଉଛି ଦନ୍ତମଜ୍ଜାର ବାହାର ଧାରରେ ଥିବା *ଓଡୋଣ୍ଟୋବ୍ଲାଷ୍ଟ* ନାମକ କୋଷରୁ ଝରୁଥିବା କୋଷ ନଥିବା ଏକପ୍ରକାର ଉପାଦାନ । ଏଗୁଡ଼ିକ *କାନାଲିକୁଲି* ବା ଦନ୍ତନଳୀ ଦେଇ ଦାନ୍ତରେ ପହଞ୍ଚିଥାଏ । ଏହି ଉପାଦାନ ଜମିଯାଇ ଦନ୍ତଧାତୁ ତିଆରି କରେ । ଏଗୁଡ଼ିକ ହାଡ଼ ଭଳି ଏକ ତନ୍ତୁ ଓ ଅନେକ ଜୀବଙ୍କର ଏହା ଥାଏ । ଏଥିରେ ଶତକଡ଼ା ୮୦ ଭାଗ ଅଜୈବ ଏବଂ ୨୦ ଭାଗ ପାଣି ଓ ଜୈବିକ ପଦାର୍ଥ ଥାଏ । ଦନ୍ତନଳୀର ସଂଖ୍ୟା ଯେତେ ବେଶି ହେବ ଦାନ୍ତ ସେତେ ବେଶି ନମନୀୟ ଏବଂ ନରମ ହେବ । ଆଫ୍ରିକୀୟ ହାତୀର ଦାନ୍ତ ଏସୀୟ ହାତୀଦାନ୍ତ ତୁଳନାରେ ନରମ ଏବଂ ଫାଟିବାର ସମ୍ଭାବନା କମ୍ । (ପୃଷ୍ଠା ୬୮ରେ ସବିଶେଷ ବର୍ଣ୍ଣନା ରହିଛି)



Digitized by srujanika@gmail.com

# ହାତୀ ଶିକାରର ପ୍ରଣାଳୀ

ହାତୀର ଦାନ୍ତ ପାଇଁ ତାକୁ ଅନେକ ଉପାୟରେ ଶିକାର କରାଯାଏ । ଏଗୁଡ଼ିକ ସବୁ ଅତି ବିଭତ୍ସ ଏବଂ ଅମାନୁଷିକ ।

## ଧନୁତୀର ଓ ବର୍ଚ୍ଛାରେ ଶିକାର

ହାତୀ ଶିକାରର ଏହା ଗୋଟିଏ ପୁରୁଣା ପ୍ରଣାଳୀ । ଭାରତର ପଶ୍ଚିମବଙ୍ଗ, ଉତ୍ତରପ୍ରଦେଶ, ମେଘାଳୟ ଏବଂ ଓଡ଼ିଶାରେ ଏବେ ବି ଏହି ଉପାୟରେ ହାତୀ ଶିକାର କରାଯାଉଛି । ବର୍ଚ୍ଛା ଦ୍ୱାରା ହାତୀ ଶିକାର କରିବା ମେଘାଳୟରେ ଅତି ସାଧାରଣ ।

ହାତୀ ମରାଯାଉଥିବା ବର୍ଚ୍ଛା ସାଧାରଣତଃ ଦୁଇ ପ୍ରକାରର ହୋଇଥାଏ । ପ୍ରଥମଟି ଚିରାଚରିତ ଏବଂ ଦ୍ୱିତୀୟଟି ଏଥିପାଇଁ ସ୍ୱତନ୍ତ୍ର ଭାବରେ ତିଆରି । ଦ୍ୱିତୀୟଟି ୪ ମିଟର ଲମ୍ବା ଲୁହା ପାଣି ପାଇପର ଗୋଟିଏ ମୁଣ୍ଡକୁ ମୁନିଆଁ କରି ତିଆରି କରାଯାଇଥାଏ । ତାହାକୁ ଓଜନିଆ କରିବା ପାଇଁ ପାଇପ ଭିତରେ ବାଲି ଭର୍ତ୍ତି କରାଯାଏ । ଏହି ପାଇପଗୁଡ଼ିକୁ ୧୫-୨୦ ମିଟର ଉଚ୍ଚରୁ ହାତୀ ଉପରକୁ ଫିଙ୍ଗି ତାକୁ ମରାଯାଏ । ଏହି ଓଜନିଆ କ୍ଷେପଣାସ୍ତ୍ରଟିର ମାଡ଼ରେ ହାତୀଟି ସାଧାରଣତଃ ମରିଯାଇଥାଏ । ହାତୀର ମୃତ୍ୟୁକୁ ଶୀଘ୍ର ଓ ନିଶ୍ଚିତ କରିବା ପାଇଁ ବେଳେବେଳେ ସେହି ବର୍ଚ୍ଛାଗୁଡ଼ିକର ମୁଣ୍ଡିରେ ବିଷ ଲଗାଇ ଦିଆଯାଏ ।

## ବନ୍ଧୁକ ଗୁଳିରେ

ଭାରତରେ ସାଧାରଣତଃ ଗୁଳିମାରି ହାତୀ ଶିକାର କରାଯାଏ ନାହିଁ । ଅବଶ୍ୟ କେତେକ କ୍ଷେତ୍ରରେ ଗୁଳି ବାଜି ହାତୀ ମରିଛନ୍ତି । ଦକ୍ଷିଣ ଭାରତରେ ଏଥିପାଇଁ ନଳୀଖୁନ୍ଦା ବନ୍ଧୁକରେ ଶକ୍ତିଶାଳୀ ବାରୁଦ ଏବଂ ଛଡ଼ ଭଳି ଲମ୍ବା ଗୁଳି ବ୍ୟବହାର କରାଯାଏ । ହାତୀର ଦେହରେ ଲାଗିଥିବା ଗୁଳିରୁ ତାକୁ ମାରିଥିବା ଦଳକୁ ଚିହ୍ନଟ କରିହୁଏ । ହାତୀ ଶିକାର ପାଇଁ ସାଧାରଣତଃ ୦·୫୦୦ ଏବଂ ୦·୪୭୦ ରାଇଫଲ ବ୍ୟବହାର କରାଯାଏ । ମେଘାଳୟରେ ନଳୀଖୁନ୍ଦା ବନ୍ଧୁକ ସହିତ ୦·୩୦୩ ରାଇଫଲ ମଧ୍ୟ ବ୍ୟବହାର କରାଯାଏ । ବିଡ଼ମ୍ବନାର କଥା ଯେ ୦·୩୦୩ ରାଇଫଲ ହେଉଛି ହାତୀକୁ ସୁରକ୍ଷା ଦେଉଥିବା ଭାରତୀୟ ପୋଲିସର ସାଧାରଣ ଅସ୍ତ୍ର । ଆସାମ ଏବଂ ମେଘାଳୟରେ ଏକେ୪୭ ଭଳି ଶକ୍ତିଶାଳୀ ସ୍ୱୟଂଚାଳିତ ବନ୍ଧୁକ ବି ଏବେ ବ୍ୟବହୃତ ହେବାର ଦେଖାଯାଏ । ଏହି ସବୁ ସୀମାନ୍ତ ଅଞ୍ଚଳରେ ଏପ୍ରକାର ବନ୍ଧୁକ ସହଜରେ ମିଳିଥାଏ ।

## ବିଷ ଦେଇ

ବିଷ ଦେଇ ହାତୀ ଶିକାର କରିବା ବହୁତ ସାଧାରଣ । ବିଭିନ୍ନ ଜାଗାରେ ଲୁଣଚଟା ବା ଖାଦ୍ୟରେ ବିଷ ମିଶାଇ, ହାତୀ ଆସୁଥିବା କ୍ଷେତବାଡ଼ି ଅଞ୍ଚଳରେ କୀଟନାଶକ ଛିଞ୍ଚି ଏବଂ ବିଷାକ୍ତ ତୀର ଓ ବର୍ଚ୍ଛା ବ୍ୟବହାର କରି ହାତୀ ମରାଯାଏ ।

ଓଡ଼ିଶାରେ ସବୁଠାରୁ ଅଧିକ ସଂଖ୍ୟାରେ ହାତୀ ବିଷ ଦେଇ ମରାଯାଏ । ୧୯୭୩ ମସିହା ନଭେମ୍ବର ମାସରେ ଢେଙ୍କାନାଳ ଜଙ୍ଗଲ ବିଭାଗର ବିରାଡ଼ିଆ ଜଙ୍ଗଲରେ ଆଠଟି ହାତୀ ବିଷ ଖାଇ ମରିଥିଲେ । ଏହ ବିଷ ବୋଧହୁଏ କୌଣସି କୀଟନାଶକରୁ ଆସିଥିଲା । କର୍ତ୍ତୃପକ୍ଷ ସେଠାରେ ପହଞ୍ଚିଲା ବେଳକୁ ଦେଖିଲେ ଯେ ହାତୀଗୁଡ଼ିକ ବିଭିନ୍ନ ବିଷ ଆକ୍ରାନ୍ତ ଅବସ୍ଥାରେ ପଡ଼ିଛନ୍ତି । ପରେ ନିଶ୍ଚିତ କରାଗଲା ଯେ ଜମିରେ ଜୈବିକ-ଫସ୍‌ଫରସ୍ କୀଟନାଶକ ପ୍ରୟୋଗ କରିବା ଫଳରେ ଏହି ମୃତ୍ୟୁ ହୋଇଥିଲା । ହାତୀଗୁଡ଼ିକ ଅକସ୍ମାତ୍ ବିଷ ଖାଇଥିଲେ ବା ଜାଣିଶୁଣି ତାଙ୍କୁ ଦିଆଯାଇଥିଲା କିଛି ଜଣାଗଲା ନାହିଁ ।

## ବିଦ୍ୟୁତ ଶକ୍ତି ଲଗାଇ

ସାଧାରଣତଃ ଜମିର ଫସଲ ବଞ୍ଚାଇବା ପାଇଁ ଚାଷୀମାନେ ଏପରି କରିଥାନ୍ତି । ହାତୀର ଚଲାପଥରେ ଉଚ୍ଚଶକ୍ତିସମ୍ପନ୍ନ ୧୧ କେଭି ତାର ବିଛାଯାଏ । ଏଗୁଡ଼ିକ ବାଉଁଶ ଭଳି ବିଦ୍ୟୁତ କୁପରିବାହୀ ଜିନିଷ ସାହାଯ୍ୟରେ ଛାତି ଉଚ୍ଚାରେ ଲଗାଯାଇଥାଏ, ଯେପରି ହାତୀ ନିଶ୍ଚୟ ଏଥିରେ ଛନ୍ଦି ହେବ । ତାର ଛୁଇଁବା ମାତ୍ରେ ତୀବ୍ର ବିଦ୍ୟୁତ ପ୍ରବାହ ଫଳରେ ହାତୀ ସାଙ୍ଗେ ସାଙ୍ଗେ ମରିଯାଏ । ଏହି ପ୍ରଣାଳୀରେ ହାତୀ ମାରିବାରେ ପ୍ରାୟ କିଛି ଶବ୍ଦ ହୋଇନଥାଏ । ତଥାପି ଅବୈଧ ଶିକାରୀମାନେ ଏହି ଉପାୟ ବିଶେଷ ପସନ୍ଦ କରନ୍ତି ନାହିଁ ।

## ଅନ୍ୟାନ୍ୟ

ଉପର ବର୍ଣ୍ଣିତ ପ୍ରଣାଳୀ ଛଡ଼ା ହାତୀକୁ ମାରିବା ପାଇଁ ଆହୁରି କେତେ ଅମାନୁଷିକ ବାଟ ମଧ୍ୟ ରହିଛି । କଣ୍ଟାର ମୁଣ୍ଡିରେ ବିଷ ଲଗାଇ ତାକୁ ମାଟି ଉପରେ ବିଛାଇ ତା' ଉପରେ ତାଳପତ୍ର ଢାଙ୍କି ଦିଆଯାଏ । ପଣସ ରଖି ହାତୀକୁ ଏଠିକୁ ଆକର୍ଷିତ କରାଯାଏ ।

ଆଉ ଗୋଟିଏ ଉପାୟରେ ହାତୀ ଖେଦା ଭଳି ଗାତ ଖୋଳାଯାଏ । ଗାତଗୁଡ଼ିକ ୬-୭ ମିଟର ଗଭୀର କରାଯାଏ ଏବଂ ତା'ର ଚଟାଣରେ ୧୦-୧୨ଟି ବର୍ଚ୍ଛା ମୁନ ଉପରକୁ କରି ପୋତାଯାଇଥାଏ । ସେଥିରେ ଗଳିପଡୁଥିବା ହାତୀର ପେଟରେ ବର୍ଚ୍ଛାଗୁଡ଼ିକ ଗଳିଯିବା ଫଳରେ ତା'ର ମୃତ୍ୟୁ ଘଟିଥାଏ । ମେଘାଳୟର ବାଲଫାକ୍ରମ୍ ଜାତୀୟ ଉଦ୍ୟାନରେ ଏହି ଧାରାରେ ହାତୀ ଶିକାର ହେବାର ଅନେକ ଉଦାହରଣ ରହିଛି ।



Digitized by srujanika@gmail.com

**ଭାରତରେ ଅବୈଧ ହାତୀଶିକାରର ମୁଖ୍ୟ କେନ୍ଦ୍ର**




ଉତ୍ସ: *ରିଭର୍‌ଜିଙ୍ଗ ଦି ଡିକ୍ଲାଇନ୍ ଅଫ୍ ଦି ଏସିଆନ୍ ଏଲିଫାଣ୍ଟ*, ୱାଇଲଡ୍‌ଲାଇଫ୍ ପ୍ରୋଟେକ୍‌ସନ୍ ସୋସାଇଟି ଅଫ୍ ଇଣ୍ଡିଆ, ୱାଇଲଡ୍‌ଲାଇଫ୍ ଟ୍ରଷ୍ଟ ଅଫ୍ ଇଣ୍ଡିଆ, ଏସିଆନ୍ ଏଲିଫାଣ୍ଟ ରିସର୍ଚ୍ଚ ଆଣ୍ଡ କଞ୍ଜରଭେସନ୍ ସେଣ୍ଟର, ବାଙ୍ଗାଲୋର, ୨୦୦୦

ମୁଖ୍ୟ କେନ୍ଦ୍ର ହୋଇଛି । ହାଙ୍କୋସ୍ ହେଉଛି ଦସ୍ତଖତ ମୋହର । ଆଗରୁ କାଠ, ମଇଁଷି ଶିଙ୍ଗ, ପ୍ଲାଷ୍ଟିକ, ପଥର ଓ ସ୍ଫଟିକରେ ହାଙ୍କୋସ୍ ତିଆରି ହେଉଥିଲା । ଅଣହାତୀଦାନ୍ତ ହାଙ୍କୋସ୍ ତୁଳନାରେ ହାତୀଦାନ୍ତର ହାଙ୍କୋସ୍ ବ୍ୟବହାର କରିବା ମର୍ଯ୍ୟଦାର ଚିହ୍ନ ବୋଲି ଧରାଯାଏ । ଜାପାନରେ ପହଞ୍ଚୁଥିବା ହାତୀଦାନ୍ତରୁ ଶତକଡ଼ା ୮୦ ଭାଗ ହାଙ୍କୋସ୍ ତିଆରିରେ ହିଁ ଲାଗେ । ଜାପାନରେ ହାଙ୍କୋସ୍ ବ୍ୟବସାୟ ଏକ ସ୍ୱତନ୍ତ୍ର ଧରଣର ବ୍ୟବସାୟ ଏବଂ ହଜାର ହଜାର ରେଜିଷ୍ଟ୍ରିଭୁକ୍ତ ଶିଳ୍ପପତି, ନିର୍ମାଣକାରୀ ଏବଂ ଖୁଚୁରା ବ୍ୟବସାୟୀ ଏଥିରେ ସାମିଲ ।

### ଏସୀୟ ହାତୀଦାନ୍ତ ବ୍ୟବସାୟର ପଥ

ଆମେ ଯେତେବେଳେ ପୃଥିବୀସାରା ସବୁ ଦେଶରେ ଉଭୟ ଏସୀୟ ଏବଂ ଆଫ୍ରିକୀୟ ହାତୀଦାନ୍ତର ବେଆଇନ ବ୍ୟବହାର ବିଷୟରେ ଚିନ୍ତା କରୁଛେ, ଗୋଟିଏ ପ୍ରଶ୍ନ ମନକୁ ଆସୁଛି ଯେ ହାତୀଦାନ୍ତ ଏସବୁ ଦେଶରେ ପହଞ୍ଚେ କିପରି? ଏଥିପାଇଁ ଏସୀୟ ଏବଂ ଆଫ୍ରିକୀୟ ହାତୀଦାନ୍ତ ଭିତରେ ଥିବା ଯୋଗସୂତ୍ରକୁ ବୁଝିବା ଦରକାର । କାରଣ ଆଫ୍ରିକୀୟ ହାତୀଦାନ୍ତର ବେଶ୍ କିଛି ଭାଗ ଭାରତୀୟ ବଜାରରେ ପହଞ୍ଚୁଥିବାର ଜଣାଅଛି । ଆହୁରି ମଧ୍ୟ ବୁଝିବା ଦରକାର ଯେ ସବୁ ପ୍ରକାରର ବାଣିଜ୍ୟ ପଥ ହେଉଛି ପରିବର୍ତ୍ତନଶୀଳ ଏବଂ ସେସବୁ ସମୟ ଅନୁସାରେ ବଦଳି ଚାଲିଥାଏ । କାରଣ ଏହି ପଥଗୁଡ଼ିକ ବିଭିନ୍ନ ଜାତୀୟ ଏବଂ ଆନ୍ତର୍ଜାତୀୟ ନିୟମ କାନୁନ ଦ୍ୱାରା ପ୍ରଭାବିତ ହୋଇଥାଏ ।

ଏସୀୟ ହାତୀଦାନ୍ତର ଭାରତରୁ ଅନ୍ୟ ଉପଭୋକ୍ତା ଦେଶମାନଙ୍କରେ ପହଞ୍ଚିଥିବାର ପଥ ବାହାର

## ଭାରତରେ ହାତୀଦାନ୍ତ ବ୍ୟବସାୟର ଇତିହାସ

୪୦୦୦ ବର୍ଷ ପୂର୍ବେ ଭାରତରେ ହାତୀଦାନ୍ତର କାମ ହେଉଥିବାର ଜଣାଅଛି । ମହେଞ୍ଜୋଦାରୋରୁ ମିଳିଥିବା ହାତୀଦାନ୍ତର ଗହଣା, ତାବିଜ, ପଦକ, ବିଭିନ୍ନ ମନୋହରୀ ଜିନିଷ, ଘରୋଇ ଜିନିଷ, ଖେଳନାରୁ ଏକଥାର ପ୍ରମାଣ ମିଳେ । ହିନ୍ଦୁ ବାହାଘରରେ ହାତୀଦାନ୍ତର ଚୁଡ଼ି ବହୁତ ଗୁରୁତ୍ୱପୂର୍ଣ୍ଣ ଏବଂ ଏହା ବହୁତ ପବିତ୍ର ବୋଲି ମନେ କରାଯାଏ । କେତେକ ଲେଖା ଏବଂ ଆଢ଼ୁଲେଖାରୁ ଜଣାଯାଏ ଯେ ରାମାୟଣ ଏବଂ ମହାଭାରତ ସମୟରେ ବି ହାତୀଦାନ୍ତ ବ୍ୟବହାର କରାଯାଉଥିଲା । ମହାଭାରତରେ ଖେଳାଯାଉଥିବା ପଶାର ଗୋଟି ହାତୀଦାନ୍ତରେ ତିଆରି ହୋଇଥିଲା । ରାମାୟଣରେ ବି ବାଲ୍ମିକୀ ଲେଖିଛନ୍ତି ଯେ ଯେଉଁ ଆସନରେ ମହାରାଣୀ କୈକେୟୀ ବସୁଥିଲେ ତାହା ହାତୀଦାନ୍ତରେ ତିଆରି ହୋଇଥିଲା । ଲଙ୍କାର ରାଜା ରାବଣଙ୍କର ରାଜପ୍ରସାଦର ଖମ୍ବଗୁଡ଼ିକ ହାତୀଦାନ୍ତର ଥିଲା ।

ଗୋଟିଏ ଲେଖାରୁ ଜଣାଯାଏ ଯେ ଆଫ୍ରିକାର ରାଜା ସଲୋମନ ଦକ୍ଷିଣ ଭାରତରୁ ହାତୀଦାନ୍ତ ଆମଦାନୀ କରିଥିଲେ । ହାତୀଦାନ୍ତରେ ତିଆରି ଅନେକ ଜିନିଷ ସବୁ ସମୟରେ ବିଦେଶୀ ଅତିଥିଙ୍କୁ ଉପହାର ଦିଆଯାଇଆସିଛି ଏବଂ ଅନେକ ବର୍ଷ ଧରି ଏହି ପ୍ରକ୍ରିୟା ଚାଲିଛି ।

ଆଜିକାଲି ହାତୀଦାନ୍ତର ଯେକୌଣସି ବ୍ୟବସାୟ ବେଆଇନ । ଏହି ବେଆଇନ ବ୍ୟବସାୟ ସାଧାରଣତଃ ଦୁଇ ପ୍ରକାରର ହୁଏ – କଞ୍ଚା ଏବଂ କାମ ହୋଇଥିବା ଦାନ୍ତ । କଞ୍ଚା ହାତୀଦାନ୍ତ ପୂରା ବା ବଡ଼ ବଡ଼ କଟା ଖଣ୍ଡରେ ବିକ୍ରି ପାଇଁ ଆସେ । କାମ ହୋଇଥିବା ଦାନ୍ତ ସାଧାରଣତଃ ଚୁଡ଼ି, ମୂର୍ତ୍ତି ଏବଂ ଅନ୍ୟ ଖୋଦେଇ ହୋଇଥିବା ଜିନିଷ ସବୁର ରୂପରେ ମିଳିଥାଏ ।

### ହାତୀଦାନ୍ତ ଖୋଦେଇ

ଭାରତରେ ହାତୀଦାନ୍ତ ଖୋଦେଇ କାମ ବେଶ୍ ପୁରୁଣା । ଖୋଦେଇ କାମର ଆରମ୍ଭ କାଳରେ ଦିଲ୍ଲୀ, ମୁର୍ଶିଦାବାଦ, ମହୀଶୂର, ଜୟପୁର, ତ୍ରିଭାନ୍ଦ୍ରମ, ଆଗ୍ରା ଏବଂ ବାରାଣାସୀ ଏହାର ମୁଖ୍ୟ କେନ୍ଦ୍ର ଥିଲା । ସାଧାରଣତଃ ଠାକୁର ଠାକୁରାଣୀଙ୍କ ମୂର୍ତ୍ତି, ଚୁଡ଼ି, କଙ୍କଣ, କାନଫୁଲ, ପାନିଆ, ସିଗାରେଟ୍ ଖୋଳ, ଚେସ୍ ଗୋଟି, ପେଡ଼ି ଆଦି ଖୋଦେଇ ହେଉଥିଲା ।

ଉତ୍ତରପ୍ରଦେଶର ଅୱଧ ଅଞ୍ଚଳରେ ଅନେକ ଦିନରୁ ଖୋଦେଇ ହେଉଛି । ବାରାଣାସୀରେ ଅନେକ ବର୍ଷ ଧରି ପ୍ରାକୃତିକ ହାତୀଦାନ୍ତ ଏବଂ କୃତ୍ରିମ ଜିନିଷରେ ଖୋଦେଇ କରାଯାଉଛି । ଉତ୍ତରପ୍ରଦେଶ, ରାଜସ୍ଥାନରେ ବିଦ୍ୟୁତଚାଳିତ ଲେଦ୍‌ରେ ଖୋଦେଇ କାମ କରାଯାଏ । ଦକ୍ଷିଣ ଭାରତରେ ଏହା ହାତରେ କରାଯାଏ । ଏଭଳି ଖୋଦେଇ କାମ ପାଇଁ ଅନ୍ୟ କିଛି କଞ୍ଚା ମାଲ ଖୋଜି ବାହାର କରିବା ଦରକାର ।



Digitized by srujanika@gmail.com

କରିବା ପାଇଁ ୧୯୯୮ରେ ଏକ ସର୍ବେକ୍ଷଣ କରାଯାଇଥିଲା । ଦେଖାଗଲା ଯେ ଭାରତ ଛାଡ଼ିବା ପରେ ହାତୀଦାନ୍ତ ପ୍ରଥମେ ଯାଏ ନେପାଳ, ମିଆଁମାର, ଦୁବାଇ ଏବଂ ସାରଜା । ଏଗୁଡ଼ିକୁ ମଧ୍ୟବର୍ତ୍ତୀକାଳୀନ ଲକ୍ଷ୍ୟସ୍ଥଳ କୁହାଯାଏ । ଏଠାରୁ ହାତୀଦାନ୍ତ ମୁଖ୍ୟ କେନ୍ଦ୍ର ଜାପାନ, ଚୀନ, ହଙ୍ଗକଙ୍ଗ, ମାକାଓ, ଥାଇଲାଣ୍ଡ, ସିଙ୍ଗାପୁର ଆଦି ମୁଖ୍ୟ ବଜାର ଦେଶକୁ ଯାଇଥାଏ । ବେଳେବେଳେ ଏସବୁ ଭିଏତନାମ, ଦକ୍ଷିଣକୋରିଆ ଭଳି ଛୋଟ କେନ୍ଦ୍ରକୁ ମଧ୍ୟ ଯାଏ ।

## ଆଫ୍ରିକୀୟ ହାତୀଦାନ୍ତ ବ୍ୟବସାୟ ଏବଂ ଏସୀୟ ହାତୀ ଉପରେ ତା'ର ପ୍ରଭାବ

ଏସୀୟ ହାତୀର ଭାଗ୍ୟ ଆଫ୍ରିକୀୟ ହାତୀ ସହ ଯୋଡ଼ା । ଗବେଷଣାଗାରରେ ପରୀକ୍ଷା ନକରି ଆଫ୍ରିକୀୟ ଏବଂ ଏସୀୟ ହାତୀଦାନ୍ତ ଭିତରେ ତଫାତ ଜାଣିବା ବେଶ୍ କଷ୍ଟ । ତେଣୁ ଯଦି ଆଫ୍ରିକୀୟ ହାତୀଦାନ୍ତ ବ୍ୟବସାୟ ପାଇଁ ଅନୁମତି ଦିଆଯାଏ ତେବେ ଏସୀୟ ହାତୀ ଶିକାର ନିଶ୍ଚୟ ହେବ ଏବଂ ଏମାନଙ୍କ ଦାନ୍ତ ଆଫ୍ରିକୀୟ ହାତୀଦାନ୍ତ ଭାବରେ ବିକ୍ରି କରାଯିବ । ବୋଧହୁଏ ସେଥିପାଇଁ ୧୯୯୭ ମସିହାରେ ଆଫ୍ରିକୀୟ ହାତୀଦାନ୍ତ ବ୍ୟବସାୟ ଉପରେ ଯେତେବେଳେ ନିଷେଧାଜ୍ଞା ଉପରେ ରିହାତି ଦିଆଗଲା ଏସୀୟ ହାତୀ ଶିକାର ବଢ଼ିଗଲା । ଏହି କାରଣରୁ ଭାରତ ଏହି ରିହାତିକୁ ବିରୋଧ କରିଥିଲା । ଏବେ ଏସୀୟ ହାତୀ *ସିଆଇଟିଇଏସ୍*ର ପରିଶିଷ୍ଟ୧ରେ ରହିଛି । ଆଫ୍ରିକୀୟ ହାତୀ ମଧ୍ୟ ତାହା ଦେଖାଯାଉଥିବା ଅଧିକାଂଶ ଦେଶରେ ଏହି ଶ୍ରେଣୀରେ ରହିଛି ।

## ଏସୀୟ ଏବଂ ଆଫ୍ରିକୀୟ ହାତୀଦାନ୍ତ

ଶକ୍ତ ଏବଂ ନରମ - ଦୁଇ ପ୍ରକାରର ହାତୀଦାନ୍ତ ଦେଖିବାକୁ ମିଳେ । ଶକ୍ତ ହାତୀଦାନ୍ତରେ ଜାପାନୀ ଦସ୍ତଖତ ସିଲ୍ ହାଙ୍କୋସ୍, ବାଦ୍ୟଯନ୍ତ୍ର ସାମିସେନ୍ ଏବଂ ସ୍ୱତନ୍ତ୍ର ଖୋଦେଇ କାମ କରାଯାଏ । ନରମ ହାତୀଦାନ୍ତ ସାଧାରଣ ଖୋଦେଇ କାମରେ ଲାଗିଥାଏ । ହାତୀଦାନ୍ତକୁ ଆଫ୍ରିକୀୟ ଜଙ୍ଗଲ (ଶକ୍ତ) ହାତୀଦାନ୍ତ, ଆଫ୍ରିକୀୟ ତୃଣଭୂମି (ନରମ) ହାତୀଦାନ୍ତ ଏବଂ ଏସୀୟ ହାତୀଦାନ୍ତ ଭାବରେ ଭାଗ କରାଯାଇପାରେ । ସାଧାରଣତଃ ପୂର୍ବ ଆଫ୍ରିକାର ତାଞ୍ଜାନିଆ, କେନିଆ, ଉଗାଣ୍ଡା, ଇଜିପ୍ଟ, ସୁଦାନ, ଜାମ୍ବିଆ, ମୋଜାମ୍ବିକ୍‌ରୁ ନରମ ହାତୀଦାନ୍ତ ମିଳେ । କଙ୍ଗୋ, ଜାଏରେ, କାମେରୁନ, ଗାବନ ଆଦି ଦେଶରୁ ଶକ୍ତ ହାତୀଦାନ୍ତ ମିଳିଥାଏ ।

ଏସୀୟ ହାତୀଦାନ୍ତରେ ଉଭୟ ଶକ୍ତ ଏବଂ ନରମ ହାତୀଦାନ୍ତର ଭଲ ଗୁଣ ମିଶି ରହିଛି । ଏସୀୟ ହାତୀଦାନ୍ତ ଶକ୍ତ ହାତୀଦାନ୍ତ ଭଳି ଚକ୍‌ଚକ୍ କରେ ଏବଂ ନରମ ହାତୀଦାନ୍ତ ଭଳି ନମନୀୟ । ଏହି ନମନୀୟ ଗୁଣ ଖୋଦେଇ କାମରେ ସାହାଯ୍ୟ କରେ । ନରମ ଆଫ୍ରିକୀୟ ହାତୀଦାନ୍ତକୁ ଜାପାନୀ ଭାଷାରେ *ଶ୍ରୀମନୋ* ବା ଧଳା ହାତୀଦାନ୍ତ କୁହାଯାଏ । କାରଣ ଏହା ଉଜଳ ଧଳା ରଙ୍ଗର । ଶକ୍ତ ହାତୀଦାନ୍ତକୁ *ଇଣ୍ଡୋ-ଖିବା* ବା ଭାରତୀୟ ହାତୀଦାନ୍ତ କୁହାଯାଏ । କିନ୍ତୁ ଭାରତୀୟ ହାତୀ ସହ ଇଣ୍ଡୋ-ଖିବାର କିଛି ସମ୍ପର୍କ ନାହିଁ । ଏସୀୟ ହାତୀଦାନ୍ତକୁ *ତୋଗାଟା* କୁହାଯାଏ । ଏହାର ଅର୍ଥ ହେଉଛି ପୂର୍ବ ବା ଚୀନରୁ ଆସିଥିବା ହାତୀଦାନ୍ତ ।

ତିନିପ୍ରକାରର ହାତୀଦାନ୍ତ ଚିହ୍ନିବା ପାଇଁ ତାଙ୍କର କେତୋଟି ମୌଳିକ ଗୁଣ ସାହାଯ୍ୟ କରେ । ପ୍ରଥମ ମୁଖ୍ୟ ଗୁଣ ହେଉଛି ହାତୀଦାନ୍ତର ରଙ୍ଗ । ନରମ ହାତୀଦାନ୍ତ ହଳଦିଆ ରଙ୍ଗ, ଏସୀୟ ହାତୀଦାନ୍ତ ଧଳା ଏବଂ ଶକ୍ତ ହାତୀଦାନ୍ତ ଈଷତ ଗୋଲାପୀ ରଙ୍ଗ ହୋଇଥାଏ । (ଆଫ୍ରିକୀୟ ଶକ୍ତ ହାତୀଦାନ୍ତ, ଆଫ୍ରିକୀୟ ନରମ ହାତୀଦାନ୍ତ ଏବଂ ଏସୀୟ ହାତୀଦାନ୍ତ ଭିତରେ ଥିବା ତଫାତ ତଳ ସାରଣୀରେ ଦେଖାଯାଇଛି ।)

### ଏସୀୟ ଏବଂ ଆଫ୍ରିକୀୟ ହାତୀଦାନ୍ତ ଭିତରେ ଫରକ: ବାଣିଜ୍ୟିକ ବିଶ୍ୱାସ

| ଗୁଣ | ଆଫ୍ରିକୀୟ ଶକ୍ତ | ଆଫ୍ରିକୀୟ ନରମ | ଏସୀୟ |
|---|---|---|---|
| ହାରାହାରି ଲମ୍ବ | ଲମ୍ବା | ଛୋଟ | ସବୁଠାରୁ ଛୋଟ |
| ଅଗର ଆକାର | ମୁନିଆଁ | ଗୋଲ | ଗୋଲ |
| ବାହାରର ରଙ୍ଗ | ଗାଢ଼ ଓ ଚିକ୍‌ଚିକ୍ | ଫିକା ଓ ମାଠିଆ | ଫିକା ଓ ମାଠିଆ |
| ଭିତରର ଗଠନ | ଅଳ୍ପ ଫାଟ | ଅଧିକ ଫାଟ | କିଛି ଫାଟ |
| ଭିତରର ରଙ୍ଗ | ଗୋଲାପି | ଧଳାଆଁଶିଆ | ଗୋଲାପି |
| ଚମଡ଼ାର ଗଠନ | ଦାନା ଦାନା ଦାଗ | ମସୃଣ ଛାପ | ମସୃଣ ଛାପ |
| ସ୍ନାୟୁ ଅଗର ଗଠନ | ଅଣ୍ଡାକିଆ | ଗୋଲ | ଗୋଲ |



ଉତ୍ସ: ମେନନ ବିବେକ, କୁମାର ଅଶୋକ, *ସାଇନ୍ ଆଣ୍ଡ ସିଲ୍‌ଡ୍: ଦି ଫେଟ୍ ଅଫ୍ ଦି ଏସିଆନ୍ ଏଲିଫାଣ୍ଟ*, ଏସିଆନ୍ ଏଲିଫାଣ୍ଟ ରିସର୍ଚ୍ଚ ଆଣ୍ଡ କନ୍‌ଜରଭେସନ ସେଣ୍ଟର, ବାଙ୍ଗାଲୋର, ୱାଇଲଡ୍ ଲାଇଫ୍ ପ୍ରୋଟେକ୍‌ସନ ସୋସାଇଟି ଅଫ୍ ଇଣ୍ଡିଆ, ଦିଲ୍ଲୀ, ୧୯୯୮ ।



Digitized by srujanika@gmail.com

**ପରଖ**

# ହାତୀଙ୍କ ସଂଖ୍ୟା

**ମାନଚିତ୍ରରୁ ହାତୀଙ୍କ ବିସ୍ତାର ବିଷୟରେ ଜାଣିବା ।**

| | |
|---|---|
| *ଉଦ୍ଦେଶ୍ୟ* | **ପିଲାଙ୍କୁ ସାହାଯ୍ୟ କରିବା -**<br>• **ଏସିଆ ଏବଂ ଭାରତରେ ଏସୀୟ ହାତୀଙ୍କ ସଂଖ୍ୟା ଓ ବିସ୍ତାର ଜାଣିବାରେ**<br>• **ଏସିଆ ଓ ଭାରତର ମାନଚିତ୍ରରୁ ଏସୀୟ ହାତୀଙ୍କ ଏବେକାର ବିସ୍ତାର ଏବଂ ଆବାସସ୍ଥଳୀ ବିଷୟରେ ସଚେତନତା ଆଣିବାରେ** |
| *ସ୍ତର* | **ମାଧ୍ୟମିକ** |
| *ବିଷୟ* | **ସାମାଜିକ ବିଜ୍ଞାନ** |
| *ଦଳର ଆକାର* | **ଉଣିକିଆ** |
| *ସ୍ଥାନ* | **ଶ୍ରେଣୀଗୃହ ଭିତରେ** |
| *ସମୟ ଅବଧି* | **୩୦ ମିନିଟ** |
| *ସାମଗ୍ରୀ* | **ଲେଖିବା ଜିନିଷ, ଏସିଆ ଏବଂ ଭାରତର ରାଜନୈତିକ ମାନଚିତ୍ର, ଆଟଲାସ** |

ଆଗେ ଏସିଆର ସବୁଆଡ଼େ ଏସୀୟ ହାତୀ ଥିଲେ । ଏପରିକି ପଶ୍ଚିମରେ ସିରିଆ ପାଖେ ବି ଥିଲେ । ଶିକାର, ଧରିବା ଏବଂ ମଣିଷର ଜନବସତି ବଢ଼ିବା ଯୋଗୁଁ ପଶ୍ଚିମ ଏସିଆରୁ ହାତୀ ଲୋପ ପାଇଗଲେ । ସେଠିକାର ଶୁଖିଲା ଜଳବାୟୁ ବି ହାତୀ ଉଭେଇଯିବାର ଆଉ ଏକ କାରଣ ହେଲା । ଏହିସବୁ ପରିବର୍ତ୍ତନ ଲାଗିରହିବାରୁ ଏବେ ହାତୀଙ୍କ ଆବାସର ପଶ୍ଚିମ ସୀମା ଆସି ଭାରତର ଉତ୍ତର ପ୍ରଦେଶରେ ଥିବା ରାଜାଜୀ ଏବଂ କରବେଟ୍ ଜାତୀୟ ଉଦ୍ୟାନ ଠାରେ ପହଞ୍ଚିଛି । ପୂର୍ବ ଦିଗରେ ଏବେ ଇଣ୍ଡୋ-ଚୀନା ପାଖେ ହାତୀ ଅଛନ୍ତି । କିନ୍ତୁ ତାଙ୍କର ଆବାସ ବହୁତ କମିଯାଇଛି ଏବଂ ତାହାର ଅଧିକାଂଶ ଭାଗ ଖଣ୍ଡ ଖଣ୍ଡ ହୋଇଯାଇଛି । (ପୃଷ୍ଠା ୭୦ରେ ହାତୀର ବିସ୍ତାର ଉପରେ ଅଧିକ ତଥ୍ୟ ।)

ଏସିଆ ଓ ଭାରତ ମାନଚିତ୍ରରେ ହାତୀଙ୍କ ବିସ୍ତାର ଖୋଜିବାରୁ ପିଲାମାନେ ହାତୀର ଆବାସସ୍ଥଳୀ ବିଷୟରେ ଏବଂ ଅନ୍ୟ ଦେଶରେ ମଧ୍ୟ ହାତୀର ସ୍ଥିତି ବିଷୟରେ ଜାଣିବେ । ମାନଚିତ୍ରରେ କୌଣସି ଜାଗା ଖୋଜିବା ମଧ୍ୟ ଶିଖିବେ ।

## ଆରମ୍ଭ କରିବା ଆଗରୁ

ଆରମ୍ଭ କରିବା ଆଗଦିନ ପିଲାମାନଙ୍କୁ ଏସିଆ ଓ ଭାରତ ମାନଚିତ୍ର ଆଣିବା ପାଇଁ କୁହ । (ପୃଷ୍ଠା ୭୦ରେ ଥିବା ମାନଚିତ୍ରର ନକଲ କରାଯାଇ ପାରିବ ।)

ଏସୀୟ ହାତୀଙ୍କ ମୋଟ ସଂଖ୍ୟା ଏବଂ ଭାରତରେ ଏସୀୟ ହାତୀଙ୍କ ସଂଖ୍ୟା - ଏହିପରି ଦୁଇଟି ଚାର୍ଟ ତିଆର କର ଏବଂ ବୋର୍ଡ଼ରେ ଲଗାଇଦିଅ । ନହେଲେ କଳାପଟାରେ ସାରଣୀ ଦୁଇଟିକୁ ଲେଖିଦିଅ ଏବଂ ସାରଣୀ ଦୁଇଟିକୁ ନିଜ ନିଜ ଖାତାରେ ଟିପି ନେବା ପାଇଁ ପିଲାମାନଙ୍କୁ କୁହ ।

## ପରଖର ଧାରା

ଏସିଆ ଏବଂ ଭାରତରେ ଏସୀୟ ହାତୀଙ୍କ ବିସ୍ତାର ବିଷୟରେ ପିଲାଙ୍କ ସହ ଆଲୋଚନା କର । ଅତୀତରେ ହାତୀ ଦେଖାଯାଉଥିବା ଅଞ୍ଚଳ ଏବଂ ପୂରା ଉଭେଇ ଯାଇଥିବା ଅଞ୍ଚଳ ସବୁକୁ ମାନଚିତ୍ରରେ ପିଲାଙ୍କୁ ଦେଖାଇ ଦିଆଯାଇପାରେ । ଏସିଆ ଏବଂ ଭାରତ ମାନଚିତ୍ରରେ ହାତୀ ଦେଖାଯାଉଥିବା ଦେଶ ଏବଂ ରାଜ୍ୟଗୁଡ଼ିକୁ ଖୋଜିବା ପାଇଁ ପିଲାମାନଙ୍କୁ କୁହ । ଏହି କାମପାଇଁ ସେମାନେ ଏସୀୟ ହାତୀଙ୍କ ସଂଖ୍ୟାର ଆକଳନ ଓ ବିସ୍ତାର ଏବଂ ଭାରତରେ ଏସୀୟ ହାତୀଙ୍କ ବିସ୍ତାର ସାରଣୀ ଦୁଇଟି ଦେଖିପାରିବେ । (ପୃଷ୍ଠା ୭୦ର ତଥ୍ୟଭଣ୍ଡାର ଦେଖ) ।

### ଏସିଆ ମାନଚିତ୍ର

ମାନଚିତ୍ରରେ ହାତୀ ଦେଖାଯାଉଥିବା ଦେଶଗୁଡ଼ିକୁ ଖୋଜିପାରିବା ପରେ ପିଲାମାନେ ସେସବୁ ଦେଶର ନାଁ ଲେଖିବେ, ସେହି ଦେଶ ବା ଅଞ୍ଚଳକୁ ରଙ୍ଗ କରିବେ ଏବଂ କେଉଁଠି କେତେ ସଂଖ୍ୟାରେ ହାତୀ ଅଛନ୍ତି ତାହା ଲେଖିବେ । ଦେଶର ନାଁ ଲେଖିବା ପାଇଁ ଆଟଲାସ ବ୍ୟବହାର କରିବାକୁ ପିଲାମାନଙ୍କୁ କୁହ । ପ୍ରତି ଦେଶର ହାତୀ ସଂଖ୍ୟା ଦେଖାଇବା ପାଇଁ ସେମାନେ ବିଭିନ୍ନ ଆକାରର ବିନ୍ଦୁ ବ୍ୟବହାର କରିପାରିବେ । ତୁଳନାତ୍ମକ ଭାବରେ ଏହି ସଂଖ୍ୟାଗୁଡ଼ିକ ଜଣାଇବା ପାଇଁ ସେମାନେ ବିଭିନ୍ନ ଆକାରର ହାତୀ ଚିତ୍ର (ସଂଖ୍ୟା ଅନୁସାରେ ସାନ ବା ବଡ଼) ମଧ୍ୟ କରିପାରିବେ । ଏହାକୁ ସେମାନେ ଅନ୍ୟ କୌଣସି ସୃଜନାତ୍ମକ ଧାରାରେ ମଧ୍ୟ ସଜାଇ ପାରନ୍ତି ।

### ଭାରତ ମାନଚିତ୍ର

ହାତୀ ଦେଖାଯାଉଥିବା ରାଜ୍ୟ ବା ଅଞ୍ଚଳଗୁଡ଼ିକୁ ଚିହ୍ନଟ କରିବା ପରେ ସେହି ରାଜ୍ୟ/ଅଞ୍ଚଳର ନାଁ ଲେଖିବେ । ସେଠାରେ ଦେଖାଯାଉଥିବା ହାତୀଙ୍କ ସଂଖ୍ୟା ମଧ୍ୟ ଲେଖିବାକୁ ପିଲାମାନଙ୍କୁ କୁହ ।

### ଆଲୋଚନା

ମାନଚିତ୍ରରେ ସଜାଇବା ପରେ ହାତୀର ବର୍ତ୍ତମାନ ପରିସ୍ଥିତି ବିଷୟରେ ପିଲାଙ୍କ ସହ ଆଲୋଚନା କରାଯାଇ ପାରିବ । ହାତୀଙ୍କ ସଠିକ ସଂଖ୍ୟା କାହିଁକି ନାହିଁ ଏବଂ ସଠିକ ସଂଖ୍ୟା ଜାଣିହେବ କି ନାହିଁ ତାହା ମଧ୍ୟ ଆଲୋଚନା କର । କିମ୍ବା ପିଲାମାନେ ଏସୀୟ ହାତୀଙ୍କ ସ୍ଥିତି ବିଷୟରେ ନିଜେ କେଉଁଠି କହିପାରିବେ ।



Digitized by srujanika@gmail.com

# ତଥ୍ୟ ଭଣ୍ଡାର

## ଏସୀୟ ହାତୀଙ୍କ ସଂଖ୍ୟାର ଅଟକଳ

| ଦେଶ | ସଂଖ୍ୟା | |
|---|---|---|
| | ସର୍ବନିମ୍ନ | ସର୍ବାଧିକ |
| ବାଂଲାଦେଶ | ୨୦୦ | ୨୫୦ |
| ଭୁଟାନ | ୬୦ | ୧୫୦ |
| କାମ୍ବୋଡ଼ିଆ | ୨୦୦୦ | ୨୦୦୦ |
| ଚୀନ | ୨୫୦ | ୩୫୦ |
| ଭାରତ | ୨୦,୦୦୦ | ୨୪,୦୦୦ |
| ଇଣ୍ଡୋନେସିଆ | ୨୫୦୦ | ୪୫୦୦ |
| ଲାଓସ | ୨୦୦୦ | ୪୦୦୦ |
| ମାଲେସିଆ | ୧୩୦୦ | ୩୦୦୦ |
| ମିଆଁମାର | ୫୦୦୦ | ୬୦୦୦ |
| ନେପାଳ | ୫୦ | ୮୫ |
| ଶ୍ରୀଲଙ୍କା | ୨୫୦୦ | ୩୦୦୦ |
| ଥାଇଲାଣ୍ଡ | ୨୦୦୦ | ୨୦୦୦ |
| ଭିଏତନାମ | ୨୫୦ | ୪୦୦ |

ଉତ୍ସ: *ଡାନିଏଲ୍ ଜେ.ସି., ଦି ଏସିଆନ୍ ଏଲିଫାଣ୍ଟ: ଏ ନାଚୁରାଲ ହିଷ୍ଟ୍ରି*, ନଟରାଜ ପବ୍ଲିଶର୍ସ, ଡେରାଡୁନ ୧୯୯୮





## ଭାରତରେ ଜଙ୍ଗଲୀ ହାତୀ (୨୦୦୧)

| ଅଞ୍ଚଳ | ରାଜ୍ୟ | ସଂଖ୍ୟା |
|---|---|---|
| ଉତ୍ତର - ପୂର୍ବ | ଅରୁଣାଞ୍ଚଳ | ୧,୬୦୭ |
| | ଆସାମ | ୫,୩୧୨ |
| | ମେଘାଳୟ | ୧,୮୪୦ |
| | ନାଗାଲାଣ୍ଡ | ୧୪୭ |
| | ମିଜୋରାମ | ୨୮ |
| | ମଣିପୁର | ୧୦ - ୧୫ |
| | ତ୍ରିପୁରା | ୩୦ - ୫୦ |
| | ପଶ୍ଚିମବଙ୍ଗ (ଉତ୍ତର) | ୨୯୨ |
| ମୋଟ ଉତ୍ତର - ପୂର୍ବ | | ୯,୨୬୬ - ୯,୨୯୧ |
| ପୂର୍ବ | ପଶ୍ଚିମବଙ୍ଗ (ଦକ୍ଷିଣ) | ୩୫ |
| | ଝାଡ଼ଖଣ୍ଡ ଓ ବିହାର | ୬୧୮ |
| | ଓଡ଼ିଶା | ୧,୮୨୭ |
| ମୋଟ ପୂର୍ବ | | ୨,୪୮୦ |
| ଉତ୍ତର | ଉତ୍ତରାଞ୍ଚଳ | ୧,୫୦୭ |
| | ଉତ୍ତରପ୍ରଦେଶ | ୭୦ - ୧୦୦ |
| ମୋଟ ଉତ୍ତର | | ୧,୫୭୭ - ୧,୬୦୭ |
| ଦକ୍ଷିଣ | ତାମିଲନାଡୁ | ୨,୦୭୧ |
| | କର୍ଣ୍ଣାଟକ | ୬,୦୮୮ |
| | କେରଳ | ୫,୭୩୭ |
| | ଆନ୍ଧ୍ରପ୍ରଦେଶ | ୭୩ |
| ମୋଟ ଦକ୍ଷିଣ | | ୧୪,୮୬୯ |
| ଦ୍ୱୀପ ସମୂହ | ଆଣ୍ଡାମାନ ଓ ନିକୋବର | ୪୦ - ୭୦ |
| ସର୍ବମୋଟ ଭାରତ | | ୨୮,୨୩୨ - ୨୮,୩୧୭ |

ଉତ୍ସ: ବିଷ୍ଟ, ଏସ୍. ଏସ୍., *ଆନ୍ ଓଭରଭିଉ ଅଫ୍ ଏଲିଫାଣ୍ଟ କନ୍‌ଜରଭେସନ ଇନ୍ ଇଣ୍ଡିଆ: ନାସନାଲ ସିମ୍ପୋଜିଅମ୍ ଅନ୍ ଏଲିଫାଣ୍ଟ କନ୍‌ଜରଭେସନ, ମାନେଜ୍‌ମେଣ୍ଟ ଆଣ୍ଡ ରିସର୍ଚ୍ଚ*, ହରଦ୍ୱାର, ୨୦୦୧



Digitized by srujanika@gmail.com

# ଦୁଃଖକଷ୍ଟରେ ହାତୀ !

| ଏସୀୟ ହାତୀଙ୍କ ବିଷୟରେ ଜାଣିଥିବା ତଥ୍ୟର ମୂଲ୍ୟାୟନ | |
|---|---|
| *ଉଦ୍ଦେଶ୍ୟ* | ପିଲାଙ୍କୁ ସାହାଯ୍ୟ କରିବା -<br>● ଏସୀୟ ହାତୀର ସଂରକ୍ଷଣ ବିଷୟରେ ଥିବା ବିଭିନ୍ନ ଦିଗ ବୁଝିବାରେ<br>● ମିଳୁଥିବା ତଥ୍ୟକୁ ବୁଝିବା, ମନେରଖିବା ଏବଂ ବାଖ୍ୟା କରିବାର ଦକ୍ଷତା ବଢ଼ାଇବାରେ |
| *ସ୍ତର* | ମାଧ୍ୟମିକ |
| *ବିଷୟ* | ଭାଷା, ବିଜ୍ଞାନ, ସାମାଜିକ ବିଜ୍ଞାନ |
| *ଦଳର ଆକାର* | ଗଣିକିଆ |
| *ସ୍ଥାନ* | ଶ୍ରେଣୀଗୃହ ଭିତରେ |
| *ସମୟ ଅବଧି* | ୩୦ ମିନିଟ |
| *ସାମଗ୍ରୀ* | ଲେଖିବା ଜିନିଷ |

## ଆରମ୍ଭ କରିବା ଆଗରୁ

କାମ ଆରମ୍ଭ କରିବା ଆଗରୁ ତଳର ବୋଧଶକ୍ତି ପରୀକ୍ଷଣ ଅନୁଚ୍ଛେଦଟି କଳାପଟାରେ ଲେଖ । ଏହାକୁ ଗୋଟିଏ ଡ୍ରଇଁସିଟ୍‌ରେ ଲଗାଇ ଶ୍ରେଣୀର ନୋଟିସ୍ ବୋର୍ଡ଼ରେ ବି ଲଗାଯାଇପାରେ କିମ୍ବା ଶ୍ରୁତଲିଖନ ଭଳି ଡାକି ପିଲାଙ୍କୁ ଲେଖିନେବାକୁ କୁହାଯାଇପାରେ ।

## ପରଖର ଧାରା

ଏସୀୟ ହାତୀର ଆବାସସ୍ଥଳୀ ପ୍ରତି ଏବେ ଆଶଙ୍କା ଦେଖାଦେଇଛି । ସେଥିପାଇଁ ଏହି ରାଜକୀୟ ଜୀବର ସ୍ଥିତି ଏବେ ବିପଦରେ । ହାତୀର ଆବାସସ୍ଥଳୀକୁ ବହୁତ ପରିମାଣରେ ନଷ୍ଟ କରିବା ଫଳରେ ଏସୀୟ ହାତୀ ସଂରକ୍ଷଣ ଦିଗରେ ଦେଖାଦେଇଥିବା କିଛି ସମସ୍ୟା ଉପରେ ତଳ ଲେଖାଟି ପିଲାଙ୍କୁ ଦିଆଯିବ । ଏହାକୁ ଭଲକରି ପଢ଼ି ତଳ ପ୍ରଶ୍ନଗୁଡ଼ିକର ଉତ୍ତର ଲେଖିବା ପାଇଁ ପିଲାଙ୍କୁ କୁହ ।

- **ଆବାସସ୍ଥଳୀର କ୍ଷୟ ଏବଂ ବିଖଣ୍ଡନ:** ଏସୀୟ ହାତୀ ପାଇଁ ଏହା ସବୁଠାରୁ ବେଶି ଚିନ୍ତାର କଥା । ଦକ୍ଷିଣ ଭାରତରେ ବିରାଟ ଜଙ୍ଗଲ ଅଞ୍ଚଳ ସଫାକରି ବ୍ୟବସାୟିକ କାଠ ବା ତନ୍ତୁ ଉତ୍ପାଦନ ପାଇଁ ଇଉକାଲିପଟାସ, ଶାଗୁଆନ, ସିଲଭର ଓକ୍ ଭଳି ଏକଜାତୀୟ ଗଛ ଲଗାଯାଉଛି । ଏହା ଫଳରେ ହାତୀର ଆବାସ ଶତକଡ଼ା ପ୍ରାୟ ୧୦ ଭାଗ କମିଯାଇଛି । ଉତ୍ତରପ୍ରଦେଶରେ ୧୯୬୬ରୁ ୧୯୭୭ ମସିହା ଭିତରେ ହାତୀ ଆବାସସ୍ଥଳୀର ପ୍ରାୟ ତିନିଭାଗରୁ ଭାଗେ ଅଞ୍ଚଳରେ ଇଉକାଲିପଟାସ ଏବଂ ଅନ୍ୟ ଶୀଘ୍ର ବଢୁଥିବା ଗଛ ଲଗାଯାଉଛି । ପୂର୍ବ ଭାରତର କେତେକ ଅଞ୍ଚଳରେ ପ୍ରାକୃତିକ ଶାଳ ଜଙ୍ଗଲକୁ ଶାଗୁଆନ ବଣରେ ପରିଣତ କରିବା ଫଳରେ ହାତୀର ଆବାସସ୍ଥଳୀ ଉପରେ ବହୁତ ପ୍ରଭାବ ପଡୁଛି । ବିରାଟ ଅଞ୍ଚଳରେ ଖଣି ଖୋଳା ଯୋଗୁଁ ଏହି ସମସ୍ୟା ଆହୁରି ବଢ଼ିଯାଉଛି ।

  ନଦୀବନ୍ଧ ଏବଂ ଜଳଭଣ୍ଡାର ତିଆରି କରିବା ଫଳରେ ଉପତ୍ୟକା ଅଞ୍ଚଳରେ ହାତୀର ଆବାସସ୍ଥଳୀ ତ ବୁଡ଼ିଯାଉଛି, ସେମାନଙ୍କ ଚାଲବୁଲ ରାସ୍ତା ବି ବନ୍ଦ ହୋଇଯାଉଛି । ଏସବୁ ଫଳରେ ହାତୀର ଆବାସସ୍ଥଳୀ ଖଣ୍ଡ ଖଣ୍ଡ ହୋଇଯାଉଛି । ଅରୁଣାଞ୍ଚଳ ପ୍ରଦେଶରେ ସମତଳ ଅଞ୍ଚଳ ଏବଂ ଉପତ୍ୟକାରେ ରାସ୍ତା ତିଆରି ଏବଂ ଜନବସତି ବଢ଼ିବା ଯୋଗୁଁ ପ୍ରତିବର୍ଷ ହାତୀର ଆବାସସ୍ଥଳୀ କମୁଛି ।

- **ଆବାସସ୍ଥଳୀର ଗୁଣାତ୍ମକ କ୍ଷୟ:** ହାତୀର ଆବାସସ୍ଥଳୀ ଉପରେ ଭିତରୁ ଏବଂ ବାହାରୁ ପଡୁଥିବା ଜୈବିକ ଚାପ ଫଳରେ ତାହାର ଆକାର କମିଯାଉଛି । ତା' ସହିତ ଆବାସସ୍ଥଳୀର ଗୁଣାତ୍ମକ ମାନ ବି କମୁଛି । ଉଦାହରଣ ସ୍ୱରୂପ, ରାଜାଜୀ ଜାତୀୟ ଉଦ୍ୟାନରେ ଡାଳ କାଟି ନିଆଯାଉଛି ଏବଂ ଗୋରୁ ଚରାଯାଉଛି । ଫଳରେ ସେଠାରେ ଶତକଡ଼ା ୫୭ ଭାଗ ଅଞ୍ଚଳରେ ନାଗଅଇରୀ (*ଲାଣ୍ଟାନା କାମାରା*), ବାସଙ୍ଗ (*ଆଧାତୋଟା ଭାସିକା*) ଭଳି ଅଖାଦ୍ୟ ଗଛ ମାଡ଼ିଯାଉଛି । ଏଠାରେ କଣି (*ଟ୍ରିଟେଲିଆ ରୋଟୁସା*), ଢାମଣା (*ଗ୍ରେୱିଆ ଟିଲେଫୋଲିଆ*), କୋଦାଳ (*ଷ୍ଟେରକୁଲିଆ ଭିଲୋସା*) ଭଳି ହାତୀର ପ୍ରିୟ ଗଛ ଆଉ ପ୍ରାୟ ବଢୁନାହିଁ । ଦକ୍ଷିଣ ଭାରତର ମୁଦୁମଲାଇ ଅଭୟାରଣ୍ୟ ଭଳି ଶୁଷ୍କ ପର୍ଣ୍ଣମୋଚୀ ଜଙ୍ଗଲରେ ପଶୁଚରିବା ଏବଂ ନିଆଁ ଲାଗିବା ଯୋଗୁଁ ଗୋଠ (*ଜିଜିଫସ୍ ଜାଇଲୋପାଇରସ*) ଭଳି ହାତୀର ପ୍ରିୟ ଗଛ ଆଉ ବଢୁନାହିଁ । ଜୈବିକ ଚାପ ଯୋଗୁଁ ଅନ୍ୟ ହାତୀ ଆବାସସ୍ଥଳୀରେ ବି ଏହିଭଳି ସମସ୍ୟା ଦେଖାଦେଇଛି ।

- **ପୋଡୁଚାଷ:** ମେଘାଳୟ, ନାଗାଲାଣ୍ଡ ଏବଂ ତ୍ରିପୁରାରେ ପାରମ୍ପରିକ ପୋଡୁଚାଷ ହାତୀର ବଡ଼ ବିପଦ ହେଉଛି । କାରଣ ଏଥିପାଇଁ ହାତୀ ଆବାସସ୍ଥଳୀର ଅନେକ ଅଞ୍ଚଳ କଟାହୋଇ ଚାଷଜମି କରାଯାଉଛି । ତ୍ରିପୁରାରେ ୧୯୫୦-୮୦ ଭିତରେ ଶତକଡ଼ା ୨୫ ଭାଗ ବା ୧୬୬୦ ବର୍ଗ କି.ମି. ସଂରକ୍ଷିତ ଜଙ୍ଗଲ ପୋଡୁଚାଷରେ ନଷ୍ଟ ହୋଇଛି । ନାଗାଲାଣ୍ଡରେ ରାଜ୍ୟର ଶତକଡ଼ା ୩୫ ଭାଗ ଭୌଗଳିକ ଅଞ୍ଚଳ ବା ୫୭୪୮ ବର୍ଗ କି.ମି.ରେ ପୋଡୁଚାଷ କରାଯାଏ । ପୋଡୁଚାଷ ଯୋଗୁଁ ମେଘାଳୟର ଜୟନ୍ତିଆ ପାହାଡ଼ ସଂରକ୍ଷିତ ଜଙ୍ଗଲର ଶତକଡ଼ା ୪୩ ଭାଗ ବା ୩୧୧୫



Digitized by srujanika@gmail.com

ବର୍ଗ କି.ମି. ଜଙ୍ଗଲ କ୍ଷୟ ହୋଇଛି । ଓଡ଼ିଶାର ସାତଟି ଜଙ୍ଗଲ ବିଭାଗର ଶତକଡ଼ା ୫୫ ଭାଗ ବା ୧୧,୦୦୦ ବର୍ଗ କି.ମି. ଜାଗାରେ ପୋଡୁଚାଷ କରାଯାଉଛି ।

- **ହାତୀର ଶସ୍ୟ ଚୋରି ଏବଂ ମଣିଷ ମରା:** ହାତୀ ତା'ର ଖାଦ୍ୟ ସଂଗ୍ରହ କରିବା ପାଇଁ ବେଶ୍ ବଡ଼ ଅଞ୍ଚଳ ଦରକାର କରେ । ଯଦି ତାଙ୍କର ପ୍ରାକୃତିକ ଜାଗା ବେଶ୍ ବଡ଼ ଅଛି, ତେବେ ତାଙ୍କର ନିତିଦିନିଆ ବିଚରଣ ବା ଋତୁ ଅନୁସାରେ ଜାଗା ବଦଳା ବେଳେ ବି ସେମାନେ ଫସଲର ଆଖପାଖକୁ ଆସନ୍ତି ନାହିଁ । ହାତୀର ଆବାସସ୍ଥଳୀ ଛୋଟ ଏବଂ ଖଣ୍ଡ ଖଣ୍ଡ ହୋଇଯିବା ଯୋଗୁଁ ସେମାନେ ଛୋଟ ଜଙ୍ଗଲରେ ରହୁଛନ୍ତି ଏବଂ ସେମାନଙ୍କ ଚାରିପାଖେ ବିରାଟ ଅଞ୍ଚଳର ଚାଷଜମି ରହୁଛି । ତେଣୁ ହାତୀର ଯିବା ଆସିବା ବାଟରେ ଚାଷଜମି ପଡୁଛି ଏବଂ ଧାନ, ଆଖୁ ଭଳି ପୁଷ୍ଟିକର ଖାଦ୍ୟ ପ୍ରତି ସେ ଅଧିକ ଆକର୍ଷିତ ହେଉଛି । ଥରେ ସେ ଏସବୁର ସ୍ୱାଦ ପାଇଗଲେ ଜଙ୍ଗଲରେ ଯଥେଷ୍ଟ ଖାଦ୍ୟ ମିଳୁଥିଲେ ବି ସେ ବାରମ୍ବାର ସେହି ଜମିକୁ ଆସେ । ଫସଲ ଚୋରୀ ସମୟରେ ସେ କେବଳ ଫସଲ ନଷ୍ଟ କରେନାହିଁ, ବରଂ ଜନବସତି ଆଡ଼କୁ ଯାଏ ଏବଂ ବେଳେବେଳେ ମଣିଷକୁ ବି ମାରିଦିଏ । ଫଳରେ ହାତୀ ଏବଂ ମଣିଷ ଭିତରେ ସଂଘର୍ଷ ଗୁରୁତର ହୁଏ ।

ଉତ୍ସ: *ପ୍ରୋଜେକ୍ଟ ଏଲିଫାଣ୍ଟ: ଗଜତ୍ମେ*, ପରିବେଶ ଓ ଜଙ୍ଗଲ ମନ୍ତ୍ରଣାଳୟ, ଭାରତ ସରକାର, ୧୯୯୩

## ପ୍ରଶ୍ନାବଳୀ

ଅନୁଚ୍ଛେଦରୁ ତୁମେ ବୁଝିଥିବା ଅନୁସାରେ ତଳ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅ ।

୧. ହାତୀର ଆବାସସ୍ଥଳୀ ଛୋଟ ଏବଂ ଖଣ୍ଡ ଖଣ୍ଡ ହେବାର ମୁଖ୍ୟ କାରଣଗୁଡ଼ିକର ତାଲିକା କର ।

୨. ଦେଶର ଦକ୍ଷିଣ ଭାଗରେ ହାତୀର ବିପଦଗୁଡ଼ିକ ଲେଖ ।

୩. ୧୯୬୬ରୁ ୧୯୭୬ ମସିହା ଭିତରେ ଉତ୍ତରପ୍ରଦେଶର କେଉଁ ଅଞ୍ଚଳରେ ହାତୀର ଆବାସସ୍ଥଳୀରେ ଏକଜାତୀୟ ବୃକ୍ଷରୋପଣ କରାଯାଇଥିଲା?

୪. ଶୂନ୍ୟସ୍ଥାନ ପୂରଣ କର

କ. ତ୍ରିପୁରାରେ ସଂରକ୍ଷିତ ଜଙ୍ଗଲର —— ଭାଗ ଚାଷଜମିରେ ପରିଣତ କରାଯାଇଛି ।

ଖ. ଓଡ଼ିଶାରେ ହାତୀ ଥିବା ସାତଟି ବନଖଣ୍ଡର ପ୍ରାୟ —— ଭାଗ ବା ୧୧,୦୦୦ ବର୍ଗ କି.ମି. ଅଞ୍ଚଳରେ ପୋଡୁଚାଷ ହେଉଛି ।

ଗ. ଦକ୍ଷିଣ ଭାରତରେ ଏକଜାତୀୟ ବୃକ୍ଷରୋପଣ ଯୋଗୁଁ ହାତୀ ଆବାସସ୍ଥଳୀର —— ଭାଗ ଅଞ୍ଚଳ କ୍ଷୟ ହୋଇଛି ।

ଘ. ନାଗାଲାଣ୍ଡର —— ଭାଗ ଭୌଗଳିକ ଅଞ୍ଚଳରେ ପୋଡୁଚାଷ କରାଯାଏ ।

ଙ. ୧୯୬୬ରୁ ୧୯୭୬ ମସିହା ଭିତରେ ଉତ୍ତରପ୍ରଦେଶର —— ହାତୀ ଆବାସସ୍ଥଳୀକୁ ଇଉକାଲିପଟାସର ଏକଜାତୀୟ ବୃକ୍ଷରୋପଣ ଅଞ୍ଚଳରେ ପରିଣତ କରାଯାଇଛି ।

୫. ତଳ ବାକ୍ୟଗୁଡ଼ିକ ଠିକ ବା ଭୁଲ ବାଛ ।

କ. ଅରୁଣାଞ୍ଚଳ ପ୍ରଦେଶରେ ହାତୀର ଆବାସସ୍ଥଳୀ ଭିତରେ ଜନବସତି ବଢୁଥିବାରୁ ଆବାସସ୍ଥଳୀ କମୁଛି ।

ଖ. ମେଘାଳୟର ହାତୀ ଆବାସସ୍ଥଳୀର ଶତକଡ଼ା ୨୦ ଭାଗ ଅଞ୍ଚଳରେ ପୋଡୁଚାଷ କରାଯାଉଛି ।

ଗ. ଜଙ୍ଗଲରେ ମିଳୁଥିବା ଖାଦ୍ୟଠାରୁ ଚାଷଜମିରୁ ମିଳୁଥିବା ଖାଦ୍ୟ ବେଶି ପୁଷ୍ଟିକର ଏବଂ ସୁଆଦିଆ ହୋଇଥିବାରୁ ହାତୀ ତାହା ଚୋରି କରେ ।

ଘ. ପୂର୍ବ ଭାରତରେ ଖଣି କାମ ହାତୀର ଆବାସସ୍ଥଳୀର ଅବସ୍ଥାକୁ ବେଶି ଖରାପ କରିଛି ।

ଙ. ମୁଦୁମଲାଇ ଅଭୟାରଣ୍ୟରେ *ଲିଜିଫସ୍ ଜାଇଲୋପାଇରସ* ଭଳି ହାତୀର ପ୍ରିୟ ଗଛ ଖୁବ ଶୀଘ୍ର ବଢ଼ିଥାଏ ।

୬. ହାତୀ-ମଣିଷ ସଂଘର୍ଷର କୌଣସି ଗୋଟିଏ କାରଣ ବର୍ଣ୍ଣନା କର ।

୭. ତଳ ଶବ୍ଦଗୁଡ଼ିକର ଅର୍ଥ ଲେଖ ଏବଂ ତାକୁ ଲଗାଇ ନିଜ ମନରୁ କିଛି ନୂଆ ବାକ୍ୟ ଗଢ଼ : ଏକଜାତୀୟ, ବିଖଣ୍ଡନ, ଆବାସସ୍ଥଳୀ, କ୍ଷୟ, ଖାଦ୍ୟ, କୁଆଁ ଦେବା, ଡାଳ କଟା

୮. ଉପରର ଅନୁଚ୍ଛେଦ ପାଇଁ ଏକ ଉପଯୁକ୍ତ ଶୀର୍ଷକ ଦିଅ ।

## ସଂପ୍ରସାରଣ/ପରିବର୍ତ୍ତନ

- ପିଲାମାନେ ତାଙ୍କ ଅଞ୍ଚଳ ବା ରାଜ୍ୟରେ ଏସୀୟ ହାତୀର ବିପଦଗୁଡ଼ିକର ଏକ ତାଲିକା ପ୍ରସ୍ତୁତ କରିପାରିବେ ।
- ସ୍ଥାନୀୟ ହାତୀ ସଂରକ୍ଷଣର କର୍ତ୍ତୃପକ୍ଷଙ୍କୁ ନିମନ୍ତ୍ରଣ କରି ସେମାନଙ୍କ ସହ ଏ ବିଷୟରେ ଆଲୋଚନା କର ।





Digitized by srujanika@gmail.com

**ପରଖ**

# ସାବଧାନ, ଶିକାରୀ ଆସୁଛି !

**ଏସୀୟ ହାତୀର ଶିକାର ଭୟ ବିଷୟରେ ଜାଣିବା**

| | |
|---|---|
| *ଉଦ୍ଦେଶ୍ୟ* | **ହାତୀ ପାଇଁ ଶିକାର କେତେ ବିପଦ ଆଣୁଛି ତାହା ପିଲାଙ୍କୁ ବୁଝାଇବା** |
| *ସ୍ତର* | **ଉଚ୍ଚତର** |
| *ବିଷୟ* | **ବିଜ୍ଞାନ, ଗଣିତ** |
| *ଦଳର ଆକାର* | **୪୦ ଜଣ ପର୍ଯ୍ୟନ୍ତ ପିଲା** |
| *ସ୍ଥାନ* | **ଶ୍ରେଣୀ ବାହାରେ** |
| *ସମୟ ଅବଧି* | **୩୦ ମିନିଟ** |
| *ସାମଗ୍ରୀ* | **ସର୍ବେକ୍ଷଣ କାଗଜ, ଲେଖିବା ଜିନିଷ, ରିବନ** |

ହାତୀଦାନ୍ତ ପାଇଁ ଶିକାର ଯୋଗୁଁ ହାତୀ ସଂଖ୍ୟା କମୁଛି । କିନ୍ତୁ ଦାନ୍ତ ପାଇଁ ଲୋକେ ତାକୁ କାହିଁକି ମାରନ୍ତି ? ହାତୀଦାନ୍ତରେ ସେମାନେ କ'ଣ କରନ୍ତି ?

ଭାରତରେ ହାତୀଦାନ୍ତର ଗହଣା, ସଜେଇବା ଜିନିଷ ଏବଂ ଅନ୍ୟ କଳାକୃତି ତିଆରି ହୁଏ । କେବଳ ଭାରତରେ ଏସବୁ ତିଆରି ହୁଏନାହିଁ । ଏବେ ଚୀନ ଓ ଜାପାନ ହାତୀଦାନ୍ତ ବ୍ୟବସାୟର ଦୁଇଟି ମୁଖ୍ୟ କେନ୍ଦ୍ର । ବିଶେଷ କରି ଜାପାନରେ ହାତୀଦାନ୍ତରେ ତିଆରି ହାଙ୍କୋସ୍‌ର ଚାହିଦା ଏବେ ଖୁବ୍ ବେଶୀ ।

ସିଆଇଟିଇଏସ୍ (*କନ୍‌ଭେନ୍‌ସନ୍ ଅନ୍ ଇଣ୍ଟରନ୍ୟାସନାଲ୍ ଟ୍ରେଡ୍ ଇନ୍ ଏନ୍‌ଡେଞ୍ଜରଡ୍ ସ୍ପିସିଜ୍ ଅଫ ୱାଇଲଡ୍ ଫନା ଏଣ୍ଡ୍ ଫ୍ଲୋରା*)ର ପରିଶିଷ୍ଟ୧ରେ ଏବେ ହାତୀ ରହିଛି । ଏହାର ଅର୍ଥ ହେଉଛି ଏସୀୟ ହାତୀ ସମ୍ବନ୍ଧୀୟ ଯେକୌଣସି ଆନ୍ତର୍ଜାତୀୟ ବ୍ୟବସାୟ ନିଷିଦ୍ଧ ଏବଂ ବେଆଇନ । ସିଆଇଟିଇଏସ୍ ଏକ ଆନ୍ତର୍ଜାତିକ ଚୁକ୍ତି ଏବଂ ଏହା ବିପନ୍ନ ପ୍ରାଣୀଙ୍କ ବ୍ୟବସାୟକୁ ନିୟନ୍ତ୍ରଣ କରେ ।

ଏସୀୟ ଏବଂ ଆଫ୍ରିକୀୟ ହାତୀଦାନ୍ତ ଭିତରେ ତଫାତ ବାରିବା ବହୁତ କଷ୍ଟ । ତେଣୁ ଏସୀୟ ହାତୀଦାନ୍ତର ବ୍ୟବସାୟ ଏବଂ ଆଫ୍ରିକୀୟ ହାତୀଦାନ୍ତର ବ୍ୟବସାୟ ଦୁହେଁ ସମ୍ପର୍କିତ । ଏହା ଏସୀୟ ହାତୀଙ୍କ ସଂଖ୍ୟା ଉପରେ ପ୍ରଭାବ ପକାଉଛି । ୧୯୯୭ ମସିହାରେ ହାରାରେ ଠାରେ *ସିଆଇଟିଇଏସ୍* ଏକାଠି ହୋଇ ଆଫ୍ରିକୀୟ ହାତୀଦାନ୍ତ ଉପରୁ ନିଷେଧାଜ୍ଞା ଆଂଶିକ ଭାବରେ କୋହଳ କରିଦେବା ପରେ ଏହା ସ୍ପଷ୍ଟ ଭାବରେ ଜଣାପଡ଼ିଲା । ହଠାତ ଏସୀୟ ହାତୀଙ୍କ ଶିକାର ବଢ଼ିଗଲା । ୧୯୯୬ରେ ୮୭ଟି ହାତୀ ଶିକାର ହୋଇଥିବା ବେଳେ ୧୯୯୭ରେ ତାହା ବଢ଼ି ୧୧୨ ହୋଇଗଲା । ସାଙ୍ଗେ ସାଙ୍ଗେ ପୁଣିଥରେ ନିଷେଧାଜ୍ଞା ଜାରି କରାଗଲା ।

## ଆରମ୍ଭ କରିବା ଆଗରୁ

ଖେଳିବା ପାଇଁ ପ୍ରଥମେ ଗୋଟିଏ ବଡ଼ ଖୋଲା ଜାଗା ବାଛ । ଦୁଇ ବିପରୀତ ମୁଣ୍ଡରେ ଦୁଇଟି ଅଞ୍ଚଳକୁ ଗଜ ଜାତୀୟ ଉଦ୍ୟାନ ଏବଂ ଆନା ଅଭୟାରଣ୍ୟ ଭାବରେ ଚିହ୍ନଟ କର । ଏ ଦୁଇଟିର ମଝି ଅଞ୍ଚଳ ହାତୀ ବୁଲିବାର ସଂଯୋଗ ପଥ ଏବଂ ଏଇଠାରେ ହିଁ ଅନେକ ସଂଖ୍ୟାରେ ହାତୀ ଶିକାର କରାଯାଏ ।

## ପରଖର ଧାରା

### କାମ ପାଇଁ ସୂଚନା

ଏହି ଖେଳରେ କିଛି ପିଲା ହାତୀ, କିଛି ଶିକାରୀ, କିଛି ଜଙ୍ଗଲ ବିଭାଗ ଅଧିକାରୀ ଏବଂ କିଛି ଦର୍ଶକ ହେବେ ବୋଲି ପିଲାଙ୍କୁ କହିଦିଅ । ଯେଉଁମାନେ ହାତୀ ହେବେ ସେମାନେ ଗଜ ଜାତୀୟ ଉଦ୍ୟାନରୁ ଆନା ଅଭୟାରଣ୍ୟ ଭିତରେ ଯିବା ଆସିବା କରିବାବେଳେ ବାଟରେ ଶିକାରୀଙ୍କୁ ଭେଟିବେ । ଜଙ୍ଗଲ ଅଧିକାରୀମାନଙ୍କ କାମ ହେବ ଶିକାରୀଙ୍କୁ ଧରିବା । ଦର୍ଶକମାନେ ଖେଳ ଆରମ୍ଭ ଓ ଶେଷରେ ହାତୀଙ୍କ ସଂଖ୍ୟା ଟିପି ରଖିବେ । ଏହି ଖେଳରେ ପିଲାମାନେ ଏସୀୟ ହାତୀଙ୍କ ଶିକାର ବିଷୟରେ ଜାଣିପାରିବେ ।

ପୂରା ଶ୍ରେଣୀକୁ ଚାରୋଟି ଦଳରେ ଭାଗ କର । ଗୋଟିଏ ଦଳ ହାତୀ, ଗୋଟିଏ ଶିକାରୀ, ଗୋଟିଏ ଜଙ୍ଗଲ ବିଭାଗ ଅଧିକାରୀ ଏବଂ ଶେଷଟି ଦର୍ଶକ । ୪୦ ଜଣିଆ ଶ୍ରେଣୀକୁ କିପରି ଭାଗ କରାଯିବ ତାହା ତଳେ ଦିଆଯାଇଛି । ଶ୍ରେଣୀର ପିଲାସଂଖ୍ୟା ଅନୁସାରେ ଏହାକୁ ବଦଳା ଯାଇପାରେ ।

### ଭାଗ କ

**ସାରଣୀ କ**

| ଦଳ | ପିଲାଙ୍କ ସଂଖ୍ୟା |
|---|---|
| ହାତୀ | ୨୫ |
| ମାଇ | ୧୫ |
| ବୟସ୍କ ଦନ୍ତାହାତୀ | ୫ |
| ମାଖନା | ୩ |
| ଅଳ୍ପବୟସ୍କ ଅଣ୍ଡିରା ହାତୀ | ୨ |
| ଶିକାରୀ | ୭ |
| ଜଙ୍ଗଲ ବିଭାଗ ଅଧିକାରୀ | ୪ |
| ଦର୍ଶକ | ୪ |



Digitized by srujanika@gmail.com

ଖେଳିବା ଜାଗାଟି କିପରି ଚିହ୍ନଟ କରାଯାଇଛି ଏବଂ କେଉଁ ଅଞ୍ଚଳଟି କ'ଣ ତାହା ପିଲାଙ୍କୁ ବୁଝାଇ ଦିଅ ।

ଏହି ଖେଳରେ ତଳେ ଦିଆଯାଇଥିବା ଶିକାର ପ୍ରଣାଳୀ ଅନୁସରଣ କରାଯିବ । ପିଲାମାନଙ୍କର ଭୂମିକା ବିଷୟରେ ମଧ୍ୟ ସେମାନଙ୍କୁ କହିଦିଅ ।

| ବାଜି | ଶିକାର ପଦ୍ଧତି | ବିପଦର ପ୍ରକାର |
|---|---|---|
| ୧ | ଧନୁତୀର | ଧୀର ବେଗ |
| ୨ | ବିଷ | ସ୍ଥିର |
| ୩ | ବିଦ୍ୟୁତ ବାଡ଼ | ସ୍ଥିର |
| ୪ | ବନ୍ଧୁକ | ଅଧିକ ବେଗ |

## ଶିକାରୀ

ଦନ୍ତାହାତୀ, ଦାନ୍ତ ନଥିବା ଅଣ୍ଡିରା, ମାଇ ଏବଂ ଅଳ୍ପବୟସ୍କ ଅଣ୍ଡିରା ହାତୀ ମିଶି ଗୋଟିଏ ଦଳରେ ଜାତୀୟ ଉଦ୍ୟାନରୁ ଅଭୟାରଣ୍ୟକୁ ଯିବେ । ଶିକାରୀ ଭାବରେ ସେମାନେ ଅଧିକରୁ ଅଧିକ ହାତୀଦାନ୍ତ ପାଇବାକୁ ଚାହିଁବେ । ସେଥିପାଇଁ ସେମାନଙ୍କ ଲକ୍ଷ ରହିବ ଦାନ୍ତାହାତୀ । ଅବଶ୍ୟ ଏହି ପ୍ରକ୍ରିୟାରେ ଅନ୍ୟ ହାତୀ ବି ଧରା ପଡ଼ିପାରନ୍ତି । ଅଳ୍ପବୟସ୍କ ଅଣ୍ଡିରାଙ୍କର ବି ଛୋଟ ଦାନ୍ତ ଥାଏ । ଶିକାରୀମାନେ ବିଭିନ୍ନ ପ୍ରକାରର ହାତୀ କିପରି ଚିହ୍ନିବେ କହିଦିଅ ।

ହାତୀ ଧରିବା ପାଇଁ ଏମାନେ କ'ଣ କରିବେ ତାହା ସେମାନଙ୍କୁ ପ୍ରତି ବାଜି ଖେଳ ଆରମ୍ଭରେ କହିଦିଆଯିବ ।

## ହାତୀ

ହାତୀ ଦଳରେ ଦନ୍ତାହାତୀ, ଦାନ୍ତ ନଥିବା ମାଖନା ହାତୀ, ମାଇ ଏବଂ ଅଳ୍ପବୟସ୍କ ଅଣ୍ଡିରା ମିଶି ରହିଥିବେ । ସାରଣୀ 'କ'ରେ ଦିଆଯାଇଥିବା ଭଳି ହାତୀମାନଙ୍କୁ ଭାଗ କରିହେବ ।

ହାତୀ ଦଳର ପିଲାମାନଙ୍କୁ ଚିହ୍ନିବା ପାଇଁ ସେମାନେ ହାତରେ ବିଭିନ୍ନ ରଙ୍ଗର ଫିତା ବାନ୍ଧିବେ । ମିଳୁଥିବା ଫିତା ଅନୁସାରେ ରଙ୍ଗ ବଦଳା ଯାଇପାରେ । ଫିତା ବଦଳରେ ପିଲାମାନେ ହାତରେ ରଙ୍ଗୀନ କାଗଜ ବି ଲଗାଇପାରିବେ ।

| | |
|---|---|
| ବୟସ୍କ ଦନ୍ତାହାତୀ | ଧଳା ଫିତା |
| ମାଖନା | ଧୂସର ଫିତା |
| ଅଳ୍ପବୟସ୍କ ଅଣ୍ଡିରା | କମଳା ରଙ୍ଗର ଫିତା |
| ମାଇ | ଗୋଲାପି ଫିତା |

ହାତୀ ଦଳଙ୍କୁ ଗଜ ଜାତୀୟ ଉଦ୍ୟାନରୁ ଆନା ଅଭୟାରଣ୍ୟ ଯିବାକୁ ହେବ । ବାଟରେ ସେମାନେ ଶିକାରୀଙ୍କୁ ଭେଟିବେ । ଶିକାରୀମାନେ ବୟସ୍କ ଦନ୍ତାହାତୀ ବା ଅଳ୍ପବୟସ୍କ ଅଣ୍ଡିରା ହାତୀଙ୍କୁ ଧରିବା ପାଇଁ ଚେଷ୍ଟା କରିବେ । ଧରା ନପଡ଼ି ଏମାନଙ୍କୁ ଅଭୟାରଣ୍ୟରେ ପହଞ୍ଚିବାକୁ ହେବ । ଯିଏ ଧରାପଡ଼ିବ ସେ ମଲା ବୋଲି ଗଣାଯିବ ।

ଖେଳଟି ଚାରୋଟି ବାଜିରେ ଖେଳାଯିବ ବୋଲି ପିଲାଙ୍କୁ କହିଦିଅ । ପ୍ରତି ବାଜିରେ ଗୋଟିଏ ପ୍ରକାର ଶିକାର ପଦ୍ଧତିରେ ସେମାନଙ୍କୁ ଧରାଯିବ । ହାତୀ ଶିକାରର ବିଭିନ୍ନ ପଦ୍ଧତି ବିଷୟରେ ପିଲାଙ୍କ ସହ ଆଲୋଚନା କର । (ପୃଷ୍ଠା ୬୬ରେ ଶିକାରର ବିଭିନ୍ନ ପଦ୍ଧତି ବିଷୟରେ ଅଧିକ ତଥ୍ୟ ରହିଛି) । ଆଗ' କାଳରେ ଧନୁତୀର ସାହାଯ୍ୟରେ ହାତୀ ଶିକାର କରାଯାଉଥିଲା । କାରିଗରୀ ବିଦ୍ୟାର ବିକାଶ ଯୋଗୁଁ ଶିକାରୀ ଏବେ ଆଧୁନିକ ଅସ୍ତ୍ର ଏବଂ ପଦ୍ଧତି ବ୍ୟବହାର କରୁଛନ୍ତି । ଏବେ ବନ୍ଧୁକ ଚାଳନା, ବିଷ ଲୁଣ ଦେବା, ବିଦ୍ୟୁତ ଲଗାଇବା ଆଦି ହେଉଛି ହାତୀ ଶିକାରର କିଛି ପଦ୍ଧତି । ବେଳେବେଳେ ହାତୀଙ୍କ ଯିବା ଆସିବା ବାଟରେ ବିଷବୋଳା କଣ୍ଟା ପକାଇ ତା' ଉପରେ ଘାସ ବିଛାଇ ଦିଆଯାଏ । ତାକୁ ମାଡ଼ିଲେ ହାତୀ ମରିଯାନ୍ତି ।

## ଦର୍ଶକ

ଖେଳ ଚାଲିଥିଲାବେଳେ ଏହି ଦଳର ପିଲାମାନେ ପୃଷ୍ଠା ୭୬ରେ ଥିବା ନିରୀକ୍ଷଣ ଫର୍ଦ୍ଦରେ ତଳ କଥାଗୁଡ଼ିକ ଲେଖିବେ ।

- ପ୍ରତି ବାଜି ଆରମ୍ଭରେ ବୟସ୍କ ଦନ୍ତାହାତୀ, ମାଖନା, ମାଇ ଏବଂ ଅଳ୍ପବୟସ୍କ ଅଣ୍ଡିରା ହାତୀଙ୍କ ସଂଖ୍ୟା ।
- ବାଜି ଶେଷରେ ଖସିଯାଇ ବଞ୍ଚି ରହିଥିବା ଦନ୍ତାହାତୀ, ମାଖନା, ମାଇ ଏବଂ ଅଳ୍ପବୟସ୍କ ଅଣ୍ଡିରାଙ୍କ ସଂଖ୍ୟା ।

ଖେଳ ଶେଷରେ ପ୍ରତି ବାଜିରେ ଏସୀୟ ହାତୀଙ୍କ ସଂଖ୍ୟା କମିବା/ବଢ଼ିବାକୁ ନେଇ ସେମାନେ ଏକ ଗ୍ରାଫ୍ ତିଆରି କରିବେ । ସେହି ଗ୍ରାଫ୍‌ରେ ପ୍ରତି ବାଜିରେ ଦନ୍ତାହାତୀଙ୍କ ସଂଖ୍ୟା କେତେ କମିଲା ତାହା ମଧ୍ୟ ଦେଖାଇବେ । ଆଗକୁ ଆଲୋଚନା ପାଇଁ ଏହି ଗ୍ରାଫ୍ ଆଧାର ହେବ ।

## ଜଙ୍ଗଲ ବିଭାଗ ଅଧିକାରୀ

ଜଙ୍ଗଲ ବିଭାଗ ଅଧିକାରୀ ଭାବରେ ଏମାନଙ୍କ ମୁଖ୍ୟ କାମ ହେବ ଜଙ୍ଗଲୀ ହାତୀ ଶିକାର କରୁଥିବା ଶିକାରୀଙ୍କୁ ଧରିବା । କାରଣ ଏହି ଶିକାରୀମାନେ ଜଙ୍ଗଲୀ ହାତୀଙ୍କ ପ୍ରତି ବଡ଼ ବିପଦ ହୋଇଉଠୁଛନ୍ତି । ଜଙ୍ଗଲ ବିଭାଗ ଅଧିକାରୀମାନେ କେବଳ ଚତୁର୍ଥ ବାଜିରେ ହିଁ ଖେଳିବେ । କ'ଣ କରିବାକୁ ହେବ ବାଜି ଆରମ୍ଭରେ କେବଳ ସେମାନଙ୍କୁ ବୁଝାଯିବ ।

## ଖେଳ

ଗୋଟିଏ ତାଳିରୁ ଖେଳ ଆରମ୍ଭ ହେବ ଏବଂ ସେଇ ତାଳିରେ ହିଁ ଖେଳ ଶେଷ ହେବ ବୋଲି ପିଲାଙ୍କୁ କହିଦିଅ । ପ୍ରତି ବାଜି ମାତ୍ର ୧ ମିନିଟ ପାଇଁ ଖେଳାଯିବ । ତାଳି ମାରିବା ବା କହିବା ବେଳେ ଧ୍ୟାନ ଦେବାକୁ ହେବ ସବୁପିଲା ଯେପରି ତାହା ଶୁଣିପାରିବେ ।

## ପ୍ରଥମ ବାଜି

**ଶିକାରୀ:** ଏହି ବାଜିରେ ଶିକାରୀମାନେ ମଝି ଅଞ୍ଚଳରେ ମନଇଚ୍ଛା ବାଣ୍ଟି ହୋଇଯିବେ । ସେମାନେ ପାଦରେ ଚାଲି ଚାଲି ଧନୁତୀର ଧରି ହାତୀ ଶିକାର କରୁଛନ୍ତି ବୋଲି ପିଲାଙ୍କୁ କହିଦିଅ । ଏହି ବାଜିରେ ପିଲାମାନେ କେବଳ ଚାଲିପାରିବେ । ଧାଇଁପାରିବେ ନାହିଁ ।



Digitized by srujanika@gmail.com

**ହାତୀ:** ଏମାନେ ଏପଟରୁ ସେପଟକୁ ଯିବେ ଏବଂ ଧରା ନପଡ଼ିବା ପାଇଁ ଚେଷ୍ଟା କରିବେ । ଯଦି ଧରା ପଡ଼ିଗଲେ ତେବେ ବାଜି ସରିବା ଯାଏଁ ସେମାନେ ଆଉ ନବୁଲି ସେଇଠି ସ୍ଥିର ହୋଇ ଠିଆ ହୋଇଯିବେ ।

## ଦ୍ୱିତୀୟ ବାଜି

ଏହି ବାଜି ପାଇଁ ହାତୀର ଚଲାପଥରେ ପାଞ୍ଚ-ସାତଟି ଗୋଲ ଟାଣିଦିଅ । ଏହି ଗୋଲଗୁଡ଼ିକ ୦·୩ ମିଟର ବ୍ୟାସର ହେଲେ ଚଳିବ ।

**ଶିକାରୀ:** ଏହି ବାଜିରେ ଶିକାରୀମାନେ ଗୋଲ ଭିତରେ ଠିଆ ହେବେ । ସେମାନେ ହାତୀଙ୍କୁ ବିଷ ଦେଇ ମାରୁଛନ୍ତି, ତେଣୁ ସେମାନେ ଗୋଲ ବାହାରକୁ ଆସିପାରିବେ ନାହିଁ । ସେମାନେ ହାତ ବଢ଼ାଇ ସେଇ ଗୋଲ ଭିତରେ ଏପଟ ସେପଟ ହୋଇ ହାତୀ ଧରିପାରିବେ ।

**ହାତୀ:** ଗୋଲଗୁଡ଼ିକ ହେଉଛି ବିଷଲଗା ଲୁଣଚଟା । ତେଣୁ ଯଦି ସେମାନେ ଅଭୟାରଣ୍ୟକୁ ଯିବା ବାଟରେ ଶିକାରୀଙ୍କ ଦ୍ୱାରା ଧରା ପଡ଼ିଲେ ସେମାନେ ଆଉ ନବୁଲି ସ୍ଥିର ହୋଇ ଠିଆ ହୋଇଯିବେ । ଏମାନେ ମୃତ ବୋଲି ଗଣାଯିବେ ।




ଗଜ ଜାତୀୟ ଉଦ୍ୟାନ    ଆନ୍ନା ଅଭୟାରଣ୍ୟ

## ତୃତୀୟ ବାଜି

**ଶିକାରୀ:** ଏହି ବାଜିରେ ଶିକାରୀମାନେ ଚଲାପଥର ଧାରରେ ଠିଆ ହେବେ । ଶିକାରୀ ପିଲା ଦଳକୁ କହିଦିଅ ଯେ ବାଡ଼ରେ ବିଦ୍ୟୁତ ତାର ଲଗାଇ ସେମାନେ ହାତୀକୁ ମାରୁଛନ୍ତି । ଶିକାରୀମାନେ ସ୍ଥିର ଭାବରେ ଠିଆ ହୋଇ କେବଳ ହାତ ବଢ଼ାଇ ହାତୀ ଧରିପାରିବେ ।

**ହାତୀ:** ଯଦି ଆନ୍ନା ଅଭୟାରଣ୍ୟ ଯିବା ବାଟରେ ସେମାନେ ଶିକାରୀ ଦ୍ୱାରା ଧରାପଡ଼ନ୍ତି ତେବେ ସ୍ଥିର ହୋଇ ଠିଆ ହେବେ ଏବଂ ମୃତ ବୋଲି ଗଣାହେବେ ।

## ଚତୁର୍ଥ ବାଜି

ଶିକାର ଫଳରେ ହାତୀଙ୍କ ସଂଖ୍ୟା ବହୁତ କମିଯାଉଥିବାରୁ ଜଙ୍ଗଲ ବିଭାଗ ଶିକାରୀଙ୍କୁ ଧରିବା ଓ ହାତୀ ସୁରକ୍ଷା ପାଇଁ ଗୋଟିଏ ଦଳ ଗଠନ କରିଛନ୍ତି । ଏହି ବାଜିରେ ପ୍ରଥମ ତାଳିରେ ହାତୀମାନେ ଚଲାପଥକୁ ଆସିବେ ଏବଂ ଏଥିରେ ଶିକାରୀମାନେ ଖେଳାଇ ହୋଇଥିବେ । ଆଉ ଗୋଟିଏ ତାଳିରେ ଜଙ୍ଗଲ ବିଭାଗ ଅଧିକାରୀମାନେ ଆସିବେ । ଦଶ ସେକେଣ୍ଡ ଛଡ଼ାରେ ତାଳି ଦୁଇଟି ମରାଯିବ ।

**ଶିକାରୀ:** ଏହି ବାଜିରେ ଶିକାରୀମାନେ ଚଲାପଥରେ ଖେଳାଇ ହୋଇ




ଗଜ ଜାତୀୟ ଉଦ୍ୟାନ    ଆନ୍ନା ଅଭୟାରଣ୍ୟ

ରହିଥିବେ । ଏମାନେ ବନ୍ଧୁକରେ ଶିକାର କରୁଛନ୍ତି । ଯେହେତୁ ଏମାନେ ଜିପ୍‌ରେ ଯାଉଛନ୍ତି, ତେଣୁ ଜୋରରେ ଧାଇଁ ପାରିବେ । ସେମାନେ ହାତୀକୁ ଧରିବା ବେଳେ ଜଙ୍ଗଲ ବିଭାଗ ଅଧିକାରୀଙ୍କ ପ୍ରତି ମଧ୍ୟ ଲକ୍ଷ ରଖିବେ । ସେମାନେ ଜଙ୍ଗଲ ଅଧିକାରୀଙ୍କଠାରୁ ଖସି ହାତୀ ଧରିବା ଦରକାର ।

**ହାତୀ:** ଏହି ବାଜିରେ ଶିକାରୀମାନେ ଜୋରରେ ଧାଇଁପାରିବେ । ତେଣୁ ହାତୀମାନେ ବି ସେହିଭଳି ଜୋରରେ ଧାଇଁବା ଦରକାର । ଏହି ବାଜିରେ ଜଙ୍ଗଲ ବିଭାଗର କିଛି ଅଧିକାରୀ ବି ଶିକାରୀଙ୍କୁ ଖୋଜୁଥିବେ ।

**ଜଙ୍ଗଲ ବିଭାଗ ଅଧିକାରୀ:** ଏହି ଦଳର ପିଲାମାନେ ଶିକାରୀଙ୍କୁ ଧରିବାକୁ ଚେଷ୍ଟା କରିବେ । ଏମାନେ ଜିପ୍‌ରେ ଯାଉଥିବାରୁ ଜୋରରେ ଧାଇଁ ଶିକାରୀଙ୍କୁ ଧରିପାରିବେ । ଯଦି ଜଙ୍ଗଲ ଅଧିକାରୀ କୌଣସି ଶିକାରୀଙ୍କୁ ଧରିବେ, ତେବେ ଶିକାରୀ ଜଣକ ଗୋଟିଏ ଜାଗାରେ ସ୍ଥିର ହୋଇ ଠିଆ ହେବେ ।

## ଆଲୋଚନା

- ପ୍ରତି ବାଜି ଆରମ୍ଭରେ କେତେ ଲେଖାଏଁ ହାତୀ ଥିଲେ? ପ୍ରତି ବାଜିରେ କ'ଣ ହେଲା ବୋଲି ତୁମେ ଭାବୁଛ?
- ଚତୁର୍ଥ ବାଜିରେ ଶିକାର କିଛି କମ୍ ହୋଇଥିଲା କି? ଜଙ୍ଗଲ ବିଭାଗ ଅଧିକାରୀ ଶିକାରୀ ଧରିବା ପାଇଁ ନେଇଥିବା ପଦକ୍ଷେପ କିଛି ଫଳପ୍ରଦ ହୋଇଥିଲା କି?

## ଭାଗ ଖ

ଭାରତରେ ଶିକାର ଯୋଗୁଁ ମରିଥିବା ହାତୀଙ୍କ ପ୍ରକୃତ ସଂଖ୍ୟା ପିଲାମାନଙ୍କୁ କହିଦିଅ ।

### ଶିକାର ଯୋଗୁଁ ମରିଥିବା ହାତୀଙ୍କ ସଂଖ୍ୟା

| ବର୍ଷ | ହାତୀ ମରିଥିବା ସଂଖ୍ୟା |
|---|---|
| ୧୯୯୫ | ୭୫ |
| ୧୯୯୬ | ୭୨ |
| ୧୯୯୭ | ୬୦ |
| ୧୯୯୮ | ୬୬ |
| ୧୯୯୯ | ୬୧ |
| ୨୦୦୦ | ୬୦ |



Digitized by srujanika@gmail.com

ଏହି ତଥ୍ୟରୁ ପିଲାମାନଙ୍କୁ ତଳ ହିସାବଗୁଡ଼ିକ କରିବାକୁ କୁହ ।

- ଛଅ ବର୍ଷରେ ଶିକାର ଯୋଗୁଁ ମୋଟ କେତେ ହାତୀ ମରିଥିଲେ ?
- ପ୍ରତିବର୍ଷ ଶିକାର ଯୋଗୁଁ ମରୁଥିବା ହାତୀଙ୍କର ହାରାହାରି ସଂଖ୍ୟା କେତେ ?
- ଏହି ତଥ୍ୟକୁ ନେଇ ଗୋଟିଏ ଗ୍ରାଫ୍ ଅଙ୍କନ କର । କି ପ୍ରକାରର ଗ୍ରାଫ୍ ଏହି ତଥ୍ୟ ଦର୍ଶାଇବା ପାଇଁ ସବୁଠାରୁ ଭଲ ହେବ ?

**ଆଲୋଚନା**

ଖେଳ ସରିବା ପରେ ପିଲାଙ୍କ ସହ ଆଲୋଚନା କର -

- ଆମ ଦେଶରେ ହାତୀ ଶିକାର କାହିଁକି କରାଯାଉଛି ?
- ଏସୀୟ ହାତୀ ସଂଖ୍ୟା ଉପରେ ଶିକାରର କି ପ୍ରକାର ପ୍ରଭାବ ପଡୁଛି ?
- ଶିକାର ଯୋଗୁଁ କେବଳ ଅଣ୍ଡିରା ଦନ୍ତାହାତୀଙ୍କ ସଂଖ୍ୟା କମୁଛି ? ଏହାର ଆଉ କିଛି ଅନ୍ୟ ପ୍ରଭାବ ରହିଛି କି ?
- ବାଛି ବାଛି କେବଳ ଅଣ୍ଡିରା ହାତୀ ମାରିବା ଦ୍ୱାରା ହାତୀ ସଂଖ୍ୟା ଉପରେ କିଛି ପ୍ରଭାବ ପଡୁଛି କି ?
- ଶିକାର ପାଇଁ ବ୍ୟବହାର କରାଯାଉଥିବା ଆଧୁନିକ ପଦ୍ଧତି ଏବଂ ଯନ୍ତ୍ରପାତି ଯୋଗୁଁ କିଭଳି ପ୍ରଭାବ ପଡୁଛି ?
- ହାତୀ ଶିକାର ପ୍ରକୃତରେ କମୁଛି ବୋଲି ତମେ ଭାବୁଛ କି ? ଗ୍ରାଫ୍‌ର ବ୍ୟାଖ୍ୟାରୁ କ'ଣ ଜଣାପଡୁଛି ?
- ଖେଳର ଭାଗ 'ଖ' ରେ ଥିବା ସାରଣୀରେ ହାତୀ ଶିକାରର ସଂଖ୍ୟା ଦିଆଯାଇଛି । କିନ୍ତୁ ହାତୀ ମରିବାର ଅନେକ ଘଟଣା ଲୋକଲୋଚନକୁ ଆସେନାହିଁ ବା ତା' ବିଷୟରେ ଜଣାପଡ଼େ ନାହିଁ । ଏପରି କାହିଁକି ହେଉଛି ବୋଲି ତମେ ଭାବୁଛ ?
- ଜଙ୍ଗଲ ବିଭାଗ କିପରି ସଫଳ ଭାବରେ ହାତୀ ଶିକାର ବନ୍ଦ କରିପାରିବେ ? ସେମାନଙ୍କର କି ପ୍ରକାରର ବାଧା ସବୁ ଆସିପାରେ ?

## ସଂପ୍ରସାରଣ/ପରିବର୍ତ୍ତନ

ପିଲାମାନେ ପୋଷ୍ଟର ତିଆରି କରି ରେଡିଓ, ଦୂରଦର୍ଶନରେ ବିଜ୍ଞାପନ ଦେଇ ଲୋକଙ୍କୁ ହାତୀଦାନ୍ତର ଜିନିଷ ବ୍ୟବହାର ନକରିବାକୁ ବା ନକିଣିବାକୁ ବୁଝାଇ ପାରିବେ ।

## ନିରୀକ୍ଷଣ ଫର୍ଦ୍ଦ

| | ଅଣ୍ଡିରା ଦନ୍ତାହାତୀଙ୍କ ସଂଖ୍ୟା | | ମାଈମାନଙ୍କ ସଂଖ୍ୟା | | ଅଳ୍ପବୟସ୍କ ଅଣ୍ଡିରାଙ୍କ ସଂଖ୍ୟା | | ବୟସ୍କ ମାଈଙ୍କ ସଂଖ୍ୟା | |
|---|---|---|---|---|---|---|---|---|
| | ଆରମ୍ଭ | ଶେଷ | ଆରମ୍ଭ | ଶେଷ | ଆରମ୍ଭ | ଶେଷ | ଆରମ୍ଭ | ଶେଷ |
| ପ୍ରଥମ ବାଜି ଧନୁତୀର | | | | | | | | |
| ଦ୍ୱିତୀୟ ବାଜି ବିଷ | | | | | | | | |
| ତୃତୀୟ ବାଜି ବିଦ୍ୟୁତ ବାଡ଼ | | | | | | | | |
| ଚତୁର୍ଥ ବାଜି ବନ୍ଧୁକ | | | | | | | | |
| ମୋଟ | | | | | | | | |



Digitized by srujanika@gmail.com

# ସମାଧାନ କାହା ପାଖରେ ?

**ହାତୀ-ମଣିଷ ସଂଘର୍ଷ ବିଷୟରେ ଜାଣିବା**

| | |
|---|---|
| *ଉଦ୍ଦେଶ୍ୟ* | **ହାତୀ ସଂରକ୍ଷଣ ବିଷୟରେ ପିଲା କିଛି ଜାଣିବେ** |
| *ସ୍ତର* | **ମାଧ୍ୟମିକ** |
| *ବିଷୟ* | **ବିଜ୍ଞାନ** |
| *ଦଳର ଆକାର* | **ବାରଜଣିଆ ଦଳ** |
| *ସ୍ଥାନ* | **ଶ୍ରେଣୀଗୃହ ଭିତରେ** |
| *ସମୟ ଅବଧି* | **୪୫ ମିନିଟ** |
| *ସାମଗ୍ରୀ* | **ଲେଖିବା ଜିନିଷ** |

ଯେ କୌଣସି ବାସ୍ତବ ପରିସ୍ଥିତିକୁ ନେଇ ଗୋଟିଏ ନାଟିକା କରାଯାଇପାରେ । ବିଷୟଟିର ବିଭିନ୍ନ ଦିଗ ଖୋଜିବାରେ ଏବଂ ଅଂଶଗ୍ରହଣକାରୀଙ୍କ ଅନୁଭୂତିରୁ ପରିସ୍ଥିତିର ବାଖ୍ୟା କରିବାରେ ଏହା ବିଶେଷ ସାହାଯ୍ୟ କରିଥାଏ । ଏଥିପାଇଁ ଆଗରୁ କିଛି ସ୍ୱତନ୍ତ୍ର ସଂଳାପ ପ୍ରସ୍ତୁତ କରାଯାଇନଥାଏ ବା ଫଳାଫଳ ମଧ୍ୟ ସ୍ଥିର କରାଯାଇନଥାଏ । କୌଣସି ନିର୍ଦ୍ଦିଷ୍ଟ ବିଷୟରେ ସଚେତନତା ବଢ଼ାଇବା ଏବଂ ସେ ବିଷୟକୁ ବୁଝିବା ଲକ୍ଷରେ ଏହା ପ୍ରସ୍ତୁତ କରାଯାଏ ।

ଏକାଙ୍କିକା ମାଧ୍ୟମରେ ପିଲାର ସମସ୍ୟା ସମାଧାନ କରିବାର ଦକ୍ଷତା ଏବଂ ଦ୍ୱନ୍ଦ୍ୱ ସମାଧାନ କରିବାର ଦକ୍ଷତା ବଢ଼ିଥାଏ । ବିଭିନ୍ନ ଦୃଷ୍ଟିକୋଣରୁ ସମସ୍ୟାଟିକୁ ଦେଖିବା ଏବଂ ପିଲାଙ୍କର ସମ୍ବେଦନଶୀଳତା ବଢ଼ାଇବାରେ ଏହା ସାହାଯ୍ୟ କରେ । ସମସ୍ୟାର ବିଶ୍ଳେଷଣରେ ସକ୍ରିୟ ଅଂଶଗ୍ରହଣ କରିବା ପାଇଁ ମଧ୍ୟ ପିଲାମାନଙ୍କୁ ଏହା ସୁଯୋଗ ଯୋଗାଇଥାଏ ।

## ଆରମ୍ଭ କରିବା ଆଗରୁ

ଶ୍ରେଣୀର ପିଲାମାନଙ୍କୁ ୧୨ ଜଣିଆ ଦଳରେ ଭାଗ କର ।

ଅଲଗା ଅଲଗା କାଗଜରେ ବିଭିନ୍ନ ଭୂମିକା ଲେଖିଦିଅ ବା ଫଟୋକପି କର । ପ୍ରତି ପିଲାପାଇଁ ଗୋଟିଏ ଭୂମିକା ବାଛ ଓ ତାକୁ ତା'ର ଭୂମିକା କାର୍ଡ଼ଟି ଦିଅ ।

ପରିସ୍ଥିତି ବିଷୟରେ ପଢ଼ି ସମସ୍ତଙ୍କୁ ଶୁଣାଇଦିଅ । ପିଲାମାନଙ୍କୁ କହିଦିଅ ଯେ ଆଲୋଚନା ପାଇଁ ୩୦ ମିନିଟ ରହିଛି । ଆଲୋଚନାର ଉଦ୍ଦେଶ୍ୟ ହେଉଛି ଏସୀୟ ହାତୀ ଓ ସେମାନଙ୍କ ଆବାସସ୍ଥଳୀ ସଂରକ୍ଷଣ ପାଇଁ କିଭଳି ପଦକ୍ଷେପମାନ ନିଆଯାଇପାରିବ ତାହା ସ୍ଥିର କରିବା ।

ଦରକାର ହେଲେ ପ୍ରତି ପିଲାକୁ ତା'ର ଭୂମିକା ବିଷୟରେ ବୁଝାଇ ଦିଆଯାଇପାରେ । ସେମାନଙ୍କୁ କହିଦିଅ ଯେ ସେମାନେ ତାଙ୍କ ଭୂମିକାକୁ ଗୁରୁତ୍ୱର ସହ ଦେଖିବେ ଏବଂ ଏହି ନାଟିକା ହେଉଛି ଗୋଟିଏ ଗମ୍ଭୀର କାମ । ଦର୍ଶକ ବା ବିବରଣୀ ଲେଖକମାନଙ୍କୁ କହିଦିଅ ଯେ ସେମାନେ ତାଙ୍କର ଅନୁଭୂତି ଓ ମତାମତ ଲେଖିବେ ।

## ଏକାଙ୍କିକା ସମୟରେ

ଯେତେଦୂର ସମ୍ଭବ ଶିକ୍ଷକ ଏକାଙ୍କିକାରେ ଭାଗ ନନେଲେ ଭଲ । କିନ୍ତୁ ଯଦି ଆଲୋଚନା ବହୁତ ଲମ୍ବା ହେଲା ବା ବହୁତ ଜୋର ଯୁକ୍ତି ଚାଲିଲା ବା ପିଲାମାନେ ମୂଳ କଥାରୁ ଦୂରେଇଗଲେ ବା ସେମାନଙ୍କର କହିବାର ବିଷୟ ସରିଗଲା, ତେବେ ଚାଲାକିର ସହ ଏକାଙ୍କିକା ଭିତରେ ପଶି ପିଲାଙ୍କୁ ନିଷ୍ପତ୍ତି ନେବାରେ ସାହାଯ୍ୟ କରିପାର ।

ଆଲୋଚନା ସରିବା ପରେ ଦଳକୁ ନିଷ୍ପତ୍ତି ନେବାକୁ କୁହ । ଯଦି ନିଷ୍ପତ୍ତି ନେଇଥାନ୍ତି ତେବେ ତା'ର କାରଣ ବି କହିବାକୁ ପିଲାଙ୍କୁ କୁହ ।

## ଏକାଙ୍କିକା ପରେ

ଏକାଙ୍କିକା ପରେ ପିଲାମାନଙ୍କୁ ନିଜ ନିଜର ସ୍ୱାଭାବିକ ଅବସ୍ଥାକୁ ଫେରିଆସିବା ପାଇଁ କିଛି ସମୟ ଦିଅ । ଏବେ ଉଭୟ ଅଭିନେତା ଏବଂ ଦର୍ଶକମାନଙ୍କୁ ସେମାନଙ୍କ ଅନୁଭୂତି, ନିରୀକ୍ଷଣ ଆଦି ବିଷୟରେ ପଚାର । ପିଲାମାନେ ଅନ୍ୟ କୌଣସି ପ୍ରକାର ଧାରାରେ ନାଟିକାଟି କରିପାରିଥା'ନ୍ତେ କି ?

### ଦୃଶ୍ୟପଟ

ସନମଲାଇ ଗୋଟିଏ ବଡ଼ ହାତୀ ଅଭୟାରଣ୍ୟ । ଏହା ପ୍ରାୟ ୨୫୦୦ ବର୍ଗ କି.ମି.ର ଏହି ବ୍ୟାପକ ଅଞ୍ଚଳରେ ଶୁଖିଲା ପର୍ଣମୋଚୀ ପ୍ରକାରରୁ ଆରମ୍ଭ କରି ଚିରହରିତ ଜଙ୍ଗଲ ଯାଏଁ ରହିଛି । ଏଥିରେ ପ୍ରାୟ ୪୦୦୦ ଏସୀୟ ହାତୀ ଅଛନ୍ତି । ବର୍ଷ ବର୍ଷ ଧରି ଜନବସତି ବଢ଼ିବା ଯୋଗୁଁ ହାତୀଙ୍କ ପାଇଁ ଏହା ଗୋଟିଏ ବଡ଼ ବିପଦ ହୋଇଛି । ପାଖରେ ଥିବା ସନମୁଦି ଗାଁର ଲୋକମାନେ ହାତୀର ଆବାସସ୍ଥଳୀ ଜବରଦଖଲ କରି ସେଥିରେ ଚାଷ କରୁଛନ୍ତି ଏବଂ ଘର ତିଆରି କରିଛନ୍ତି । ହାତୀଙ୍କର ଚଲାପଥ ସବୁ ବନ୍ଦ ହୋଇଯିବା ଯୋଗୁଁ ସେମାନେ ଗୋଟିଏ ଆବାସସ୍ଥଳୀରୁ ଆଉ ଗୋଟିଏ ଆବାସସ୍ଥଳୀକୁ ଯିବା ଆସିବା କରିପାରୁନାହାନ୍ତି । ଫଳରେ ସେମାନେ ଛୋଟ ଛୋଟ ଆବାସସ୍ଥଳୀରେ ବାନ୍ଧି ହୋଇଯାଉଛନ୍ତି । ଏହିସବୁ ଆବାସସ୍ଥଳୀର ଚାରିପଟେ ଜନବସତି ରହିଛି । ସେମାନଙ୍କ ଛୋଟ ଆବାସସ୍ଥଳୀରୁ ସେମାନେ ଯଥେଷ୍ଟ ଖାଦ୍ୟ ପାଉନଥିବାରୁ



Digitized by srujanika@gmail.com

ଏବଂ ଚାଷଜମିରୁ ବେଶି ପୁଷ୍ଟିକର ଖାଦ୍ୟ ପାଉଥିବାରୁ ଏବେ ସେମାନେ ପନ୍‌ମୁଦି ଆଡ଼କୁ ଚାଲି ଆସୁଛନ୍ତି । ଆଗରୁ କିନ୍ତୁ ସେମାନେ ଗାଁ ପାଖକୁ ଆସୁନଥିଲେ । ତେଣୁ ଏବେ ଏହି ଅଞ୍ଚଳରେ ହାତୀ ଓ ମଣିଷଙ୍କ ଭିତରେ ସଂଘର୍ଷ ହେଉଛି । ଅଭୟାରଣ୍ୟରେ ହାତୀ ଏବେ ବେଶି ବେଶି ଲୋକଙ୍କୁ ମାରୁଛନ୍ତି ଏବଂ ଲୋକମାନେ ମଧ୍ୟ ଅଧିକ ସଂଖ୍ୟାରେ ହାତୀ ମାରୁଛନ୍ତି ।

ହାତୀଦାନ୍ତ ପାଇଁ ବି ସେଠାରେ ଏସୀୟ ହାତୀଙ୍କୁ ମରାଯାଉଛି । ଏଠାରେ କେବଳ ୧୫ ବର୍ଷ ବା ତା'ଠାରୁ ଅଧିକ ବୟସ୍କ ଅଣ୍ଡିରା ହାତୀଙ୍କୁ ଶିକାର କରାଯାଉନାହିଁ । ଗତ କିଛି ବର୍ଷ ହେବ, ଅଳ୍ପ ବୟସ୍କମାନଙ୍କୁ ବି ମାରି ଦିଆଯାଉଛି । ଏସବୁ ହାତୀ ସଂଖ୍ୟା ଉପରେ ଗୋଟିଏ ଖରାପ ପ୍ରଭାବ ପକାଉଛି । ଅଧିକରୁ ଅଧିକ ଅଣ୍ଡିରା ହାତୀ ମରାଯିବା ଫଳରେ ମାଈ ଅଣ୍ଡିରାଙ୍କ ଅନୁପାତ ବିଗିଡ଼ି ଯାଉଛି ଯାହାକି ଭବିଷ୍ୟତରେ ଜନ୍ମ ଅନୁପାତ ଉପରେ ପ୍ରଭାବ ପକାଇପାରେ ।

ଅଭୟାରଣ୍ୟର ଆଉ ଗୋଟିଏ ଅସୁବିଧା ହେଉଛି ଏହା ଭିତର ଦେଇ ଗୋଟିଏ ରେଳରାସ୍ତା ଯାଇଛି । ନିକଟ ଅତୀତରେ ରେଳ ଦୁର୍ଘଟଣାରେ ମରୁଥିବା ହାତୀ ସଂଖ୍ୟା ବଢ଼ିବାରେ ଲାଗିଛି ।

ଏହି ଅଞ୍ଚଳର ହାତୀ ଆବାସସ୍ଥଳୀର ପୁନରୁଦ୍ଧାର ଓ ତା'ର ସଂରକ୍ଷଣ ପାଇଁ ଜଙ୍ଗଲ ବିଭାଗ ଅଧିକାରୀ ଏବଂ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନ ପରିବେଶ ଓ ଜଙ୍ଗଲ ମନ୍ତ୍ରଣାଳୟକୁ ଅନୁରୋଧ କରୁଛନ୍ତି । ତା' ସହିତ ସ୍ଥାନୀୟ ଲୋକଙ୍କର ଫସଲହାନୀ ଭଳି ଅସୁବିଧା ସବୁର ପ୍ରତିକାର ମଧ୍ୟ ଜରୁରୀ ହୋଇପଡ଼ିଲାଣି ।

ଏହି ପରିପ୍ରେକ୍ଷୀରେ ମନ୍ତ୍ରଣାଳୟ ଏବଂ ରାଜ୍ୟ ଜଙ୍ଗଲ ବିଭାଗ ମିଶିକରି ଗୋଟିଏ ପ୍ରକ୍ରିୟା ଆରମ୍ଭ କରିଛନ୍ତି । ଏଥିରେ ଉଭୟ ପକ୍ଷର ଅସୁବିଧାର ସମାଧାନ ଖୋଜାଯିବ । ହାତୀ ଆବାସସ୍ଥଳୀର ସଂରକ୍ଷଣ, ହାତୀ ଚଲାପଥର ପୁନରୁଦ୍ଧାର ଏବଂ ମଣିଷ-ପଶୁଙ୍କ ସଂଘର୍ଷର ମୂଳ କାରଣ ଖୋଜିବା ପାଇଁ ଗୋଟିଏ ଆଲୋଚନା ସଭା ଡକା ଯାଇଛି । ଆଲୋଚନା ସଭାକୁ ଆସିଥିବା ଲୋକମାନେ ହେଲେ,

- ପରିବେଶ ଓ ଜଙ୍ଗଲ ମନ୍ତ୍ରଣାଳୟରୁ ଆସିଥିବା କମିଟିର ଅଧ୍ୟକ୍ଷ
- ଜଙ୍ଗଲ ବିଭାଗ ଅଧିକାରୀ
- ପନ୍‌ମୁଦି ଗାଁର ସରପଞ୍ଚ
- ଜୀବବିଜ୍ଞାନ ବିଭାଗର ସ୍ନାତକୋତ୍ତର ଛାତ୍ରଛାତ୍ରୀ
- ପନ୍‌ମୁଦି ଗାଁର ଅଧିବାସୀ - ଗୀତା
- ବନ୍ୟପ୍ରାଣୀ ପରିଚାଳନା ପ୍ରତିଷ୍ଠାନର ନିର୍ଦ୍ଦେଶକ
- ପରିବେଶ ଉପରେ କାମ କରୁଥିବା ବେସରକାରୀ ସଂସ୍ଥା
- ପ୍ରାଣୀ ଅଧିକାର ସଂସ୍ଥାର ପ୍ରତିନିଧି
- ପନ୍‌ମୁଦିର ଅଧିବାସୀ - ସୃଷ୍ଟି
- ପନ୍‌ମୁଦିର ଅଧିବାସୀ - ଅନିରୁଦ୍ଧ
- ପନମଲାଇ ହାତୀ ଅଭୟାରଣ୍ୟର ଅଧ୍ୟକ୍ଷ
- ରେଳବାଇ ବିଭାଗର ମୁଖପାତ୍ର
- ଖବରକାଗଜ ପ୍ରତିନିଧି

## ବିଭିନ୍ନ ଭୂମିକା

**କମିଟି ଅଧ୍ୟକ୍ଷ:** ତମେ ପନମଲାଇ ହାତୀ ଅଭୟାରଣ୍ୟରେ ଦେଖାଦେଇଥିବା ସଙ୍କଟ ଦୂର କରିବା ପାଇଁ ଗଠିତ କମିଟିର ଚେୟାରମ୍ୟାନ । ମୁଖ୍ୟ ସଙ୍କଟ ହେଉଛି ଚାଷଜମି ଏବଂ ଜନବସତି ପାଇଁ ହାତୀ ଆବାସସ୍ଥଳୀ ଜବରଦଖଲ କରିବା ଏବଂ ତାହା ଖଣ୍ଡ ଖଣ୍ଡ ହୋଇଯିବା । ତମେ ଅନୁଭବ କରୁଛ ଯେ ଏପରି ଏକ ଯୋଜନା ପ୍ରସ୍ତୁତ କରାଯାଉ ଯାହାକି ହାତୀଙ୍କ ପାଇଁ ଯଥେଷ୍ଟ ଜାଗା ଛାଡ଼ିଦେବ । ଫଳରେ ଦେଶରେ ହାତୀଙ୍କ ସଂଖ୍ୟା ବଢ଼ିପାରିବ । ପୁଣି ହାତୀ କିପରି ପାଖ ଗାଁକୁ ଆକ୍ରମଣ ନକରେ ସେ ଦିଗ ମଧ୍ୟ ଦେଖିବ । ତମେ ଭାବ ଯେ ଏହି ବିଷୟରେ ଜଙ୍ଗଲ ଅଧିକାରୀ ଏବଂ ଗାଁ ବାଲାଙ୍କ ଭିତରେ କିଛି ବୁଝାମଣା ଆସିବା ଉଚିତ ।

**ଜଙ୍ଗଲ ଅଧିକାରୀ:** ତମେ ପନମଲାଇ ଅଭୟାରଣ୍ୟର ଜଙ୍ଗଲ ବିଭାଗ ଅଧିକାରୀ । ତମେ ଲକ୍ଷ କରିଛ ଯେ ଗଲା କେତେ ବର୍ଷ ଧରି ହାତୀର ଆବାସସ୍ଥଳୀର ମାନ କମି କମି ଯାଉଛି । ଆହୁରି ମଧ୍ୟ ଜଙ୍ଗଲ ବିଭାଗ ତରଫରୁ ବାରମ୍ବାର ତାଗିଦା ସତ୍ତ୍ୱେ ଲୋକମାନେ ଅଭୟାରଣ୍ୟ ଭିତରକୁ ମାଡ଼ି ଆସୁଛନ୍ତି ଏବଂ ଜଙ୍ଗଲ ଜମିକୁ ଚାଷଜମି ଏବଂ ଗୋଚର କରୁଛନ୍ତି । ଗୋରୁ ଚରିବା ଫଳରେ ହାତୀଙ୍କ ଖାଦ୍ୟ ତ କମେ, ସେମାନେ ବି ହାତୀଙ୍କ ଦେହରେ ଅନେକ ରୋଗ କରାଇଥାନ୍ତି । ଏହା ଫଳରେ ଅନେକ ବିଶୃଙ୍ଖଳା ବି ହୁଏ । ତମ ମତରେ ଅଭୟାରଣ୍ୟ ଭିତରୁ ଜନବସତି ହଟିଯିବା ଦରକାର ଏବଂ ହାତୀ ଆବାସସ୍ଥଳୀର ପୁନରୁଦ୍ଧାର ପାଇଁ ଏହା ନିହାତି ଆବଶ୍ୟକ । ଅଭୟାରଣ୍ୟରେ ବଢ଼ୁଥିବା ଶିକାର ପାଇଁ ମଧ୍ୟ ତମେ ଚିନ୍ତିତ ।

**ସରପଞ୍ଚ:** ତମେ ହାତୀ ଅଭୟାରଣ୍ୟ ପାଖରେ ଥିବା ପନ୍‌ମୁଦି ଗାଁର ସରପଞ୍ଚ । ତମ ଗାଁର ଲୋକମାନେ ଜଙ୍ଗଲ ଜମି ମାଡ଼ିବସି ତାକୁ ଚାଷଜମି କରିଛନ୍ତି । ତମ ମତରେ ଏହାକୁ ଅଟକା ଯାଇପାରିବନି । କାରଣ ଲୋକଙ୍କ ପାଇଁ ଖାଦ୍ୟ ଓ ଘର ନିହାତି ଦରକାର । ତମେ ଜଙ୍ଗଲ ଜମିରୁ ଲୋକଙ୍କୁ ହଟାଇବା ବିରୁଦ୍ଧରେ । ଯଦି ବି ଲୋକଙ୍କୁ ଏଠାରୁ ଉଠାଯାଏ, ତେବେ ବାହାରେ ତାଙ୍କୁ ଜମି ଦିଆଯାଉ ।

**ଛାତ୍ର:** ତମେ ଜୀବବିଜ୍ଞାନ ବିଭାଗର ଜଣେ ସ୍ନାତକୋତ୍ତର ଛାତ୍ର । ତମେ ପନମଲାଇ ହାତୀ ଅଭୟାରଣ୍ୟକୁ ନିୟମିତ ଆସ । ଏହି ଅଞ୍ଚଳରେ ଏସୀୟ ହାତୀଙ୍କ ସଂଖ୍ୟା କମିବା ଉପରେ ତମେ ଗୋଟିଏ ଗବେଷଣା ପ୍ରକଳ୍ପ କରୁଛ । ତମ ମତରେ ହାତୀର ଆବାସସ୍ଥଳୀ ଖଣ୍ଡ ଖଣ୍ଡ ହୋଇଯିବା ଯୋଗୁଁ ସେ ଆଉ ମନଇଚ୍ଛା ଚାଲବୁଲ କରିପାରୁନଥିବାରୁ ହାତୀ ସଂଖ୍ୟା କମୁଛି । ତମ ମତରେ ହାତୀର ଆବାସସ୍ଥଳୀ ପୁନରୁଦ୍ଧାର ପାଇଁ ସାଙ୍ଗେ ସାଙ୍ଗେ ପଦକ୍ଷେପ ନିଆଯିବା ଦରକାର । ଖଣ୍ଡ ଖଣ୍ଡ ହୋଇଯାଇଥିବା ଆବାସସ୍ଥଳୀକୁ ଚଲାପଥ ଦେଇ ଯୋଡ଼ିବା ଏବଂ ଆଗରୁ ଥିବା ଚଲାପଥ ସବୁର ସଂରକ୍ଷଣ କରିବା ବି ଜରୁରୀ ।

**ପନ୍‌ମୁଦି ଗାଁର ଅଧିବାସୀ - ଗୀତା:** ଜଙ୍ଗଲ ସଫା ହୋଇ ଚାଷଜମି ହୋଇଥିବା ଗୋଟିଏ ଅଞ୍ଚଳର ତମେ ମାଲିକ । ଜମିଟି ହାତୀର ଚଲାପଥରେ ପଡୁଛି । ସମ୍ପଦର ପରିଚାଳନା ଠିକ ଭାବରେ ହେଉନାହିଁ ବୋଲି ତମେ ସରକାରଙ୍କୁ ଦୋଷ ଦେଉଛ । ତମ ମତରେ ଯେତେବେଳେ ଏହି ଅଞ୍ଚଳରେ ଲୋକଙ୍କ ପାଇଁ ଯଥେଷ୍ଟ ଜମି ଏବଂ ସମ୍ପଦ ନାହିଁ ସେତେବେଳେ ଏତେ ବଡ଼ ଅଞ୍ଚଳରେ କେବଳ ବନ୍ୟପ୍ରାଣୀଙ୍କ ସୁରକ୍ଷା ପାଇଁ ଅଭୟାରଣ୍ୟ ଜାତୀୟ ଉଦ୍ୟାନ ଆଦି କରିବା ଉଚିତ ନୁହେଁ । ଜବରଦଖଲ ହୋଇଥିବା ଜମିରୁ



Digitized by srujanika@gmail.com

ଉଠିଯିବା ପାଇଁ ତମେ ପ୍ରସ୍ତୁତ ନୁହଁ । ତମେ ଭାବ ଯେ ଏହି ଜମି ଖଣ୍ଡକ ତମର ସମ୍ପତ୍ତି ଏବଂ ଏଥିରେ କେବଳ ତମର ଅଧିକାର ଅଛି ।

**ନିର୍ଦ୍ଦେଶକ:** ତମେ ବନ୍ୟପ୍ରାଣୀ ପରିଚାଳନା ପ୍ରତିଷ୍ଠାନର ନିର୍ଦ୍ଦେଶକ । ତମେ ହାତୀକୁ ଠାକୁର ଭାବରେ ଅନେକ ଦିନ ଧରି ପୂଜା କରିଆସୁଛି ଏବଂ ହାତୀ ସହ ଧାର୍ମିକ ଏବଂ ସାଂସ୍କୃତିକ ମୂଲ୍ୟବୋଧ ଯୋଡ଼ିଆସିଛି । ତମେ ଜାଣ ଯେ ହାତୀ ଗୋଟିଏ ଆଗୁଆ ଜୀବ ଏବଂ ଏହାର ସଂରକ୍ଷଣ ହେଲେ ଆବାସସ୍ଥଳୀ ଏବଂ ଜୈବ ବିବିଧତାର ବି ସଂରକ୍ଷଣ ହୋଇପାରିବ । ଯେଉଁ ଆବାସସ୍ଥଳୀ ହାତୀ ପାଇଁ ଉପଯୁକ୍ତ, ତାହା ଆହୁରି ଅନେକ ଜୀବଙ୍କ ପାଇଁ ବି ଉପଯୁକ୍ତ । ତମେ ଜାଣ ଯେ ହାତୀ ଗୋଟିଏ ବିରାଟ ଜୀବ ହୋଇଥିବାରୁ ତା'ର ବହୁତ ପରିମାଣର ଖାଦ୍ୟ ଦରକାର । ଏଥିପାଇଁ ତା'ର ଆବାସସ୍ଥଳୀ ବି ବଡ଼ ଏବଂ ଉନ୍ନମାନର ହେବା ଦରକାର । ତମ ମତରେ ହାତୀ ଏବଂ ତା'ର ଆବାସସ୍ଥଳୀର ସୁରକ୍ଷା ସବୁଠାରୁ ଅଧିକ ଜରୁରୀ ଏବଂ ହାତୀର ତିଷ୍ଠି ରହିବା ଉପରେ ମଣିଷ ଜାତିର ତିଷ୍ଠି ରହିବା ମଧ୍ୟ ନିର୍ଭର କରେ । ତମ ମତରେ ସ୍ଥାନୀୟ ବୁଝାମଣା, ସମୟ ଉପଯୋଗୀ ପଦକ୍ଷେପ, ରାଜନୈତିକ ଇଚ୍ଛାଶକ୍ତି, ଏବଂ ଆର୍ଥିକ ସହାୟତାରେ ହିଁ ହାତୀ ଏବଂ ତା'ର ଆବାସସ୍ଥଳୀର ସଂରକ୍ଷଣ କରାଯାଇପାରିବ ।

**ପରିବେଶ ଉପରେ କାମ କରୁଥିବା ବେସରକାରୀ ସଂସ୍ଥା:** ତମେ ପରିବେଶ ଉପରେ କାମ କରୁଥିବା ଏକ ବେସରକାରୀ ସଂସ୍ଥା । ତମେ ଜାଣ ଯେ ହାତୀଦାନ୍ତ ପାଇଁ ହାତୀ ଶିକାର ଯୋଗୁଁ ଦନ୍ତାହାତୀଙ୍କ ସଂଖ୍ୟା କମି କମି ଯାଉଛି । ବାଛି ବାଛି ଦନ୍ତାହାତୀ ମାରିବା ଯୋଗୁଁ ମାଈ ଅଣ୍ଡିରା ଅନୁପାତ ବିଗିଡ଼ି ଯାଉଛି । ଏହା ଫଳରେ ଏସୀୟ ହାତୀ ତିଷ୍ଠି ରହିବା କଷ୍ଟକର ହୋଇପଡ଼ିବ । ହାତୀର ଆବାସସ୍ଥଳୀ ନଷ୍ଟ ହେବା ପାଇଁ ଏବଂ ରେଳ ଦୁର୍ଘଟଣାରେ ହାତୀ ମରିବା ପାଇଁ ତମେ ଜଙ୍ଗଲ ବିଭାଗ ଅଧିକାରୀଙ୍କୁ ଦାୟୀ କରୁଛ । ତମ ମତରେ ଜଙ୍ଗଲ ବିଭାଗ ଅଧିକାରୀଙ୍କ ହେଳା, ସଂରକ୍ଷଣ ଦିଗରେ ବେପରୱା ମନୋଭାବ, ଗାଁ ଲୋକଙ୍କ ପାଇଁ ଉଚିତ କ୍ଷତିପୂରଣ ବ୍ୟବସ୍ଥା ନହେବା ଫଳରେ ଦିନେ ଏହି ଅଞ୍ଚଳରୁ ହାତୀ ଉଭେଇଯିବେ । ତମ ମତରେ ଯଦି ସାଙ୍ଗେ ସାଙ୍ଗେ କିଛି ପ୍ରତିକାର ବ୍ୟବସ୍ଥା ନକରାଯାଏ, ତେବେ ଉଭୟ ହାତୀ ଏବଂ ମଣିଷ ଜାତି ପାଇଁ ଏହା ଧ୍ୱଂସର କାରଣ ହେବ ।

**ପ୍ରାଣୀ ଅଧିକାର କର୍ମୀ:** ତମେ ଜଣେ ପ୍ରାଣୀ ଅଧିକାର କର୍ମୀ । ହାତୀ-ମଣିଷ ସଂଘର୍ଷ ଏବଂ ସେଥିଯୋଗୁଁ ହାତୀ ମରୁଥିବାରୁ ତମେ ବହୁତ ବ୍ୟସ୍ତ । ତମ ମତରେ ଏହି ସଂଘର୍ଷ ପାଇଁ ମଣିଷ ହିଁ ଦାୟୀ । ଚାଷଜମି ଏବଂ ଜନବସତି ବଢ଼ିବା ଫଳରେ ହାତୀର ଆବାସସ୍ଥଳୀ କମିବା ଯୋଗୁଁ ସେ ତା'ର ଖାଦ୍ୟ ପାଇଁ ଫସଲ ନଷ୍ଟ କରୁଛି । ଆବାସସ୍ଥଳୀ ଭିତରେ ବା ଆଖପାଖରେ ଫସଲ ଚାଷ ହେଲେ ହାତୀ ତାକୁ ଚୋରି କରୁଛି ବୋଲି ତମ ମତ । ତେଣୁ ଏଠାରୁ ଗାଁ ଲୋକଙ୍କୁ ଉଠାଇନେବା ଏବଂ ସେମାନଙ୍କ ମନରେ ହାତୀ ପ୍ରତି ଦରଦ ସୃଷ୍ଟି କରିବା ନିହାତି ଦରକାର ।

**ପନ୍‌ମୁଡି ଗାଁର ଅଧିବାସୀ - ଅନିରୁଦ୍ଧ:** ତମେ ପନ୍‌ମୁଡି ଗାଁରେ ୬୦ ବର୍ଷରୁ ଅଧିକ ସମୟ ଧରି ରହୁଛ । ତମ ମତରେ ଗଲା କେତେ ବର୍ଷ ଭିତରେ ହାତୀ ମଣିଷ ପାଇଁ ଅନେକ ବିପଦର କାରଣ ହୋଇଉଠିଛି । ହାତୀ ବିରୁଦ୍ଧରେ କିଛି ପଦକ୍ଷେପ ନେବାକୁ ତମର ଇଚ୍ଛା ନାହିଁ । ତମେ ଦେଖୁଛ ଯେ ଆଜିକାଲି ହାତୀ ଫସଲ ଖାଇଯାଉଛି, ନଷ୍ଟ କରୁଛି, ବେଳେ ବେଳେ ଘର ଭିତରକୁ ବି ଚାଲିଆସୁଛି । ଆଗେ ହାତୀ ଏସବୁ ପ୍ରାୟ କରୁନଥିଲା । ତମ ମତରେ ସରକାର ବିଦ୍ୟୁତ ପ୍ରବାହିତ ତାରବାଡ଼ ଆଦି ଦେଇ ଚାଷଜମି ଏବଂ ଘରର ସୁରକ୍ଷା ବ୍ୟବସ୍ଥା କରିବା ଏବଂ ସମ୍ପତ୍ତି ନଷ୍ଟ ପାଇଁ କ୍ଷତିପୂରଣ ଦେବା ଉଚିତ । ଏହା ଫଳରେ ହାତୀ ଓ ମଣିଷ ମିଳିମିଶି ଚଳିପାରିବେ ବୋଲି ତମର ମତ । ଆହୁରି ମଧ୍ୟ ଜଙ୍ଗଲ ବିଭାଗ ଅଧିକାରୀଙ୍କ ଦ୍ୱାରା ଶିକାରକୁ ନିୟନ୍ତ୍ରଣ କରାଯାଉନାହିଁ । ଅନେକ ସମୟରେ ପୋଲିସ ଏବଂ ଜଙ୍ଗଲ ଅଧିକାରୀ ନିରୀହ ଗାଁ ବାଲାଙ୍କୁ ଏଥିପାଇଁ ଦୋଷ ଦେଇ ବାନ୍ଧି ନେଉଛନ୍ତି । ତମେ ଭାବୁଛ ଯେ ଜଙ୍ଗଲ ବିଭାଗ ଅଧିକାରୀମାନେ ବୋଧହୁଏ ଏହି ବେଆଇନ କାମର ଏକ ଅଂଶ । ତେଣୁ ଏମାନଙ୍କ ବିରୁଦ୍ଧରେ ବି କିଛି ପଦକ୍ଷେପ ନିଆଯାଉ ବୋଲି ତମର ମତ ।

**ପନ୍‌ମୁଡି ଗାଁର ଅଧିବାସୀ - ସୃଷ୍ଟି:** ତମେ ପନ୍‌ମୁଡି ଗାଁର ଜଣେ ଅଧିବାସୀ । ତମେ ହାତୀ ଅଭୟାରଣ୍ୟର ପାଖ ଜମିରେ ରୁହ । ଗୋଟିଏ ହାତୀ ତୁମ ଜମିରେ ପଶି ଫସଲ ଖାଉଥିବା ବେଳେ ତୁମ ଭାଇ ତାକୁ ତଡ଼ିବାକୁ ଚେଷ୍ଟା କରୁଥିଲା । ଏହି ସମୟରେ ହାତୀ ତାକୁ ମାରିଦେଇଛି । ଏଥିପାଇଁ ଜଙ୍ଗଲ ବିଭାଗ ତରଫରୁ ତମ ପରିବାରକୁ କିଛି କ୍ଷତିପୂରଣ ଦିଆଯାଇନାହିଁ । ତମେ ଆଉ ହାତୀକୁ ଠାକୁର ବୋଲି ଭାବୁନାହଁ, ବରଂ ତାକୁ ମୃତ୍ୟୁ ଏବଂ ବିନାଶର ଜୀବ ବୋଲି ଭାବୁଛ । ତମ ମତରେ ଏଭଳି ହାତୀଙ୍କୁ ଗୁଳିକରି ମରାଯାଇ ଗାଁ ବାଲାଙ୍କୁ ସୁରକ୍ଷା ଦେବା ଉଚିତ ।

**ପନମଲାଇ ହାତୀ ଅଭୟାରଣ୍ୟର ନିର୍ଦ୍ଦେଶକ:** ତମେ ପନମଲାଇ ହାତୀ ଅଭୟାରଣ୍ୟର ନିର୍ଦ୍ଦେଶକ । ଏବେ ରେଳ ଦୁର୍ଘଟଣାରେ ବେଶି ବେଶି ହାତୀ ମରୁଥିବାରୁ ତମେ ବ୍ୟସ୍ତ । ତମ ମତରେ ବିଭିନ୍ନ ଅଭୟାରଣ୍ୟ ଏବଂ ଜାତୀୟ ଉଦ୍ୟାନ ଭିତରେ ରେଳଗାଡ଼ିର ଗତି ଘଣ୍ଟା ପ୍ରତି ୧୫ କି.ମି.କୁ କମାଇଦେବା ଉଚିତ । ତା'ହେଲେ ରେଳ ଦୁର୍ଘଟଣାରେ ହାତୀ ମରିବା ବହୁତ କମିଯିବ ।

**ଦକ୍ଷିଣାଞ୍ଚଳ ରେଳ ବିଭାଗର ମୁଖପାତ୍ର:** ତମେ ରେଳ ବିଭାଗର ମୁଖପାତ୍ର । ତମ ମତରେ ଅଭୟାରଣ୍ୟ ଭିତରେ ରେଳଗାଡ଼ିର ଗତି କମାଇଦେଲେ ଜନସାଧାରଣ ସମାଲୋଚନା କରିବେ ଏବଂ ଏହା ରେଳ ବିଭାଗର ଭାବମୂର୍ତ୍ତି ଉପରେ ଆଞ୍ଚ ଆଣିବ । ତମ ମତରେ ଢୋରରେ ଯାଉଥିବା ରେଳଗାଡ଼ିର ଗତି କମାଇଦେଲେ ସେଗୁଡ଼ିକର ଗୁରୁତ୍ୱ କମିଯିବ । ଏହାଯୋଗୁଁ ବିଭିନ୍ନ ରେଳଗାଡ଼ିର ସମୟକୁ ପୁଣିଥରେ ସ୍ଥିର କରିବାକୁ ପଡ଼ିବ ।

**ସମ୍ବାଦଦାତା:** ତମେ ଏହି ସଭାର ଜଣେ ସମ୍ବାଦଦାତା । ତମ କାମ ହେଉଛି ସବୁ ମୂଳକଥାକୁ ଲକ୍ଷ କରି ଟିପିବା । ଫଳରେ ତମେ ଦଳକୁ ଆଲୋଚନା ବେଳେ କୌଣସି ନିଷ୍ପତ୍ତିରେ ପହଞ୍ଚିବା ପାଇଁ ସାହାଯ୍ୟ କରିପାରିବ । ତମେ କୌଣସି ମତ ଦେଇ ଅନ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କରିବ ନାହିଁ ।






Digitized by srujanika@gmail.com

# ହାତୀଙ୍କ ପାଇଁ ସୁରକ୍ଷା

**ଯୁଗ ଯୁଗ ଧରି ଭାରତରେ ହାତୀକୁ ଉଚ୍ଚ ସମ୍ମାନ ଦିଆଯାଉଛି । ଦୁଃଖର କଥା ଯେ ଆଜି ଏହି ମହାନ ଜୀବଟି ବିପନ୍ନ । ଆବାସସ୍ଥଳୀର କ୍ଷୟ, ଶିକାର, ମଣିଷ-ହାତୀ ସଂଘର୍ଷ ଫଳରେ ହିଁ ଏହା ହୋଇଛି । ହାତୀ ବିଭିନ୍ନ ପ୍ରକାରର ଉଦ୍ଭିଦ ଭିତରେ ରହିପାରେ । କୌଣସି ଜାଗାର ହାତୀ ସଂଖ୍ୟା ସେ ଜାଗାରେ ପରିବେଶର ଅବସ୍ଥା ବିଷୟରେ ସୂଚେଇଥାଏ । ଆଜି ଏସୀୟ ହାତୀର ଏହି ବିପଦକୁ ଭାରତରେ ପରିବେଶ ସୁରକ୍ଷା ବ୍ୟବସ୍ଥାର ଏକ ପ୍ରତିଫଳନ ଭାବରେ ଦେଖାଯାଇପାରେ ।**





ଭାରତରେ ସବୁଠାରୁ ଅଧିକ ସଂଖ୍ୟକ ଏସୀୟ ହାତୀ ଅଛନ୍ତି । ଏବେ ଏସୀୟ ହାତୀ ବିପନ୍ନ ଏବଂ ଏହାକୁ ଭାରତୀୟ ବନ୍ୟପ୍ରାଣୀ ସଂରକ୍ଷଣ ନୀତିର ଖସଡ଼ା-୧ରେ ରଖାଯାଇଛି । ସିଆଇଟିଇଏସ୍‌ର ପରିଶିଷ୍ଟ୧ରେ ମଧ୍ୟ ଏସୀୟ ହାତୀକୁ ତାଲିକାଭୁକ୍ତ କରାଯାଇଛି (ପୃଷ୍ଠା ୮୨ ଦେଖନ୍ତୁ) ।

ଆମ ଦେଶରେ ଏହି ବିରାଟକାୟ ଜୀବର ସୁରକ୍ଷା ପାଇଁ ସଂରକ୍ଷଣ ବ୍ୟବସ୍ଥା କରିବା ସବୁଠାରୁ ଅଧିକ ଜରୁରୀ । ଜଙ୍ଗଲୀ ଜୀବ ଭାବରେ ଅଧିକ ଦିନ ଧରି ତାକୁ ବଞ୍ଚାଇରଖିବା ପାଇଁ ଉତ୍ତମ ପରିଚାଳନା ବ୍ୟବସ୍ଥା ଦରକାର । ହାତୀ ସଂରକ୍ଷଣ ଦିଗରେ କେତେକ ପଦକ୍ଷେପ ବିଷୟରେ ତଳେ ଆଲୋଚନା କରାଯାଇଛି ।

## ହାତୀକୁ ଜୀବନକ୍ଷମ କରିବା

ଗୋଟିଏ ନିର୍ଦ୍ଦିଷ୍ଟ ସଂଖ୍ୟାରୁ କମିଗଲେ ପ୍ରତି ଜୀବ ଲୋପ ପାଇଯିବାର ସମ୍ଭାବନା ଦେଖାଦିଏ । ଏହା ଅତି ଜଣାଶୁଣା କଥା ଯେ ସଂଖ୍ୟା ଯେତେ କମିବ, ଲୋପ ପାଇବାର ସମ୍ଭାବନା ସେତେ ଅଧିକ ହେବ । ବୈଜ୍ଞାନିକମାନେ ସ୍ଥିର କରିଛନ୍ତି ଯେ ୧୦୦-୩୦୦ ହାତୀ ଗୋଟିଏ ଅଞ୍ଚଳରେ ରହିଲେ ଏମାନେ ପ୍ରାୟ ୧୦୦ ବର୍ଷର ସ୍ୱଳ୍ପ ମିଆଦ ଯାଏଁ ତିଷ୍ଠିପାରିବେ । ଏହା ପୁଣି ଲିଙ୍ଗ ଅନୁପାତ, ଜନସାଂଖ୍ୟିକୀ ଏବଂ ପରିସ୍ଥିତିକୀର ଚାପ ଉପରେ ନିର୍ଭର କରିବ । ବିଶ୍ୱାସ କରାଯାଏ ଯେ ଏବେ ୧୦୦୦ଟି ହାତୀ ଥିବା ୧୦ଟିରୁ ବି କମ୍ ଦଳ ରହିଛି । ଅଧିକାଂଶ ହାତୀ ଏବେ ୧୦୦ରୁ ବି କମ୍ ସଂଖ୍ୟାର ଛୋଟ ଦଳରେ ଅଛନ୍ତି ।

ଆଜିକାଲି ଏସୀୟ ହାତୀର ସବୁଠାରୁ ବଡ଼ ବିପଦ ହେଉଛି ତା'ର ଆବାସସ୍ଥଳୀର କ୍ଷୟ ଏବଂ ବିଖଣ୍ଡନ । ଫଳରେ ଅଧିକାଂଶ ହାତୀ ଛୋଟ ଅଞ୍ଚଳ ଭିତରେ ଆବଦ୍ଧ ହୋଇ ରହୁଛନ୍ତି । ଏହି ଛୋଟ ଛୋଟ ଦଳ ଭିତରେ କିଛି ସମ୍ପର୍କ ରହିନପାରିବାରୁ ତାଙ୍କର ଆନୁବଂଶିକ ଅବକ୍ଷୟ ଆସୁଛି ଏବଂ ଏହି କାରଣରୁ ସେମାନେ ଲୋପ ପାଇଯାଇପାରନ୍ତି ।

ହାତୀର ତିଷ୍ଠିବା ବିପକ୍ଷରେ ତାଙ୍କର ଅନ୍ତଃପ୍ରଜନନ ମଧ୍ୟ ଏକ ବଡ଼ ସମସ୍ୟା । ବହୁତ ପରିମାଣର ଅନ୍ତଃପ୍ରଜନନ ହେଲେ ପ୍ରଜନନ କ୍ଷମତା କମିବା, ଅଳ୍ପବୟସ୍କ ହାତୀ ବହୁତ ସଂଖ୍ୟାରେ ମରିଯିବା ଓ ବୃଦ୍ଧିରେ ବାଧା ଆସିବା ଆଦି ଅସୁସ୍ଥତା ଆସିବ ।

ହାତୀର ସଂଖ୍ୟା ବଢ଼ିବାର ବେଗ ଏବଂ ଲିଙ୍ଗ ଅନୁପାତ ମଧ୍ୟ ହାତୀର ତିଷ୍ଠି ରହିବାରେ ପ୍ରଭାବ ପକାଏ । କୌଣସି ଜୀବଙ୍କ ସଂଖ୍ୟା ଯଦି ସ୍ଥିର ରହିଯାଏ, ଅର୍ଥାତ ପ୍ରାୟ ବଢ଼େନାହିଁ, ତେବେ ସେ ଜୀବ ବଢୁଥିବା ଅନ୍ୟ ଜୀବଙ୍କ ତୁଳନାରେ ଲୋପ ପାଇଯିବାର ସମ୍ଭାବନା ଅଧିକ । ହାତୀ ତିଷ୍ଠି ରହିବାରେ ଲିଙ୍ଗ ଅନୁପାତର ମଧ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଯେଉଁ ଦଳରେ ଏହି ଅନୁପାତ ବହୁତ ବଦଳିଯାଇଛି ସେମାନଙ୍କର ତିଷ୍ଠି ରହିବା ସମ୍ଭାବନା କମ୍ ।



Digitized by srujanika@gmail.com

କୌଣସି ଜୀବର ସଂରକ୍ଷଣ ଏବଂ ଦୀର୍ଘମିଆଦୀ ବିକାଶ ପାଇଁ ଅନେକ ଅଞ୍ଚଳରେ ବେଶ୍ ସଂଖ୍ୟାରେ ତାଙ୍କୁ ରକ୍ଷିବା ବ୍ୟବସ୍ଥା କରିବା ଅତି ଜରୁରୀ ।

## ସର୍ବନିମ୍ନ ସୁରକ୍ଷିତ ଆବାସସ୍ଥଳୀ

ଆବାସସ୍ଥଳୀ କମିବା ଏବଂ ଖଣ୍ଡ ଖଣ୍ଡ ହେବା ଦ୍ୱାରା ହାତୀର ବିପଦ ବଢ଼ି ବଢ଼ି ଯାଉଛି । କାରଣ ହାତୀର ବିରାଟ ବାସସ୍ଥଳୀ ଦରକାର ଏବଂ ସେ ବିଭିନ୍ନ ଋତୁରେ ଗୋଟିଏ ଆବାସସ୍ଥଳୀରୁ ଆଉ ଗୋଟିଏ ଆବାସସ୍ଥଳୀକୁ ଘୂରିବୁଲେ । ତେଣୁ ହାତୀର ସଂରକ୍ଷଣ ପାଇଁ ପ୍ରଥମ କାମ ହେଉଛି ତା'ର ଆବାସସ୍ଥଳୀ ଏବଂ ସଂଯୋଗ ପଥର ପୁନରୁଦ୍ଧାର । ତା'ହେଲେ ସେ ଆରାମରେ ଚାଲବୁଲ କରିପାରିବ । ଏହା ଜଣାଶୁଣା ଯେ ଆବାସସ୍ଥଳୀ ଯେତେ ଛୋଟ ହେବ ତା'ର ଲୋପ ପାଇବାର ସମ୍ଭାବନା ସେତେ ଅଧିକ ହେବ । ଆବାସସ୍ଥଳୀ ଅତି କମ୍‌ରେ କେତେ ବଡ଼ ହେବା ଦରକାର ତାହା ଦଳର ଆକାର ଏବଂ ଆବାସସ୍ଥଳୀର ମାନ ଉପରେ ନିର୍ଭର କରେ ।

ହାତୀ ଗୋଟିଏ ଆବାସସ୍ଥଳୀରୁ ଆଉ ଗୋଟିଏ ଆବାସସ୍ଥଳୀକୁ ଗଲାବେଳେ ସବୁ ଜାଗାରେ ସମାନ ସୁରକ୍ଷା ପାଇନପାରେ । ତେଣୁ ପୂରା ଅଞ୍ଚଳଟି ତା' ପାଇଁ ସୁରକ୍ଷିତ ହୋଇନପାରେ ।

ହାତୀ ଦଳଙ୍କ ପରିଚାଳନା ପାଇଁ ଏସୀୟ ହାତୀ ଗବେଷଣା ଏବଂ ସଂରକ୍ଷଣ କେନ୍ଦ୍ରର ଡଃ ଆର୍. ସୁକୁମାରଙ୍କର ସୁପାରିଶ ଭିତରେ ରହିଛି -

- ହାତୀ ଯେପରି ତା' ମନଇଚ୍ଛା ଚଲାପଥରେ ଯିବା ଆସିବା କରିପାରିବ । ଯେଉଁ କେତେକ ଜାଗାରେ ଚଲାପଥ ନଷ୍ଟ ହୋଇଯାଉଛି ସେଠାରେ ଗଛ ଲଗାଇ ତାକୁ ପୁନରୁଦ୍ଧାର କରିବା ଦରକାର । ଗୋଟିଏ ସରୁ ଲମ୍ବା ଚଲାପଥ ରଖିବା ଉଚିତ ନୁହେଁ । କାରଣ ଏହାଦ୍ୱାରା ହାତୀର ଫସଲ ଖାଇଯିବା ଏବଂ ମଣିଷର ସମ୍ପଦ ନଷ୍ଟ କରିବା ବଢ଼ିପାରେ ।
- ଯଦି ନଦୀବନ୍ଧ ତିଆରି ଜରୁରୀ ଥାଏ ତେବେ ତାହା ଆବାସସ୍ଥଳୀର ବାହାରେ ହେବା ଉଚିତ । ଏହା କଲେ ତା'ର ଆବାସସ୍ଥଳୀ ବେଶି ଖଣ୍ଡ ଖଣ୍ଡ ହେବ ନାହିଁ । କିନ୍ତୁ ଭିତରେ ନଦୀବନ୍ଧ ବସାଇଲେ ଆବାସସ୍ଥଳୀଟି ଖଣ୍ଡ ଖଣ୍ଡ ହୋଇଯିବ । ବନ୍ଧର ଉଚ୍ଚତା ଅନୁସାରେ କମ୍ ବା ବେଶି ଅଞ୍ଚଳ ପାଣିରେ ବୁଡ଼ିବ । ତେଣୁ ଯଦି ବନ୍ଧ ଅଳ୍ପ ଉଚ୍ଚର ହେବ ତେବେ ତା'ର ଗଡ଼ାଣିଆ ପାଣିଧାରକୁ ହାତୀ ବ୍ୟବହାର କରିପାରିବ ।
- ବଡ଼ ଓ ବିସ୍ତୃତ ଜଳଭଣ୍ଡାର ତିଆରି ନହେବା ଭଲ । କାରଣ ଏହା ହାତୀର ପାରମ୍ପରିକ ଚଲାପଥ ସବୁକୁ ଗୋଳମାଳିଆ କରିଦେବ । ଜଳଭଣ୍ଡାର ପାଖରେ ହାତୀ ଚାଲବୁଲ କରିବା ପାଇଁ ପୋଲ ରହିବା ଦରକାର । ବିଶ୍ୱାସ କରାଯାଏ ଯେ ଯଦି ଏହି ପୋଲଗୁଡ଼ିକର ଉପରେ ମାଟି ପକାଇଦିଆଯିବ ତେବେ ହାତୀମାନେ ତାକୁ ବେଶି ପସନ୍ଦ କରିବେ ।

ଉତ୍ସ: ସୁକୁମାର ଆର୍., *ଦି ଏସିଆନ୍ ଏଲିଫାଣ୍ଟ: ଇକୋଲୋଜି ଆଣ୍ଡ ମ୍ୟାନେଜମେଣ୍ଟ*, କେମ୍ବ୍ରିଜ ୟୁନିଭରସିଟି ପ୍ରେସ୍, ଅଷ୍ଟ୍ରେଲିଆ, ୧୯୮୯ ।

ହାତୀର ଆବାସସ୍ଥଳୀର ଆକାରର ସୁରକ୍ଷା କରିବା ସହିତ ତା'ର ଗୁଣମାନ ପ୍ରତି ମଧ୍ୟ ଦୃଷ୍ଟି ଦେବା ଜରୁରୀ । ଆବାସସ୍ଥଳୀ ହାତୀକୁ ଯଥେଷ୍ଟ ଖାଦ୍ୟ ଓ ପାଣି ଯୋଗାଇବା ଦରକାର । ହାତୀ ପାଇଁ ଉପଯୁକ୍ତ ପରିବେଶ ହେଉଛି ଯେଉଁଥିରେ ଶୁଖିଲା ପର୍ଣ୍ଣମୋଚୀ ଜଙ୍ଗଲରୁ ଆରମ୍ଭ କରି ବୁଦୁବୁଦିଆ ଜଙ୍ଗଲ, ସନ୍ତସନ୍ତିଆ ତୃଣଭୂମି, ନଇକୂଳିଆ ଜଙ୍ଗଲ ଏବଂ କିଛି ଚିରହରିତ ଜଙ୍ଗଲ ଅଞ୍ଚଳ ରହିଥିବ ।

ଏତେ ପ୍ରକାରର ଜଙ୍ଗଲ ରହିଲେ ଋତୁ ଅନୁସାରେ ହାତୀ ତା'ର ଖାଦ୍ୟ ବାଛିପାରିବ । ବର୍ଷାଋତୁରେ ହାତୀ ପର୍ଣ୍ଣମୋଚୀ ଜଙ୍ଗଲର ଉଚ୍ଚା ଘାସ ଖାଏ । ଶୁଖିଲା ଋତୁରେ ଘାସ ଶୁଖିଯାଏ ଓ ଖାଇବାକୁ ଭଲ ଲାଗେ ନାହିଁ । ସେ ସମୟରେ ହାତୀ ବୁଦୁବୁଦିଆ ଜଙ୍ଗଲ ବା ସନ୍ତସନ୍ତିଆ ତୃଣଭୂମିରୁ ପୁଷ୍ଟିକର ଖାଦ୍ୟ ଖାଇଥାଏ । ନଦୀର ଉପତ୍ୟକା ହାତୀମାନଙ୍କର ପାଣି ଚାହିଦା ଭରଣା କରିଥାଏ ।

ଆବାସସ୍ଥଳୀ ସଂରକ୍ଷଣ ପାଇଁ ଏସବୁ ପଦକ୍ଷେପ ସହିତ ତା' ଭିତରେ ହେଉଥିବା ଶିକାର ନିୟନ୍ତ୍ରଣ କରିବା ଦରକାର । (ହାତୀ ସଂରକ୍ଷଣ ବିଷୟରେ ଅଧିକ କଥା ପୃଷ୍ଠା ୮୩ରେ ରହିଛି)

## ଆନ୍ତର୍ଜାତିକ ବାଣିଜ୍ୟ

ଆଦିମ କାଳରୁ ମଣିଷ ବନ୍ୟପ୍ରାଣୀଙ୍କ ଠାରୁ ମିଳୁଥିବା ଜିନିଷ ବ୍ୟବହାର କରିଆସୁଛି । କିନ୍ତୁ ବିଂଶ ଶତାବ୍ଦୀର ମଝିରୁ ଏହା ଏତେ ବଢ଼ିଯାଇଛି ଯେ କେତେକ ଜୀବଙ୍କ ସ୍ଥିତି ଏବେ ବିପନ୍ନ । ହିସାବ କରାଯାଇଛି ଯେ ଏବେ ୧୦୦୦ରୁ ୨୦୦୦ କୋଟି ଟଙ୍କା ମୂଲ୍ୟର ବନ୍ୟପ୍ରାଣୀ ସାମଗ୍ରୀର ବ୍ୟବସାୟ ହେଉଛି । ଏଥିରୁ ଶତକଡ଼ା ପ୍ରାୟ ୨୫ ଭାଗ ବେଆଇନ । ପ୍ରତିବର୍ଷ ପ୍ରାୟ ୪୦,୦୦୦ ପ୍ରମୁଖ ନରବାନର, ୨୦ରୁ ୫୦ ଲକ୍ଷ ଜୀବନ୍ତ ଚଢ଼େଇ, ୩୦ ଲକ୍ଷ ପର୍ଯ୍ୟନ୍ତ କଇଁଚ, ୨୦ରୁ ୩୦ ଲକ୍ଷ ଅନ୍ୟ ସରୀସୃପ, ୧୦୦ରୁ ୧୫୦ ଲକ୍ଷ ସରୀସୃପ ଚମଡ଼ା, ୫୦୦ରୁ ୬୦୦ କୋଟି ସୁନ୍ଦର ମାଛ, ୧୦୦୦ରୁ ୨୦୦୦ ଟନ୍ ପ୍ରବାଳ, ୭୦ରୁ ୮୦ ଲକ୍ଷ ସିନ୍ଧୁ ଏବଂ ୯୦ରୁ ୧୦୦ ଲକ୍ଷ ପୁଷ୍ପଲୀ ଆନ୍ତର୍ଜାତିକ ସ୍ତରରେ କିଣାବିକା ହେଉଛି ।

**ବିପନ୍ନ ପ୍ରାଣୀ ଏବଂ ଉଦ୍ଭିଦଙ୍କ ଆନ୍ତର୍ଜାତିକ ବାଣିଜ୍ୟ ଚୁକ୍ତି** (ସିଆଇଟିଇଏସ୍ ନାମରେ ବେଶି ଜଣାଶୁଣା) ବିପନ୍ନ ଜୀବଙ୍କ ଆନ୍ତର୍ଜାତୀୟ ବାଣିଜ୍ୟକୁ ନିୟନ୍ତ୍ରଣ କରେ । ଏହା ୧୯୭୩ରେ ଆରମ୍ଭ ହୋଇଥିଲା । ଏବେ ୧୫୦ଟି ଦେଶ ଏଥିରେ ସ୍ୱାକ୍ଷର କରିଛନ୍ତି । ଭାରତ ୧୯୭୬ରେ ଏହାର ଏକ ଅଂଶ ହେଲା । ଏବେ ସିଆଇଟିଇଏସ୍ ପ୍ରାୟ ୮୦୦ ଜୀବଜାତିଙ୍କ ବାଣିଜ୍ୟ ଉପରେ ନିଷେଧାଜ୍ଞା ଜାରି କରିଛି (ଏଗୁଡ଼ିକ ଚୁକ୍ତିର ପରିଶିଷ୍ଟ୧ରେ ତାଲିକାଭୁକ୍ତ) ଏବଂ ୨୯,୦୦୦ ଜାତିଙ୍କ ବାଣିଜ୍ୟକୁ ସୀମିତ କରେ (ପରିଶିଷ୍ଟ୨ରେ ତାଲିକାଭୁକ୍ତ) ।

ଆନ୍ତର୍ଜାତିକ ବଜାରରେ ସେମାନଙ୍କ ଦାନ୍ତର ଚାହିଦା ଯୋଗୁଁ ଉଭୟ ଏସୀୟ ଏବଂ ଆଫ୍ରିକୀୟ ହାତୀ ଶିକାର କରାଯାଉଛନ୍ତି । ସେଥିପାଇଁ ହାତୀଦାନ୍ତ ସମେତ ଅନ୍ୟ ହାତୀ ଜିନିଷର ଆନ୍ତର୍ଜାତୀୟ ବାଣିଜ୍ୟ ସିଆଇଟିଇଏସ୍ ଦ୍ୱାରା ନିୟନ୍ତ୍ରିତ । ସିଆଇଟିଇଏସ୍‌ର ପରିଶିଷ୍ଟ୧ରେ ୧୯୭୬ ମସିହାରୁ ଏସୀୟ ହାତୀ ତାଲିକାଭୁକ୍ତ । ଅର୍ଥାତ ସେହିଦିନରୁ ଏସୀୟ ହାତୀ ଓ ତା'ର ଦାନ୍ତ ବ୍ୟବସାୟ ନିଷେଧ । ଆଫ୍ରିକୀୟ ହାତୀ ଓ ତା'ର ଦାନ୍ତର ଆନ୍ତର୍ଜାତୀୟ ବାଣିଜ୍ୟ ପରେ ୧୯୯୦ରେ ନିଷେଧ କରାଗଲା । ଭାରତ ୧୯୮୬ରେ ଏସୀୟ ହାତୀଦାନ୍ତର ଏବଂ ୧୯୯୧ରେ ଆଫ୍ରିକୀୟ ହାତୀଦାନ୍ତର ସବୁପ୍ରକାର ଘରୋଇ ବ୍ୟବସାୟ ନିଷିଦ୍ଧ କଲା ।

ସଂରକ୍ଷଣକାରୀମାନେ ଲକ୍ଷ କରିଛନ୍ତି ଯେ ଏହି ନିଷେଧାଜ୍ଞା ଫଳରେ ଆଫ୍ରିକାରେ ହାତୀଙ୍କ ସଂଖ୍ୟା ନବଢ଼ିଲେ ବି ସ୍ଥିର ରହିଛି । ୧୯୭୦-୮୦ ଦଶକରେ ଶିକାର ଯୋଗୁଁ ଏହା ବହୁତ କମିଯାଉଥିଲା । ପରୀକ୍ଷାମୂଳକ ଭାବରେ ୧୯୯୭ ମସିହାରେ ଆଫ୍ରିକୀୟ ହାତୀ ଉପରୁ ନିଷେଧାଜ୍ଞା



Digitized by srujanika@gmail.com

ଆଂଶିକ ଉଠାଇ ଦିଆଯାଇଥିଲା । କିନ୍ତୁ ଏହା ପରେ ପରେ ଉଭୟ ଏସୀୟ ଓ ଆଫ୍ରିକୀୟ ହାତୀଙ୍କ ଶିକାର ବଢ଼ିବା ଫଳରେ ଯାଙ୍କେ ଯାଙ୍କେ ପୁଣି ଥରେ ନିଷେଧାଜ୍ଞା ଜାରି କରାଗଲା ।

ତେଣୁ ଆଜିକାଲି ହାତୀଦାନ୍ତର ଆନ୍ତର୍ଜାତୀୟ ବାଣିଜ୍ୟ ମନା । କିନ୍ତୁ ବେଆଇନ ଭାବରେ ଶିକାର ଏବଂ ହାତୀଦାନ୍ତର ଚୋରା କାରବାର ଏବେ ବି ଚାଲିଛି । ଏହା ବିଶେଷ କରି ଏସୀୟ ହାତୀର ସ୍ଥିତିକୁ ବିପଦରେ ପକାଉଛି । ଏଥିପାଇଁ ହାତୀ ରହୁଥିବା ଅଞ୍ଚଳରେ ଶିକାର ପୂରା ବନ୍ଦ କରାଇବା ଦରକାର । ତା' ସହିତ ବିଶେଷ କରି ଧନୀ ଉପଭୋକ୍ତା ଦେଶମାନଙ୍କରେ ହାତୀଦାନ୍ତର ଚାହିଦା କମାଇବା ଆବଶ୍ୟକ ।

କୁମି ଏଫ୍. ୱାଇଲ୍ଡ୍ ଲାଇଫ୍ ଟ୍ରଷ୍ଟ ଅଫ୍ ଇଣ୍ଡିଆ.ଙ୍କ ରଚନା ।

## ସଂରକ୍ଷଣ ପ୍ରଚେଷ୍ଟା

ଏସୀୟ ହାତୀର ସଂରକ୍ଷଣ ପାଇଁ ଉଭୟ ସରକାରୀ ଏବଂ ବେସରକାରୀ ସ୍ତରରେ କେତେକ ପଦକ୍ଷେପ ନିଆଯାଇଛି । ଏହାର ତାଲିକା କରିବା ପୂର୍ବରୁ ବୁଝିବା ଦରକାର ଯେ ହାତୀଙ୍କୁ ବଞ୍ଚାଇରଖିବା ପାଇଁ ଏକ ସମୟରେ ଦୁଇ ପ୍ରକାରର ପଦକ୍ଷେପ ନେବା ଜରୁରୀ ।

ପ୍ରଥମରେ, ହାତୀର ଆବାସସ୍ଥଳୀର ସୁରକ୍ଷା ଦରକାର । ଅର୍ଥାତ ହାତୀ ଓ ମଣିଷ ଏକାଠି ରହିପାରିବେ, କିନ୍ତୁ ମଣିଷ ଜମିକୁ ଏପରି ବ୍ୟବହାର କରିବ ଯେପରି ତାହା ହାତୀର ଚାଲିଚଳଣ ଏବଂ ପରିସଂସ୍ଥାକୁ ସୁହାଇବ । ଏହା ହୋଇପାରିବ ଯଦି ମଣିଷର ଜୀବନ, ଜୀବିକା ଏବଂ ସମ୍ପତ୍ତି ହାତୀ ଦ୍ୱାରା କ୍ଷତିଗ୍ରସ୍ତ ନହୁଏ ।

ଦ୍ୱିତୀୟରେ, ହାତୀକୁ ଶିକାର, ଦୁର୍ଘଟଣା ଏବଂ ଅନ୍ୟ ଇଚ୍ଛାକୃତ ମାରିବାରୁ ରକ୍ଷା କରିବାକୁ ହେବ ।

ହାତୀ ସଂରକ୍ଷଣ ପାଇଁ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ହେଉଛି ହାତୀର ଆବାସ ହୋଇପାରିବା ଭଳି ଅଭୟାରଣ୍ୟ ଉପରେ ଗଭୀର ଅନୁଧ୍ୟାନ କରିବା । ଏହି ଅଞ୍ଚଳରେ ହାତୀ ସଂଖ୍ୟା ଗଣନା କରି, ଆବାସସ୍ଥଳୀର ମାନ ନିର୍ଦ୍ଧାରଣ କରି ଏବଂ ଚଲାପଥ ସବୁର ମୂଲ୍ୟାୟନ ଜରିଆରେ ଏହା କରାଯାଇପାରେ । ଆହୁରି ମଧ୍ୟ ହାତୀ ଉପରେ ମଣିଷର କାରବାରର ପ୍ରଭାବ, ହାତୀ-ମଣିଷର ସଂଘର୍ଷ ଏବଂ ଭବିଷ୍ୟତ ବିକାଶର ଚାହିଦା ଆଦିର ମଧ୍ୟ ମୂଲ୍ୟାୟନ ହେବା ଦରକାର ।

ମଣିଷର ଚାହିଦା ଏବଂ ହାତୀର ଚାହିଦା କେତେ ପରିମାଣର ପୂରଣ କହିହେବ ତା' ଉପରେ ସଂରକ୍ଷଣ କାର୍ଯ୍ୟକ୍ରମର ସଫଳତା ନିର୍ଭର କରିବ ।

## ସଂରକ୍ଷଣ ପରମ୍ପରା

ଭାରତୀୟମାନେ ସବୁ ଜୀବନ୍ତ ଓ ନିର୍ଜୀବଙ୍କ ସହ ଭାରସାମ୍ୟ ରଖି ଚଳି ଆସିଛନ୍ତି । ପ୍ରାଣୀଙ୍କ ଭିତରେ ହାତୀ ସହ ମଣିଷର ଧାର୍ମିକ, ପୌରାଣିକ, ସାମାଜିକ, ସାଂସ୍କୃତିକ ଏବଂ କାର୍ଯ୍ୟ ସମ୍ପର୍କ ରହିଛି ।

ଧାର୍ମିକ ସଙ୍କେତ, ମଣିଷର ବନ୍ଧୁ ଏବଂ ଭାରବାହୀ ପଶୁ ଭାବରେ ହାତୀ ସର୍ବାଧିକ ସମ୍ମାନ ପାଏ ।

ହାତୀର ସୁରକ୍ଷା ଓ ସଂରକ୍ଷଣ ଅତୀତ ସମୟରୁ ହୋଇଆସୁଛି । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ହାତୀ ସଂରକ୍ଷଣ ପାଇଁ ପରାମର୍ଶ ଏବଂ ସୁରକ୍ଷା ପାଇଁ ପଦକ୍ଷେପ ଦିଆଯାଇଛି । (ଅଧିକ ତଥ୍ୟ ପାଇଁ ପୃଷ୍ଠା ୪୨ ଦେଖନ୍ତୁ)

ହାତୀ ମଣିଷର ସଂଘର୍ଷ କିଛି ନୂଆ କଥା ନୁହେଁ । କିନ୍ତୁ ମଣିଷ ସବୁବେଳେ ମାନି ଆସିଥିଲା ଯେ ଜୀବଜନ୍ତୁଙ୍କର ବି ବଞ୍ଚିବାର ଅଧିକାର ଅଛି । ତେଣୁ ସେମାନେ ସମ୍ପତ୍ତି ନଷ୍ଟ ବା ବିପଦ ପ୍ରତି ପ୍ରସ୍ତୁତ ରହୁଥିଲେ । ସେଇଥିପାଇଁ ତ ଭାରତରେ ଆଜି ବି ହାତୀ ଭଳି ଅନେକ ବଣୁଆ ଜୀବ ଏତେ ସଂଖ୍ୟାରେ ତିଷ୍ଠି ରହିଛନ୍ତି । କିନ୍ତୁ ଲୋକସଂଖ୍ୟା ବଢ଼ିବା, ସେମାନଙ୍କ ଚାହିଦା ବଢ଼ିବା, ଜୀବନଶୈଳୀ ଏବଂ ମୂଲ୍ୟବୋଧ ବଦଳିଯିବା ଫଳରେ ବନ୍ୟପ୍ରାଣୀଙ୍କ ପାଇଁ ଆଶା କମିଯାଉଛି ।

## ଜାତୀୟ ସ୍ତରରେ ପ୍ରଚେଷ୍ଟା

### ହାତୀ ପ୍ରକଳ୍ପ

ହାତୀ ସଂଖ୍ୟା କ୍ରମାଗତ ଭାବରେ କମିବା ଏବଂ ହାତୀ ଆବାସସ୍ଥଳୀର ମାନ ଏବଂ ଆକାର କମିବା ଯୋଗୁଁ ଦି ୱାର୍ଲ୍ଡ କନ୍‌ଜରଭେସନ ୟୁନିଅନ (*ଆଇୟୁସିଏନ୍*), ବମ୍ବେ ନାଚୁରାଲ ହିଷ୍ଟ୍ରି ସୋସାଇଟି (ବିଏନ୍‌ଏଚ୍‌ଏସ୍), ୱାଇଲ୍ଡ ଲାଇଫ ଇନ୍‌ଷ୍ଟିଚ୍ୟୁଟ ଅଫ୍ ଇଣ୍ଡିଆ, ସେଣ୍ଟର ଫର ଇକୋଲୋଜିକାଲ ସାଇନ୍‌ସେସ୍ ଆଦି ଆନ୍ତର୍ଜାତୀୟ ଏବଂ ଜାତୀୟ ସଂସ୍ଥାମାନେ ହାତୀ ସଂରକ୍ଷଣ ପାଇଁ ହାତୀ ପ୍ରକଳ୍ପର ପ୍ରସ୍ତାବ ଦେଇଥିଲେ ।

ଏସୀୟ ହାତୀଙ୍କ ସମସ୍ୟା ବିଷୟରେ ଜାଣିବା ପାଇଁ ଏବଂ ଦୀର୍ଘକାଳୀନ ସଂରକ୍ଷଣ କାର୍ଯ୍ୟକ୍ରମର ଯୋଜନା କରିବା ପାଇଁ ୧୯୯୦ରେ ଭାରତ ସରକାର ଏକ ଟାସ୍କଫୋର୍ସ ଗଠନ କଲେ ଏବଂ ୧୯୯୨ରେ ହାତୀ ପ୍ରକଳ୍ପ ଆରମ୍ଭ କରାଗଲା ।

ହାତୀ ପ୍ରକଳ୍ପର ଲକ୍ଷ ହେଉଛି ହାତୀ ଏବଂ ତା'ର ପ୍ରାକୃତିକ ଆବାସସ୍ଥଳୀଗୁଡ଼ିକ ପାଇଁ ଏକ ଦୀର୍ଘକାଳୀନ ସଂରକ୍ଷଣ ବ୍ୟବସ୍ଥା କରିବା । ଏହାର ମୁଖ୍ୟ ଉଦ୍ଦେଶ୍ୟ ଗୁଡ଼ିକ ହେଉଛି -

- ବର୍ତ୍ତମାନର ଆବାସସ୍ଥଳୀଗୁଡ଼ିକର ସୁରକ୍ଷା, ପୁନରୁଦ୍ଧାର ଏବଂ ବିକାଶ, ଜଙ୍ଗଲ ଭିତରେ ଘୂରିବୁଲିବା ପାଇଁ ଚଲାପଥଗୁଡ଼ିକୁ ଯୋଡ଼ିବା ।
- ଜଙ୍ଗଲୀ ହାତୀଙ୍କୁ ଶିକାର ଏବଂ ଅପ୍ରାକୃତିକ ମୃତ୍ୟୁରୁ ରକ୍ଷା କରିବା ।
- ହାତୀ-ମଣିଷ ସଂଘର୍ଷ ତୁଟେଇବା ।
- ଜଙ୍ଗଲୀ ହାତୀଙ୍କର ଉଚିତ ଓ ବୈଜ୍ଞାନିକ ଧାରାରେ ପରିଚାଳନା ପାଇଁ ଜଙ୍ଗଲ ବିଭାଗର ଦକ୍ଷତା ବଢ଼ାଇବାରେ ସାହାଯ୍ୟ କରିବା ।
- ପୋଷା ହାତୀଙ୍କ ପ୍ରତି ଦରଦୀ ବ୍ୟବହାର ପାଇଁ ମାଲିକଙ୍କୁ ଉତ୍ସାହିତ କରିବା ।
- ଉପର ଲକ୍ଷଗୁଡ଼ିକ ପୂରଣ କରିବା ପାଇଁ ରାଜ୍ୟମାନଙ୍କୁ ବୈଷୟିକ ଏବଂ ପ୍ରଶାସନିକ ସହାୟତା ଯୋଗାଇବା ।

ଉତ୍ସ: ୱାଇଲ୍ଡ ଲାଇଫ୍ ଇନ୍‌ଷ୍ଟିଚ୍ୟୁଟ ଅଫ୍ ଇଣ୍ଡିଆ, *ଏନ୍‌ଭିସ୍: ୱାଇଲ୍ଡ ଲାଇଫ୍ ଆଣ୍ଡ ପ୍ରୋଟେକ୍‌ଟେଡ୍ ଏରିଆସ୍, ବାଇଆନୁଆଲ ବୁଲେଟିନ୍*, ୱାଇଲ୍ଡ ଲାଇଫ ଇନ୍‌ଷ୍ଟିଚ୍ୟୁଟ ଅଫ୍ ଇଣ୍ଡିଆ, ଡେରାଡୁନ, ଭାଗ ୧, ସଂଖ୍ୟା ୧, ମାର୍ଚ୍ଚ ୧୯୯୮

## ହାତୀ ଅଭୟାରଣ୍ୟ ପ୍ରତିଷ୍ଠା

ହାତୀ ଗୋଟିଏ ବଡ଼ ଜୀବ । ତେଣୁ ତା'ର ବହୁତ ଖାଦ୍ୟ ଦରକାର ହୁଏ । ଏଥିପାଇଁ ସେ ବିରାଟ ଅଞ୍ଚଳରେ ଚାଲବୁଲ କରେ । ବିଭିନ୍ନ ଋତୁରେ ହାତୀର ବିଚରଣ ଅଞ୍ଚଳ ବଦଳିଥାଏ । ହାତୀର ପ୍ରାକୃତିକ ଆବାସସ୍ଥଳୀ ବେଳେ ବେଳେ ଦୁଇ ବା ଅଧିକ ରାଜ୍ୟରେ ବ୍ୟାପିଥାଏ ।

ସେଥିପାଇଁ ହାତୀ ପ୍ରକଳ୍ପରେ ସଂରକ୍ଷିତ ଜଙ୍ଗଲଗୁଡ଼ିକୁ ଅଲଗା ଅଲଗା ଭିତ୍ତି ନକରି ବଡ଼ ବଡ଼ ଅଞ୍ଚଳ ପାଇଁ ଯୋଜନା କରାଯାଇଛି ।



Digitized by srujanika@gmail.com

ହାତୀଙ୍କୁ ଦୀର୍ଘଦିନ ଧରି ବଞ୍ଚାଇରଖିବା ପାଇଁ ହାତୀ ଅଭୟାରଣ୍ୟ ସବୁର ଯୋଜନା କରାଯାଇଛି । ଏହି ଯୋଜନାର ଲକ୍ଷ ରହିଛି -

- ଚିହ୍ନଟ ହୋଇଥିବା ବଡ଼ ବଡ଼ ଦଳଙ୍କୁ ଦୀର୍ଘକାଳୀନ ଭିତ୍ତିରେ ଜୀବନକ୍ଷମ କରିବା ।
- ବିଖଣ୍ଡିତ ହୋଇଥିବା ଆବାସସ୍ଥଳୀକୁ ନୂଆ ସଂଯୋଗ ପଥ ସାହାଯ୍ୟରେ ଯୋଡ଼ିବା ଏବଂ ଏବେ ଥିବା ଚଲାପଥଗୁଡ଼ିକୁ ସୁରକ୍ଷିତ କରିବା
- ପୂରା ଅଞ୍ଚଳର ସଂରକ୍ଷଣକୁ ଆଖିରେ ରଖି ସ୍ଥାନୀୟ ପରିସଂସ୍ଥାର ପୁନରୁଦ୍ଧାର କରିବା ଏବଂ ଆବାସସ୍ଥଳୀର ଉନ୍ନତି ଘଟାଇବା ।
- ଆଖପାଖରେ ରହୁଥିବା ଲୋକମାନଙ୍କର ହାତୀ ସହିତ ସଂଘର୍ଷକୁ ଏଡ଼ାଇବାର ବ୍ୟବସ୍ଥା କରିବା ଏବଂ ସ୍ଥାନୀୟ ସାମାଜିକ ଅର୍ଥନୀତିକ ସମସ୍ୟାର ସମାଧାନ ଖୋଜିବା ।

## ଭାରତରେ ହାତୀ ସଂରକ୍ଷଣ ପାଇଁ ଚିହ୍ନିତ ଅଞ୍ଚଳ

| କ୍ରମ ସଂଖ୍ୟା | ହାତୀ ଅଞ୍ଚଳ (ରେଞ୍ଜ) | ରାଜ୍ୟ ହାତୀ ସଂରକ୍ଷଣ ଅଞ୍ଚଳ | ରାଜ୍ୟ | କ୍ଷେତ୍ରଫଳ ବର୍ଗ କି.ମି. | ହାତୀ ସଂଖ୍ୟା |
|---|---|---|---|---|---|
| ୧ | ପୂର୍ବ ଭାରତ (ଦକ୍ଷିଣ ପଶ୍ଚିମବଙ୍ଗ-ଝାଡ଼ଖଣ୍ଡ-ଓଡ଼ିଶା) | ୧· ମୟୂରଝରଣା | ପଶ୍ଚିମବଙ୍ଗ | ୭୫୦ | ୬୦ |
| | | ୨· ସିଂହଭୂମି | ଝାଡ଼ଖଣ୍ଡ | ୪,୨୩୦ | ୩୫୦ |
| | | ୩· ମୟୂରଭଞ୍ଜ | ଓଡ଼ିଶା | ୩,୨୧୪ | ୫୦୦ |
| | | ୪· ମହାନଦୀ | ଓଡ଼ିଶା | ୧,୦୦୦ | ୫୫୦ |
| | | ୫· ଖଳାଶୁଣି | ଓଡ଼ିଶା | ୫୦୦ | ୧୦୦ |
| ୨ | ଉତ୍ତର ବ୍ରହ୍ମପୁତ୍ର (ଅରୁଣାଚଳ-ଆସାମ) | ୬· କାମେଙ୍ଗ<br>୭· ସୋନିତ୍‌ପୁର | ଅରୁଣାଞ୍ଚଳ<br>ଆସାମ | ୪,୩୦୦ | ୧,୫୮୦ |
| ୩ | ଦକ୍ଷିଣ ବ୍ରହ୍ମପୁତ୍ର (ଆସାମ-ଅରୁଣାଚଳ) | ୮· ଦିବ୍ରୁ<br>୯· ଦେଓମାଲି | ଆସାମ<br>ଅରୁଣାଞ୍ଚଳ | ୪,୪୦୦ | ୫୦୦ |
| ୪ | କାଜିରଙ୍ଗା (ଆସାମ-ନାଗାଲାଣ୍ଡ) | ୧୦· କାଜିରଙ୍ଗା-କାର୍‌ବି-ଆଙ୍ଗଲଙ୍ଗ<br>୧୧· ଇନ୍‌ଟାଙ୍କି | ଆସାମ<br>ନାଗାଲାଣ୍ଡ | ୪,୯୦୦ | ୧,୮୦୦ |
| ୫ | ପୂର୍ବ ଦୋଆର୍‌ସ୍ (ଆସାମ-ପଶ୍ଚିମବଙ୍ଗ) | ୧୨· ମାନସ<br>୧୩· ବକ୍‌ସା-ଜଲ୍‌ଦାପରା | ଆସାମ<br>ପଶ୍ଚିମବଙ୍ଗ | ୩,୮୦୦ | ୮୦୦ |
| ୬ | ଗାରୋ ହିଲ୍‌ସ୍ (ମେଘାଳୟ) | ୧୪· ଗାରୋ ହିଲ୍‌ସ୍ | ମେଘାଳୟ | ୩,୫୦୦ | ୧,୭୦୦ |
| ୭ | ନୀଳଗିରି-ପୂର୍ବ ଘାଟ (କର୍ଣ୍ଣାଟକ-କେରଳ-ତାମିଲନାଡୁ-ଆନ୍ଧ୍ରପ୍ରଦେଶ) | ୧୫· ମହିଶୁର<br>୧୬· ୱାଇନାଡ<br>୧୭· ମୁଦୁମଲାଇ<br>୧୮· କୌଣ୍ଡିନ୍ୟ | କର୍ଣ୍ଣାଟକ<br>କେରଳ<br>ତାମିଲନାଡୁ<br>ଆନ୍ଧ୍ରପ୍ରଦେଶ | ୧୩,୦୦୦ | ୬,୩୦୦ |
| ୮ | ଦକ୍ଷିଣ ନୀଳଗିରି (କେରଳ-ତାମିଲନାଡୁ) | ୧୯· ନୀଳାମ୍ବୁର-ସାଇଲେଣ୍ଟ ଭ୍ୟାଲି<br>୨୦· କୋଏମ୍ବାଟୁର | କେରଳ<br>ତାମିଲନାଡୁ | ୨,୪୦୦ | ୯୫୦ |
| ୯ | ପଶ୍ଚିମ ଘାଟ (ତାମିଲନାଡୁ-କେରଳ) | ୨୧· ଆନାମାଲାଇ<br>୨୨· ପେରାମ୍ବିକୁଲମ୍ | ତାମିଲନାଡୁ<br>କେରଳ | ୫,୭୦୦ | ୧,୬୦୦ |
| ୧୦ | ପେରିୟାର (କେରଳ-ତାମିଲନାଡୁ) | ୨୩· ପେରିୟାର<br>୨୪· ମଦୁରାଇ | କେରଳ<br>ତାମିଲନାଡୁ | ୩,୩୦୦ | ୧,୫୦୦ |
| ୧୧ | ଉତ୍ତର ଭାରତ (ଉତ୍ତରାଞ୍ଚଳ) | ୨୫· ଶିବାଲିକ୍ | ଉତ୍ତରାଞ୍ଚଳ | ୩,୦୦୦ | ୭୫୦ |
| | **ସର୍ବମୋଟ** | | | **୫୭,୯୯୪** | **୧୯,୦୪୦** |

ଉତ୍ସ: ବିଷ୍ଟ, ଏସ୍. ଏସ୍., *ଆନ୍ ଓଭରଭିଉ ଅଫ୍ ଏଲିଫାଣ୍ଟ କନ୍‌ଜରଭେସନ ଇନ୍ ଇଣ୍ଡିଆ: ନାସନାଲ ସିମ୍ପୋଜିଅମ୍ ଅନ୍ ଏଲିଫାଣ୍ଟ କନ୍‌ଜରଭେସନ, ମାନେଜ୍‌ମେଣ୍ଟ ଆଣ୍ଡ ରିସର୍ଚ୍ଚ*, ହରଦ୍ୱାର, ୨୦୦୧



Digitized by srujanika@gmail.com

# ଆଫ୍ରିକୀୟ ହାତୀ

ଆଫ୍ରିକୀୟ ହାତୀ ପୃଥିବୀର ସ୍ଥଳଭାଗରେ ସବୁଠାରୁ ବଡ଼ ଜୀବ । ଏମାନେ ସାହାରା ମରୁଭୂମିର ଦକ୍ଷିଣରୁ ଆରମ୍ଭ କରି ଉତ୍ତର ଦକ୍ଷିଣ ଅଫ୍ରିକା ଯାଏଁ ଦେଖାଯାନ୍ତି । ମରୁଭୂମିଠାରୁ ଆରମ୍ଭ କରି ତୃଣଭୂମି ଏବଂ ମଧ୍ୟ ଆଫ୍ରିକାର ଜଙ୍ଗଲ ଭଳି ସବୁଠାରେ ହାତୀ ରହେ । ଆଫ୍ରିକୀୟ ହାତୀଙ୍କ ଭିତରେ ଦୁଇଟି ଉପଜାତି ରହିଛନ୍ତି । ଗୋଟିଏ ହେଉଛି ସାଭାନା ହାତୀ (*ଲୋକ୍ସୋଡୋଣ୍ଟା ଆଫ୍ରିକାନା ଆଫ୍ରିକାନା*) । ଏଗୁଡ଼ିକ ବଡ଼ ଏବଂ ବେଶି ଅଞ୍ଚଳରେ ଦେଖାଯା'ନ୍ତି । ଆଉଟି ହେଉଛି ଜଙ୍ଗଲ ହାତୀ (*ଲୋକ୍ସୋଡୋଣ୍ଟା ଆଫ୍ରିକାନା ସାଇକ୍ଲୋଟିସ୍*) । ଏଗୁଡ଼ିକ ଛୋଟ ଓ ଅନ୍ୟ ହାତୀ ତୁଳନାରେ ଏମାନଙ୍କର କାନଗୁଡ଼ିକ ଗୋଲ । ସାଭାନା ହାତୀ ମୁଖ୍ୟତଃ କେନିଆ, ତାଞ୍ଜାନିଆ, ବଟସ୍‌ୱାନା, ଜିମ୍ବାୱେ, ନାମିବିଆ ଏବଂ ଦକ୍ଷିଣ ଆଫ୍ରିକାରେ ଦେଖାଯାଏ । ଜଙ୍ଗଲ ହାତୀ ମୁଖ୍ୟତଃ ଘଞ୍ଚ ବିଷୁବ ମଣ୍ଡଳୀୟ ଜଙ୍ଗଲ ଏବଂ ପଶ୍ଚିମ କୂଳରେ ଠାରୁ ମରିଟାନିଆ ଯାଏଁ ଦେଖାଯାଏ ।

ଦିନ ଥିଲା ଯେତେବେଳେ ଆଫ୍ରିକୀୟ ହାତୀ ଆଫ୍ରିକା ସାରା ଦେଖାଯାଉଥିଲା । କିନ୍ତୁ ଏବେ ମହାଦେଶର ମାତ୍ର ଏକ ତୃତୀୟାଂଶ ଅଞ୍ଚଳରେ ହିଁ ତାହା ଦେଖାଯାଉଛି । ବର୍ତ୍ତମାନ ଶତକଡ଼ା ୪୫ ଭାଗ ଆଫ୍ରିକୀୟ ହାତୀ ମଧ୍ୟ ଆଫ୍ରିକାର ବିଷୁବ ମଣ୍ଡଳୀୟ ଜଙ୍ଗଲରେ, ୩୧ ଭାଗ ଦକ୍ଷିଣ ଆଫ୍ରିକାରେ, ୨୧ ଭାଗ ପୂର୍ବ ଆଫ୍ରିକାରେ ଏବଂ ଶେଷ ୩ ଭାଗ ପଶ୍ଚିମ ଆଫ୍ରିକାରେ ଦେଖାଯାଉଛି ।

୧୯୭୯ରୁ ୧୯୮୯ ଭିତରେ ଆଫ୍ରିକୀୟ ହାତୀଙ୍କ ସଂଖ୍ୟା ପ୍ରାୟ ଅଧା କମିଯାଇଥିଲା । ୧୯୭୯ରେ ଥିବା ୧୩ ଲକ୍ଷ ହାତୀରୁ କମିଯାଇ ୧୯୮୯ରେ ମାତ୍ର ୭୫୦,୦୦୦ ଥିଲେ । ଏବେ ପ୍ରାୟ ୬୦୦,୦୦୦ ଆଫ୍ରିକୀୟ ହାତୀ ଥିବାର ହିସାବ କରାଯାଏ ।

ଆଫ୍ରିକୀୟ ହାତୀଙ୍କ ସଂଖ୍ୟା କମିବାର ଗୋଟିଏ ମୁଖ୍ୟ କାରଣ ହେଉଛି ଶିକାର । ଉଭୟ ମାଈ ଓ ଅଣ୍ଡିରା ଆଫ୍ରିକୀୟ ହାତୀଙ୍କର ଲମ୍ବା ହାତୀଦାନ୍ତ ଥାଏ । ସେଥିପାଇଁ ସେମାନଙ୍କୁ ଏତେ ସଂଖ୍ୟାରେ ମରାଯାଉଛି ।

ଅନେକ ସଂଖ୍ୟାରେ ଗୋପାଳନ କେନ୍ଦ୍ର ଏବଂ କୃଷି ଫାର୍ମ ପ୍ରତିଷ୍ଠା ହେବା ଫଳରେ ସେମାନଙ୍କ ଆବାସସ୍ଥଳୀ କମୁଛି । ହାତୀ ସଂଖ୍ୟା କମିବାର ଏହା ମଧ୍ୟ ଆଉ ଗୋଟିଏ କାରଣ । ଅଧିକ ଅଞ୍ଚଳରେ ମରୁଭୂମି ମାଡୁଥିବାରୁ ହାତୀଙ୍କ ଆବାସସ୍ଥଳୀ କମୁଛି, ତେଣୁ ତାଙ୍କର ସଂଖ୍ୟା ମଧ୍ୟ କମୁଛି । ଉତ୍ତର ଆଫ୍ରିକା ଏବଂ ସାହାରା ଅଞ୍ଚଳ ମରୁଭୂମି ହୋଇଯିବା ଫଳରେ ସେଠାରୁ ହାତୀ ଉଭେଇଗଲେ । ସାଭାନା ହାତୀ ତୁଳନାରେ କମ ସଂଖ୍ୟାରେ ଥିବା ଜଙ୍ଗଲ ହାତୀ ମଧ୍ୟ ଜଙ୍ଗଲରୁ କାଠ କଟା ହେବା ଏବଂ ମାଂସ ପାଇଁ ମରା ହେବା ଯୋଗୁଁ ଏବେ ବିପଦରେ ।

ଭାରତରେ ଏସୀୟ ହାତୀଙ୍କ ଭଳି ଆଫ୍ରିକାରେ ହାତୀ-ମଣିଷ ସଂଘର୍ଷ ଏତେ ସାଧାରଣ ନୁହେଁ । କିନ୍ତୁ ଜନସଂଖ୍ୟା ଦ୍ରୁତଗତିରେ ବଢ଼ିବା ଫଳରେ ମଣିଷ ଏବଂ ହାତୀଙ୍କ ଚାହିଦା ପାଇଁ ସଂଘର୍ଷ ଆରମ୍ଭ ହେଲାଣି । ପୂର୍ବାନୁମାନ କରାଯାଉଛି ଯେ ଜଙ୍ଗଲରେ କାଠ କାଟିବା ଏବଂ ଚାଷ କରିବା ଯୋଗୁଁ ଆବାସସ୍ଥଳୀର କ୍ଷୟ ହେଉଛି ଏବଂ ଏହା ହାତୀର ସ୍ଥିତି ପାଇଁ ଏକ ବଡ଼ ବିପଦ ହେବ ।



ସିଆଇଟିଇଏସ୍‌ର ପରିଶିଷ୍ଟ୧ରେ ଆଫ୍ରିକୀୟ ହାତୀର ନାଁ ରହିବା ହିଁ ତା'ର ସ୍ଥିତି ବିଷୟରେ ସୂଚନା ଦେଉଛି । ଆଇୟୁସିଏନ୍‌ର ରେଡ୍ ଡାଟା ବୁକ୍‌ରେ ଏହା ଏକ ବିପନ୍ନ ଜୀବ ଭାବରେ ରହିଛି । ୟୁଏସ୍ ଫିସ୍ ଆଣ୍ଡ ୱାଇଲ୍‌ଡ ଲାଇଫ୍ ସର୍ଭିସ ଦ୍ୱାରା ମଧ୍ୟ ଏହା ବିପନ୍ନ ଶ୍ରେଣୀଭୁକ୍ତ କରାଯାଇଛି ।

ଏହି ଜୀବଟିର ସଂରକ୍ଷଣ ପାଇଁ ନିଆଯାଇଥିବା କିଛି ପଦକ୍ଷେପ ହେଉଛି:

- ସ୍ଥିତି ସର୍ବେକ୍ଷଣ ଏବଂ ପଦକ୍ଷେପ ଯୋଜନା

  ଏହା ୧୯୯୦ ମସିହାରେ ଆଇୟୁସିଏନ୍/ଏସ୍‌ଏସ୍‌ସି ଆଫ୍ରିକୀୟ ହାତୀ ଏବଂ ଗଣ୍ଡା ବିଶେଷଜ୍ଞ ଦଳ (ଏଇଆର୍‌ଏସ୍‌ଜି)ଙ୍କ ଦ୍ୱାରା ଆରମ୍ଭ କରାଯାଇଥିଲା । ଏହି ପଦକ୍ଷେପ ଯୋଜନାର ମୁଖ୍ୟ ଉଦ୍ଦେଶ୍ୟ ଥିଲା, ହାତୀଦାନ୍ତ ଆମଦାନୀ ରପ୍ତାନୀ କରୁଥିବା ଦେଶଗୁଡ଼ିକର ନୀତିକୁ ପ୍ରଭାବିତ କରିବା, ବେଆଇନ ହାତୀଦାନ୍ତ ବ୍ୟବସାୟର ପ୍ରଭାବକୁ ଆକଳନ କରିବା, ହାତୀଦାନ୍ତ ଭାଗ ବ୍ୟବସ୍ଥାର ବିଶ୍ଳେଷଣ କରିବା, ଯାଙ୍କେ ଯାଙ୍କେ ପଦକ୍ଷେପ ଦରକାର କରୁଥିବା ଅଞ୍ଚଳ ଚିହ୍ନଟ କରିବା ଏବଂ ପ୍ରଶାସନିକ କାର୍ଯ୍ୟରେ ଓ ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ସହାୟତା ଯୋଗାଇବା ।

- ଆଫ୍ରିକୀୟ ହାତୀଙ୍କ ଉପରେ ତଥ୍ୟାଧାର (ଡାଟାବେସ୍) ପ୍ରସ୍ତୁତି

  ଏହି କାର୍ଯ୍ୟକ୍ରମ ୧୯୮୬ ମସିହାରେ ନାଇରୋବିଠାରେ ଥିବା ୟୁନାଇଟେଡ୍ ନେସନ୍‌ସ୍ ଏନ୍‌ଭାଇରନ୍‌ମେଣ୍ଟ ପ୍ରୋଗ୍ରାମ (ୟୁଏନ୍‌ଇପି)ର ମୁଖ୍ୟ କାର୍ଯ୍ୟାଳୟରେ ଆରମ୍ଭ କରାଯାଇଥିଲା । ଏହି ତାଲିକା ପ୍ରସ୍ତୁତି ପଛରେ ମୁଖ୍ୟ ଉଦ୍ଦେଶ୍ୟ ଥିଲା ଆଫ୍ରିକା ସାରା ଥିବା ହାତୀଙ୍କ ପୂରା ସଂଖ୍ୟା ଏବଂ ବିସ୍ତାର ବିଷୟରେ ଧାରଣା ଦେବା ।



Digitized by srujanika@gmail.com

## ବୈଜ୍ଞାନିକ ଗବେଷଣା

### ଜୀବଜାତି ପରିଚାଳନା

କୌଣସି ଜୀବଜାତିର ପରିଚାଳନା ପାଇଁ ତା'ର ଶରୀର ଗଠନ, ଚାଲିଚଳଣ, ଖାଦ୍ୟ, ପ୍ରଜନନ, ଆବାସସ୍ଥଳୀର ଆବଶ୍ୟକତା, ଚାଲବୁଲ ଅଭ୍ୟାସ, ପାରିବାରିକ ଜୀବନ ଆଦିକୁ ବୁଝିବା ବହୁତ ଜରୁରୀ । ଏସବୁ ବିଷୟରେ ନଜାଣିଲେ ତା'ର ସଂରକ୍ଷଣର ଯୋଜନା କରିହେବ ନାହିଁ । ତେଣୁ ହାତୀର ପରିଚାଳନା ଏବଂ ସଂରକ୍ଷଣ ପାଇଁ ଗବେଷଣା ନିହାତି ଆବଶ୍ୟକ ।

ଭାରତରେ ହାତୀର ପରିସଂସ୍ଥା ଏବଂ ଚାଲିଚଳଣ ବିଷୟରେ ବିଜ୍ଞାନସମ୍ମତ ଗବେଷଣା ୧୯୭୦ ମସିହାରୁ ଆରମ୍ଭ କରାଗଲାଣି । ଏହି ସମୟରେ ବାଙ୍ଗାଲୋରର ସେଣ୍ଟର ଫର୍ ଇକୋଲଜିକାଲ ସାଇନ୍‌ସେସ୍‌ର ଡଃ ଆର୍ ସୁକୁମାର ହାତୀଙ୍କ ଉପରେ ଗଭୀର ଗବେଷଣା କରିଥିଲେ ।

### ଆବାସସ୍ଥଳୀ ପରିଚାଳନା

ହାତୀ ପାଇଁ ସଂରକ୍ଷିତ ଅଞ୍ଚଳ, ସଂଯୋଗପଥ ଆଦି ଚିହ୍ନଟ କରିବା ପାଇଁ ହାତୀକୁ ଓ ତା'ର ଜୀବନ ଧାରାକୁ ବୁଝିବା ଦରକାର । ତା'ର ଆବଶ୍ୟକତା, ଚାଲିଚଳଣ ଆଦି ବିଷୟରେ ଜାଣିବା ଜରୁରୀ । ପରିଚାଳନାଗତ ସମସ୍ୟା ସମାଧାନ କରିବା ପାଇଁ ମଧ୍ୟ ଗବେଷଣା ଦରକାର ।

ୱାଇଲଡ ଲାଇଫ ଇନଷ୍ଟିଚ୍ୟୁଟ ଅଫ୍ ଇଣ୍ଡିଆ (ଡବ୍ଲ୍ୟୁଆଇଆଇ), ବମ୍ବେ ନାଚୁରାଲ ହିଷ୍ଟ୍ରି ସୋସାଇଟି (ବିଏନ୍‌ଏଚ୍‌ଏସ୍), ସେଣ୍ଟର ଫର୍ ଇକୋଲୋଜିକାଲ ସାଇନ୍‌ସେସ୍ (ସିଇଏସ୍) ଏବଂ ଏସିଆନ ଏଲିଫାଣ୍ଟ ରିସର୍ଚ୍ଚ ଆଣ୍ଡ କଞ୍ଜରଭେସନ୍ ସେଣ୍ଟର, ବାଙ୍ଗାଲୋର, ଭଳି କେତେକ ସଂସ୍ଥା ହାତୀର ପରିଚାଳନା ଏବଂ ତା'ର ଆବାସସ୍ଥଳୀର ଉନ୍ନତି ପାଇଁ ଗବେଷଣା କରୁଛନ୍ତି ।

### ପୋଷା ହାତୀର ପ୍ରଜନନ କାର୍ଯ୍ୟକ୍ରମ

ପାଳିତ ହାତୀଙ୍କ ପ୍ରଜନନ ହାତୀଙ୍କ ସଂରକ୍ଷଣରେ ଏକ ବିଶେଷ ଭୂମିକା ତୁଲାଇ ପାରିବ । ଅବଶ୍ୟ ଜଙ୍ଗଲୀ ହାତୀଙ୍କ ସଂରକ୍ଷଣ ତୁଳନାରେ ଏହା କମ୍ ଗୁରୁତ୍ୱପୂର୍ଣ୍ଣ ହେବ । କେତେକ ସଫଳ ପ୍ରଜନନ କାର୍ଯ୍ୟକ୍ରମରେ ହାତୀକୁ ଜଙ୍ଗଲ ଶିବିର ଭଳି ଅଧା ପ୍ରାକୃତିକ ଅବସ୍ଥାରେ ରଖାଯାଏ । ଦକ୍ଷିଣ ଭାରତର ଜଙ୍ଗଲ ଶିବିରରେ, ପୋଷା ହାତୀଙ୍କର ନିୟମିତ ପ୍ରଜନନ ହେଉଥାଏ । ସେଠାରେ ଦେଖାଯାଇଛି ଯେ ନୂଆ ଜଙ୍ଗଲୀ ହାତୀ ନଧରିଲେ ବି ହାତୀ ସଂଖ୍ୟା ସ୍ଥିର ରହିପାରିଛି ।

## ବେତାର ଦୂରମିତି

ହାତୀକୁ ଠାବ କରିବାର ଗୋଟିଏ ଉପାୟ ହେଉଛି ବେତାର ଦୂରମିତି । ହାତୀ ଦେହରେ ବେତାର ସଂଚାରୀ ଯନ୍ତ୍ର ଲଗାଯାଇଥିଲେ ତାହା ସାହାଯ୍ୟ କରେ -

- ବିଭିନ୍ନ ଋତୁରେ ତା'ର ଯିବାଆସିବାର ଚଲାପଥ ଚିହ୍ନଟ କରିବାରେ
- ସେମାନଙ୍କର ସଠିକ ବାସସ୍ଥଳୀ ଚିହ୍ନଟ କରିବାରେ
- ନଷ୍ଟ କରୁଥିବା ଫସଲର ପରିମାଣ ଜାଣିବାରେ
- ସଂରକ୍ଷିତ ଅଞ୍ଚଳ ବାହାରେ କେଉଁ ଅଞ୍ଚଳକୁ ଯାଉଛନ୍ତି ତାହା ଚିହ୍ନଟ କରିବାରେ

ବେତାର ଦୂରମିତିରେ ଗୋଟିଏ ବେତାର ସଂଚାରୀ ହାତୀ (ଯାହା ନିରବ ବେତାର ସଙ୍କେତ ପଠାଏ) ଦେହରେ ଲଗାଇ ଦିଆଯାଏ । ଜନ୍ତୁଟି ଚାଲବୁଲ କଲାବେଳେ ଗୋଟିଏ ଦିଶାତ୍ମକ ଆଣ୍ଟେନା ଏବଂ ରିସିଭର ଦ୍ୱାରା ତାହାର ଅବସ୍ଥିତି ଜାଣିହୁଏ । ଏହି ଆଣ୍ଟେନାଟି ଦେଖିବାକୁ ଟିଭି ଆଣ୍ଟେନା ଭଳି । ଆଣ୍ଟେନା କେଉଁ ଦିଗକୁ ମୁହାଁଇଛି ସେଇ ଅନୁସାରେ ସଙ୍କେତର ଜୋର ଅଲଗା ହୁଏ । ଯେତେବେଳେ ଆଣ୍ଟେନାଟି ସିଧା ଜନ୍ତୁ ଆଡ଼କୁ ମୁହାଁଇଥାଏ ସେତେବେଳେ ସଙ୍କେତ ସବୁଠାରୁ ବେଶି ଜୋରରେ ହୁଏ । ଆଣ୍ଟେନାରେ ଲାଗିଥିବା ଗୋଟିଏ କମ୍ପାସ ସାହାଯ୍ୟରେ ସବୁଠାରୁ ଜୋର ସଙ୍କେତର ଦିଗ ନିଶ୍ଚିତ କରାଯାଏ । ଯେଉଁଠି ସମ୍ଭବ ଗବେଷକ ଜନ୍ତୁଟିକୁ ଦେଖିବା ପାଇଁ ମଧ୍ୟ ଚେଷ୍ଟା କରନ୍ତି । ଯଦି ଏହା ସମ୍ଭବ ନହୁଏ, ତେବେ ଅତି କମ୍‌ରେ ଦୁଇଟି ଜାଗାରୁ ସଙ୍କେତକୁ ଚିହ୍ନଟ କରାଯାଏ ଏବଂ କମ୍ପାସ ସାହାଯ୍ୟରେ ମାନଚିତ୍ର ଉପରେ ଗାର ଟଣାଯାଏ । ଗାର ଦୁଇଟି କାଟୁଥିବା ଜାଗାରେ ହିଁ ଜନ୍ତୁଟି ରହିଛି । ଏହି ପଦ୍ଧତିକୁ ତ୍ରିଭୁଜଭିତ୍ତିକ ମାନଚିତ୍ର ତିଆରି (*ଟ୍ରାଏଙ୍ଗୁଲେସନ୍*) କୁହାଯାଏ । ଯେତେବେଳେ ଜନ୍ତୁଟି ବହୁତ ଦୂରରେ ଥାଏ ଏବଂ ତାକୁ ଦେଖି ହୁଏନାହିଁ, ସେତେବେଳେ ଏହି ପଦ୍ଧତି ବ୍ୟବହାର କରାଯାଏ ।



ସାଧାରଣତଃ ବେତାର ସଂଚାରୀଟି ଲାଗୁଥିବା ଜୀବର ଦେହ ଓଜନର ଶତକଡ଼ା ପାଞ୍ଚ ଭାଗରୁ ବି କମ୍ ଓଜନର ହୋଇଥାଏ । ବେଳେବେଳେ ଏହା ଓଜନର ଶତକଡ଼ା ଆଠ ଭାଗ ବି ହୋଇଥାଏ । ହାତୀ କ୍ଷେତ୍ରରେ କିନ୍ତୁ ସଂଚାରୀଟି କେତେ କିଲୋଗ୍ରାମ ହୋଇଥିଲେ ବି ତାହା ତା'ର ଦେହ ଓଜନର ଏକ ଛୋଟିଆ ଅଂଶ ମାତ୍ର ହୁଏ ।

ସଂଚାରୀର ଆୟୁଷ ଶକ୍ତିର ଉତ୍ସ, ସଙ୍କେତର ସ୍ପନ୍ଦନର ବେଗ ଏବଂ ପୂରା ଯନ୍ତ୍ରର ଓଜନ ଉପରେ ନିର୍ଭର କରେ । ହାତୀ କ୍ଷେତ୍ରରେ ଏଭଳି ବେତାର ବେକପଟି ତିନିବର୍ଷ ଯାଏଁ ରହିବା କଥା । କିନ୍ତୁ ବେଳେବେଳେ ତାହା ସାଢ଼େ ତିନିବର୍ଷ ଯାଏଁ ରହିବାର ବି ଦେଖାଯାଇଛି ।



Digitized by srujanika@gmail.com

## ଏସୀୟ ହାତୀ ଗବେଷଣା ଏବଂ ସଂରକ୍ଷଣ କେନ୍ଦ୍ର

ଏସୀୟ ହାତୀ ଗବେଷଣା ଏବଂ ସଂରକ୍ଷଣ କେନ୍ଦ୍ର ଏକ ସ୍ୱାଧୀନ ଅନୁଷ୍ଠାନ । ଏହା ଏସିଆରେ ହାତୀ ସଂରକ୍ଷଣ ସମସ୍ୟା ଉପରେ ଗବେଷଣା କରେ । ଏହା ଜାତୀୟ ଏବଂ ଆଞ୍ଚଳିକ ପଦକ୍ଷେପ ଯୋଜନା ତିଆରି କରିବାରେ, ହାତୀ ସଂଖ୍ୟା ଗଣନା କରିବାରେ, ହାତୀ-ମଣିଷ ସଂଘର୍ଷ କମାଇବାରେ, ଶିକାର ବନ୍ଦ କରିବା ପାଇଁ ବାଟ ବତାଇବାରେ ସାହାଯ୍ୟ କରେ । ଆଇୟୁସିଏନ/ଏସ୍‌ଏସ୍‌ସି ଏସୀୟ ହାତୀ ବିଶେଷଜ୍ଞ ଦଳଙ୍କ କାମ ପାଇଁ ସହଯୋଗ କରେ । ଏହା ବାଙ୍ଗାଲୋରସ୍ଥ ଇଣ୍ଡିଅନ୍ ଇନ୍‌ଷ୍ଟିଚ୍ୟୁଟ ଅଫ୍ ସାଇନ୍‌ସେସ୍ ଠାରେ ଥିବା ସେଣ୍ଟର ଫର ଇକୋଲୋଜିକାଲ ସାଇନ୍‌ସେସ୍‌ରେ ଅବସ୍ଥିତ ।

ଏହାର ମୁଖ୍ୟ ଉଦ୍ଦେଶ୍ୟ ହେଉଛି -

- ଏସିଆରେ ଥିବା ଅଧିକ ଦିନ ତିଷ୍ଠି ରହିପାରିବାର ସମ୍ଭାବନା ଦେଖାଉଥିବା ହାତୀ ଦଳଙ୍କୁ ଚିହ୍ନଟ କରିବା । ସରକାରୀ ଏବଂ କ୍ଷେତ୍ରୀୟ କାମ ମାଧ୍ୟମରେ ଏହି ହାତୀମାନଙ୍କୁ ସୁରକ୍ଷା ଦେବା ।
- ହାତୀ ଦଳଙ୍କର ଏବଂ ତାଙ୍କ ଆବାସସ୍ଥଳୀର ସୁପରିଚାଳନା ପାଇଁ ଦରକାର ହେଉଥିବା ଉତ୍ତମ, ସଠିକ ତଥ୍ୟ ପାଇବା ପାଇଁ ଗଭୀର ଗବେଷଣା କରିବା ।
- ଜାତୀୟ ସୀମାରେଖା ଭିତରେ ବା ତାହାକୁ ଟପି ବୁଲୁଥିବା ହାତୀପଲଙ୍କର ବିଭିନ୍ନ ସମସ୍ୟାର ସମାଧାନ ଦିଗରେ ବ୍ୟବହାରିକ ଜ୍ଞାନର ଆଦାନପ୍ରଦାନ କରିବା । ଆହୁରି ମଧ୍ୟ ବିଭିନ୍ନ ତାଲିମ କାର୍ଯ୍ୟକ୍ରମ, କର୍ମଶାଳା ମାଧ୍ୟମରେ କର୍ମଚାରୀମାନଙ୍କର ଦକ୍ଷତା ବଢ଼ାଇବା ।
- ହାତୀ ଏବଂ ତା'ର ଆବାସସ୍ଥଳୀ ଉପରେ ପ୍ରକାଶିତ ସବୁ ତଥ୍ୟକୁ ଏକାଠି କରିବା । ବର୍ତ୍ତମାନ ଏହା ବହୁତ ଗୁରୁତ୍ୱପୂର୍ଣ୍ଣ କାରଣ ହାତୀ ଉପରେ ଏବେ ପ୍ରାୟ ସବୁଆଡ଼େ ଗବେଷଣା ଚାଲିଛି ଏବଂ ପୁସ୍ତକ ପ୍ରକାଶନ ମଧ୍ୟ ବଢ଼ିଛି ।

## ବମ୍ବେ ନାଚୁରାଲ ହିଷ୍ଟ୍ରି ସୋସାଇଟି, ମୁମ୍ବାଇ

ଭାରତୀୟ ଉପମହାଦେଶର ପ୍ରକୃତି ସଂରକ୍ଷଣ ଗବେଷଣାରେ ଲାଗିଥିବା ସବୁଠାରୁ ବଡ଼ ବେସରକାରୀ ସଂସ୍ଥା ହେଉଛି ବମ୍ବେ ନାଚୁରାଲ ହିଷ୍ଟ୍ରି ସୋସାଇଟି । ଗତ ୧୧୭ ବର୍ଷର କାର୍ଯ୍ୟକାଳ ଭିତରେ ଏହାର ମୁଖ୍ୟ ଉଦ୍ଦେଶ୍ୟ ରହିଛି ଭାରତର ପ୍ରାକୃତିକ ସମ୍ପଦର ସଂରକ୍ଷଣ, ପରିବେଶ ସୁରକ୍ଷା ଏବଂ ପ୍ରାକୃତିକ ସମ୍ପଦର ସୁବିନିଯୋଗ ଜରିଆରେ ଭବିଷ୍ୟତ ବଂଶଧରଙ୍କ ପାଇଁ ଏକ ସନ୍ତୁଳିତ ଏବଂ ସୁସ୍ଥ ବିକାଶ ଧାରା ଗଢ଼ିବା । ସୋସାଇଟିର ମୂଳ ନୀତି ହେଉଛି ସଂରକ୍ଷଣ ସବୁବେଳେ ବୈଜ୍ଞାନିକ ଗବେଷଣା ଆଧାରିତ ହେବା ଉଚିତ । ଏହି ପରମ୍ପରାର ଗୋଟିଏ ବଡ଼ ଉଦାହରଣ ହେଉଛି ଏହା ଭୂତପୂର୍ବ ସଭାପତି ଡଃ ସଲିମ ଅଲ୍ଲୀଙ୍କର କାର୍ଯ୍ୟଧାରା । ବିଏନ୍‌ଏଚ୍‌ଏସ୍‌ର କେତେକ ମୁଖ୍ୟ ହାତୀ ଗବେଷଣା ପ୍ରକଳ୍ପ ହେଉଛି -

- କେତେକ ବିପନ୍ନ ବନ୍ୟପ୍ରାଣୀ ଏବଂ ସେମାନଙ୍କ ଆବାସସ୍ଥଳୀ ଉପରେ ଗବେଷଣା: ଏସୀୟ ହାତୀ(୧୯୮୦-୧୯୮୭) ।
- ଏସୀୟ ହାତୀର ପରିସ୍ଥିତିକୀ/ହାତୀର ବେତାର ଦୂରମିତି ଗବେଷଣା (୧୯୮୭-୧୯୯୨) ।

## ୱାଇଲ୍‌ଡ ଲାଇଫ ଇନ୍‌ଷ୍ଟିଚ୍ୟୁଟ ଅଫ୍ ଇଣ୍ଡିଆ, ଡେରାଡୁନ

ୱାଇଲ୍‌ଡ ଲାଇଫ ଇନ୍‌ଷ୍ଟିଚ୍ୟୁଟ ଅଫ୍ ଇଣ୍ଡିଆ ୧୯୮୨ ମସିହାରେ ସ୍ଥାପିତ ହୋଇଥିଲା । ନିରପେକ୍ଷ ବ୍ୟକ୍ତିଙ୍କୁ ସଂରକ୍ଷଣ ଦିଗରେ ତାଲିମ ଦେବା, ସଂରକ୍ଷଣ କ୍ଷେତ୍ରରେ ଗବେଷଣା କରିବା ଏବଂ ପରାମର୍ଶ ଦେବା ହେଉଛି ଏହାର ମୂଳ ଲକ୍ଷ । ଡବ୍ଲୁଆଇଆଇ ଦେଶର ବିଭିନ୍ନ ଜୈବଭୌଗଳିକ ଅଞ୍ଚଳରେ ଗବେଷଣା କରୁଛି । ଏମାନଙ୍କର ଅଧିକାଂଶ ଗବେଷଣା ଜୀବଜାତି ନିର୍ଦ୍ଦିଷ୍ଟ । ହାତୀ ସଂରକ୍ଷଣ ଏବଂ ତା'ର ଆବାସସ୍ଥଳୀ ଉପରେ ଡବ୍ଲୁଆଇଆଇ ତରଫରୁ କରାଯାଇଥିବା କିଛି ଗବେଷଣା ହେଉଛି -

- ମେଘାଳୟର ଗାରୋ ପର୍ବତରେ ହାତୀ, ସେମାନଙ୍କ ଆବାସସ୍ଥଳୀ ଏବଂ ହାତୀ-ମଣିଷ ସଂଘର୍ଷର ମୂଲ୍ୟାୟନ ପାଇଁ ଏକ ସର୍ବେକ୍ଷଣ
- ଉତ୍ତରପ୍ରଦେଶର ରାଜାଜୀ କରବେଟ୍ ଜାତୀୟ ଉଦ୍ୟାନରେ ବଡ଼ ତୃଣଭୋଜୀ, ଆବାସସ୍ଥଳୀ ଏବଂ ମଣିଷ ଭିତରେ ଥିବା ସମ୍ପର୍କ
- ବିହାରର ସିଂହଭୂମି ଅଞ୍ଚଳରେ ହାତୀର ଆବାସସ୍ଥଳୀ ଉପରେ ବିଖଣ୍ଡନ, ଖଣିକାମ ଏବଂ ଅନ୍ୟ ବିଶୃଙ୍ଖଳାର ପ୍ରଭାବର ମୂଲ୍ୟାୟନ
- ମୋତିଚୁର ଅଞ୍ଚଳର ଖଣ୍ଡଗାଁ ଧାରରେ ହାତୀ ଏବଂ ବାରହା ପ୍ରତିରୋଧୀ ବିଦ୍ୟୁତ ବାଡ଼ ତିଆରି
- ପଶ୍ଚିମବଙ୍ଗରେ ହାତୀ ଦଳର ପରିଚାଳନା

## ୱାଇଲ୍‌ଡ ଲାଇଫ ପ୍ରୋଟେକସନ ସୋସାଇଟି ଅଫ୍ ଇଣ୍ଡିଆ, ଦିଲ୍ଲୀ

ୱାଇଲ୍‌ଡ ଲାଇଫ ପ୍ରୋଟେକସନ ସୋସାଇଟି ଅଫ୍ ଇଣ୍ଡିଆ ୧୯୯୪ରେ ପ୍ରତିଷ୍ଠା କରାଯାଇଥିଲା । ଏହାର ମୂଳ ଉଦ୍ଦେଶ୍ୟ ହେଉଛି ଭାରତରେ ବନ୍ୟପ୍ରାଣୀ ସଙ୍କଟ ଦୂର କରିବା, ବିଶେଷ କରି ବନ୍ୟପ୍ରାଣୀଙ୍କର ବେଆଇନ ବାଣିଜ୍ୟ ବନ୍ଦ କରିବା ଦିଗରେ ସହଯୋଗ ଏବଂ ତଥ୍ୟ ଯୋଗାଇବା । ଏହା ଭାରତ ସରକାରଙ୍କ ଦ୍ୱାରା ଅନୁମୋଦିତ ଏକ ପଞ୍ଜିକୃତ ଅଣବ୍ୟବସାୟିକ ଅନୁଷ୍ଠାନ ।

ଡବ୍ଲୁଏସ୍‌ଆଇ ୟୁଏସ୍ ଫିସ୍ ଆଣ୍ଡ ୱାଇଲ୍‌ଡ ଲାଇଫ ସର୍ଭିସର ସହାୟତାରେ ବାଘ, ହାତୀ, ଗଣ୍ଡା, କସ୍ତୁରୀ ମୃଗ ଏବଂ ଭାଲୁ ଭଳି ଜୀବଙ୍କ ବେଆଇନ ଶିକାର ଓ ବାଣିଜ୍ୟ ଉପରେ ଏକ ତଥ୍ୟାଧାର ପ୍ରସ୍ତୁତ କରିଛନ୍ତି । ଭାରତୀୟ ହାତୀ ଶିକାର ଏବଂ ହାତୀଦାନ୍ତ ବ୍ୟବସାୟ ଉପରେ ମଧ୍ୟ ସେମାନେ ଏକ ପ୍ରକଳ୍ପ କରିଥିଲେ ।



Digitized by srujanika@gmail.com

ଅଧିକାଂଶ ଜଙ୍ଗଲ ଶିବିରରେ ସବୁ ବୟସର ମାଈ ଓ ଅଣ୍ଡିରା ହାତୀଙ୍କୁ ଏକାଠି ମିଶାଇ ଦିଆଯାଏ । ରାତିରେ ସେମାନଙ୍କୁ ଜଙ୍ଗଲରେ ଛାଡ଼ି ଦିଆଯାଏ, ଯେପରି ସେମାନେ ଖାଇପାରିବେ । ବେଳେବେଳେ ମାଈ ହାତୀର ଜଙ୍ଗଲୀ ଅଣ୍ଡିରା ହାତୀ ସହ ମିଳନ ହେବାର ବି ଜଣାଅଛି ।

## ସଂଘର୍ଷର ପରିଚାଳନା

ହାତୀ ମଣିଷ ଭିତରେ ସଂଘର୍ଷ ବଢୁଥିବାରୁ ଏବେ ହାତୀକୁ ଗୋଟିଏ କ୍ଷତିକାରକ ଜନ୍ତୁ ବୋଲି ଗଣା ଯାଉଛି । ଭାରତରେ ପ୍ରତି ବର୍ଷ ହାତୀ ଯୋଗୁଁ ପ୍ରାୟ ୧୦୦ରୁ ୨୦୦ ଲୋକ ମରୁଛନ୍ତି । ଏହି ସମସ୍ୟା ଦୂର କରିବାର ଗୋଟିଏ ମୁଖ୍ୟ ଉପାୟ ହେଉଛି ମଣିଷ ଜନବସତି ଭିତରକୁ ହାତୀ ନପଶିବାର ବାଟ କରିବା ।

ଏହି ସଂଘର୍ଷକୁ ଦୂର କରିବା ପାଇଁ ବିଭିନ୍ନ ପଦକ୍ଷେପ ନିଆଯାଇ ପାରେ । ସେଗୁଡ଼ିକ ଭିତରୁ କିଛି ହେଉଛି -

## ମଣିଷର ନିୟନ୍ତ୍ରିତ ଜମି ବ୍ୟବହାର

ସଂଘର୍ଷ ଦୂରକରିବାର ଗୋଟିଏ ବାଟ ହେଉଛି ମଣିଷର ଜମି ବ୍ୟବହାର ଢାଞ୍ଚା ବଦଳାଇବା । ହାତୀର ଆବାସସ୍ଥଳୀ ପାଖରେ ଚାଷ ନ କରିବା କିମ୍ବା ସେଠାରେ ଫସଲ ବଦଳାଇ ଦେବା । ସଂରକ୍ଷିତ ଅଞ୍ଚଳ ଚାରିପଟେ ବାଡ଼ଦେବା ବା ହାତୀକୁ ଆକର୍ଷିତ କରୁନଥିବା ଫସଲ ଲଗାଇବା ।

ଆଉ ଏକ ଗୁରୁତ୍ୱପୂର୍ଣ୍ଣ କଥା ହେଉଛି, ମଣିଷ ବି ହାତୀର ଆବାସସ୍ଥଳୀ ଭିତରକୁ ଯେପରି ମାଡ଼ି ନଯାଏ । ମଧ୍ୟପ୍ରଦେଶ, ଉତ୍ତର ପଶ୍ଚିମବଙ୍ଗ ଏବଂ ପଶ୍ଚିମ ବିହାରରେ ଜଙ୍ଗଲ ସବୁ ଛୋଟ ଛୋଟ ଖଣ୍ଡରେ ରହିଛି । ଏସବୁ ଜାଗାରେ ହାତୀ ଗୋଟିଏ ଜଙ୍ଗଲରୁ ଆଉ ଗୋଟିଏ ଜଙ୍ଗଲକୁ ଗଲାବେଳେ ମଣିଷର ଧନଜୀବନ କ୍ଷତି କରେ । ତେଣୁ ଏସବୁ ଅଞ୍ଚଳରୁ ମଣିଷଙ୍କୁ ଦୂରରେ ରଖିବା ଉଚିତ ।

ଯଦି କୌଣସି ଅଞ୍ଚଳରେ ପାଣି ନଥାଏ ତେବେ ହାତୀ ସେ ଜାଗା ପସନ୍ଦ କରିବ ନାହିଁ । ଜନ୍ତୁଟି ସହିତ ସଂଘର୍ଷ କମାଇବା ପାଇଁ ଅତି କମରେ ୧ କି.ମି. ଅଞ୍ଚଳ ହାତୀକୁ ନ ସୁହାଇଲା ଭଳି ରଖିବା ଦରକାର । ଚା, ତେଲବୀଜ ଭଳି ହାତୀ ନ ଖାଉଥିବା ଫସଲ ଲଗାଇଲେ ଭଲ । ଏସବୁ ଉପାୟ କାଗଜ କଲମରେ ଭଲ କାମକରେ, କିନ୍ତୁ ପ୍ରକୃତ କ୍ଷେତ୍ରରେ ଏହା ପ୍ରାୟ କରିହୁଏ ନାହିଁ ।

## ବିଦ୍ୟୁତ ପ୍ରବାହିତ ତାର ବାଡ଼

ଏହି ଉପାୟ ବହୁଳ ଭାବରେ ପ୍ରଥମେ ମାଲେସିଆରେ ଆରମ୍ଭ କରାଗଲା ଏବଂ ଏହା ଯେ ସବୁଠାରୁ ଶସ୍ତା ଏବଂ ଫଳପ୍ରଦ ଉପାୟ ସେଥିରେ ସନ୍ଦେହ ନାହିଁ । ଏଥିରେ ମାଟି ଉପରୁ ଗୋଟିଏ ନିର୍ଦ୍ଦିଷ୍ଟ ଉଚ୍ଚତାରେ, ପ୍ରାୟ ୧-୨ ମିଟର ଉପରେ, ଧାଡ଼ିଏ ବା ଦୁଇ ଧାଡ଼ି ଲୁହା ତାର ବିଦ୍ୟୁତରୋଧି ଯୋଡ଼େଇ ସାହାଯ୍ୟରେ କାଠ ଖୁଣ୍ଟିରେ ଲଗାଯାଇଥାଏ । ସେହି ତାର ଗୋଟିଏ ଶକ୍ତି ପ୍ରେରକ (*ଏନର୍‌ଜାଇଜର*) ସହିତ ଯୋଡ଼ା ହୋଇଥାଏ । ଏହା ସେହି ତାରରେ ପ୍ରତି ସେକେଣ୍ଡରେ ଥରେ କରି ୫୦୦୦ ଭୋଲ୍‌ଟର ବିଦ୍ୟୁତ ତରଙ୍ଗ ଛାଡ଼ିଥାଏ । ପ୍ରତି ଥରର ବିଦ୍ୟୁତ ପ୍ରବାହ ସେକେଣ୍ଡର ଦଶହଜାର ଭାଗରୁ ୩ଭାଗ ସମୟ ପାଇଁ ଚାଲିଥାଏ । ଜନ୍ତୁଟି ତାରକୁ ଛୁଇଁଲେ ତାକୁ ଜୋର ଝଟକା ଲାଗେ, କିନ୍ତୁ ତାହା ଅତି କମ୍ ସମୟ ପାଇଁ ରହୁଥିବାରୁ ସେ ମରେ ନାହିଁ । ଏପରିକି ବଡ଼ ଆଘାତ ବି ସେ ପାଏ ନାହିଁ ।

## ହାତୀ ଖାଇ

ହାତୀ ଆବାସର ଚାରିପଟେ ଖାଇ ଖୋଳି ହାତୀକୁ ଅଟକାଯାଇପାରେ । କିନ୍ତୁ ଏଗୁଡ଼ିକ ଟାଣ ମାଟିରେ ଖୋଳାଯିବା ଦରକାର ଏବଂ ଏଗୁଡ଼ିକର ନିୟମିତ ରକ୍ଷଣାବେକ୍ଷଣ ଜରୁରୀ । ନହେଲେ ହାତୀ ତାକୁ ଟପିବାର ବାଟ କରିଦେବେ । ହାତୀକୁ ଅଟକାଇବା ପାଇଁ ଖାଇଗୁଡ଼ିକ ୨ ମି. ଗଭୀର, ଉପରେ ୨ ମି. ଓ ତଳେ ୧.୫ ମି. ଚଉଡ଼ା ହେବା ଦରକାର ।

ଖାଇର ଗୋଟିଏ ଅସୁବିଧା ହେଉଛି ଯେ ନରମ ମାଟି ଜାଗାରେ ବର୍ଷାଦିନେ ଏହା ପୋତି ହୋଇଯାଏ ଏବଂ ରକ୍ଷଣାବେକ୍ଷଣର ମୂଲ୍ୟ ବହୁତ ବେଶୀ ହୁଏ । କିନ୍ତୁ ଖାଇ ଖୋଳିବା ଓ ତା'ର ରକ୍ଷଣାବେକ୍ଷଣ ହାତୀ ଆବାସସ୍ଥଳୀ ପାଖର ଲୋକମାନଙ୍କୁ କାମ ଯୋଗାଇ ପାରିବ ।

## ରାସାୟନିକ ବିକର୍ଷଣକ

ହାତୀ ଅଟକାଇବା ପାଇଁ ଏଗୁଡ଼ିକର ପ୍ରୟୋଗ ଉପରେ ପରୀକ୍ଷା କରାଯାଇଥିଲା, କିନ୍ତୁ ତାହା ବିଶେଷ ଫଳପ୍ରଦ ହେଲାନାହିଁ । ବାଘର ପରିସ୍ରାକୁ ନେଇ ଏଭଳି ଚେଷ୍ଟାରୁ କିଛି ଲାଭ ମିଳିଲା ନାହିଁ ।

## କୁଙ୍କିଙ୍ଗ୍

କୁଙ୍କିଙ୍ଗ୍ ହେଉଛନ୍ତି ତାଲିମପ୍ରାପ୍ତ ପୋଷା ହାତୀ । ଜନବସତି ପାଖର ଜଙ୍ଗଲରୁ ହାତୀଙ୍କୁ ତଡ଼ିବା

## ଏସୀୟ ହାତୀ ବିଶେଷଜ୍ଞ ଦଳ

ଆଇୟୁସିଏନ-ଦି *ୱାର୍ଲ୍ଡ କନଜରଭେସନ ୟୁନିଅନ* ହେଉଛି ପୃଥିବୀର ସବୁଠାରୁ ବଡ଼ ସଂରକ୍ଷଣ ସମ୍ପର୍କିତ ଅନୁଷ୍ଠାନ । ଏହା ଛଅଟି ବିଶେଷଜ୍ଞ କମିଶନ ବସାଇଛନ୍ତି । ଏମାନେ ସଂରକ୍ଷଣର କିଛି ନିର୍ଦ୍ଦିଷ୍ଟ ଦିଗ ଉପରେ ଜୋର ଦିଅନ୍ତି ।

ଏମାନଙ୍କ ଭିତରୁ *ସ୍ପିସିଜ୍ ସରଭାଇଭାଲ କମିଶନ* (ଏସଏସସି) ହେଉଛି ସବୁଠାରୁ ବଡ଼ । ଏହାର ୭୦୦୦ ସ୍ୱେଚ୍ଛାସେବୀଙ୍କ ଭିତରେ ଅଛନ୍ତି ୧୭୯ ଦେଶର ଗବେଷକ, ସରକାରୀ କର୍ମଚାରୀ ଏବଂ ପ୍ରମୁଖ ସଂରକ୍ଷଣ କର୍ମୀ । ଏସଏସସି ନୀତି ନିର୍ଦ୍ଧାରଣକାରୀଙ୍କୁ ବୈଜ୍ଞାନିକ ତଥ୍ୟ ଯୋଗାଇ ଦିଅନ୍ତି । ଏହାକୁ ଆଧାର କରି ସେମାନେ ନୀତି ନିର୍ଦ୍ଧାରଣ କରିପାରିବେ ଏବଂ ସଂରକ୍ଷଣ ପାଇଁ ସମ୍ବଳ ବାଣ୍ଟିପାରିବେ । ବିଭିନ୍ନ ସଂରକ୍ଷଣ ପ୍ରକଳ୍ପ ପାଇଁ ଏମାନେ ବୈଷୟିକ ଦିଗ୍‌ଦର୍ଶନ ଦେଇଥା'ନ୍ତି ।

ଏସୀୟ ହାତୀ ବିଶେଷଜ୍ଞ ଦଳ (ଏଇଏସଜି) ହେଉଛି ଏସଏସସିର ଗୋଟିଏ ବିଶେଷଜ୍ଞ ଦଳ । ପ୍ରାୟ ୧୧୦ଟି ବିଶେଷଜ୍ଞ ଦଳ ମିଶି ଏସଏସସି ଗଢ଼ା । ପ୍ରତି ବିଶେଷଜ୍ଞ ଦଳ କୌଣସି ନିର୍ଦ୍ଦିଷ୍ଟ ଗଛ ବା ପ୍ରାଣୀ ଉପରେ କାମ କରନ୍ତି । ବିପଦର କାରଣ ଖୋଜି ତା'ର ନିରାକରଣ ପାଇଁ ବାଟ ବାହାର କରନ୍ତି । ଏଇଏସଜିର ମୁଖ୍ୟ ଉଦ୍ଦେଶ୍ୟଗୁଡ଼ିକ ହେଲା-

- ଏସୀୟ ହାତୀର ବିଭିନ୍ନ ବିପଦ ଉପରେ ସବୁ ତଥ୍ୟ ଏକାଠି କରିବା
- ବିଭିନ୍ନ ଦେଶ ଭିତରେ ଜ୍ଞାନ ଏବଂ ଦକ୍ଷତାର ଆଦାନ ପ୍ରଦାନ ମାଧ୍ୟମରେ ହାତୀ ମଣିଷ ସଂଘର୍ଷ ଯୋଗୁଁ ସୃଷ୍ଟି ହେଉଥିବା ସମସ୍ୟାର ସମାଧାନ ଖୋଜିବା
- ହାତୀ ଏବଂ ତା'ର ଆବାସସ୍ଥଳୀର ସୁରକ୍ଷା ପାଇଁ ହେଉଥିବା ବିଭିନ୍ନ କାର୍ଯ୍ୟକ୍ରମରେ ଭାଗ ନେବା ପାଇଁ ଏସୀୟ ହାତୀଥିବା ଦେଶମାନଙ୍କୁ ପ୍ରବର୍ତ୍ତାଇବା

ଏଇଏସଜି ୧୯୭୦ ଦଶକରୁ ହାତୀଙ୍କ ବିସ୍ତାରକୁ ନେଇ ମାନଚିତ୍ର ମଧ୍ୟ ପ୍ରସ୍ତୁତ କରିଛନ୍ତି ।



Digitized by srujanika@gmail.com

ପାଇଁ ଏବଂ ଜଙ୍ଗଲରେ ହାତୀପଲଙ୍କୁ ଗୋଡ଼ାଇବା ପାଇଁ ଏମାନଙ୍କୁ ବ୍ୟବହାର କରାଯାଏ । ୧୯୮୦ ମସିହାରେ ପ୍ରଥମେ କୁଙ୍କିଙ୍କୁ ଯୋଜନାବଦ୍ଧ ଭାବରେ ଏହି କାମରେ ଲଗାଗଲା । ଏମାନଙ୍କୁ ମୁଖ୍ୟତଃ ଦିନବେଳା ବ୍ୟବହାର କରାଯାଏ ।

### ଉଚ୍ଚ ଶବ୍ଦ

କେତେକ ଗାଁ ବାଲା ଜୋର ଶବ୍ଦ କରି ହାତୀଙ୍କୁ ତଡ଼ିବା ପାଇଁ ଚେଷ୍ଟା କରିଛନ୍ତି । ବିଶ୍ୱାସ କରାଯାଏ ଯେ ବିଦ୍ୟୁତ ତାରବାଡ ସହ ଉଚ୍ଚ ଜୋର ଶବ୍ଦ ହାତୀଙ୍କୁ ରୋକିବାରେ ସଫଳ ହୋଇଛି ।

ଭାରତର କେତେ ଅଞ୍ଚଳରେ, ଚାଷୀମାନେ ହାତୀଙ୍କୁ ଡରାଇବା ପାଇଁ ବାଣ ବ୍ୟବହାର କରନ୍ତି । କିନ୍ତୁ ଏବେ ହାତୀ ବାଣକୁ ଡରୁନଥିବାରୁ ଏହି ଉପାୟ ଆଉ କାମ ଦେଉନାହିଁ ।

### ହାତୀ ଧରା

ଯେଉଁଠି ଅଳ୍ପ ସଂଖ୍ୟକ ହାତୀ ସବୁବେଳେ ଆସି ଲୋକମାନଙ୍କୁ ହଇରାଣ କରୁଛନ୍ତି, ସେଠାରେ ହାତୀଙ୍କୁ ଧରି ଅନ୍ୟ କେଉଁଠି ଛଡ଼ାଯାଇପାରେ ବା ପୋଷା ମନାଇ କାମରେ ଲଗାଯାଇପାରେ ।

ଯେଉଁ ଅଞ୍ଚଳର ବିକାଶ କରାଯାଉଛି ବା ଯେଉଁଠି ହାତୀ ବହୁତ ହଇରାଣ କରୁଛନ୍ତି ସେଠାରୁ ବି ହାତୀଙ୍କୁ ସ୍ଥାନାନ୍ତର କରାଯାଇପାରେ । ଏଥିପାଇଁ ଠିକ ଭାବରେ ଯୋଜନା କରିବା ଦରକାର । ଉପଯୁକ୍ତ ଚଲାପଥରେ ଏମାନଙ୍କୁ ନେଇଗଲା ପରେ ବାଡ଼ ପକାଇ ତାହାକୁ ବନ୍ଦ କରିବାକୁ ହେବ । ଯେପରି ସେମାନେ ଆଉ ସେ ବାଟରେ ଫେରି ପାରିବେ ନାହିଁ । କିନ୍ତୁ ଦେଖାଯାଇଛି ଯେ ଏହା ସାଧାରଣତଃ କାମ ଦିଏନାହିଁ । ତଡ଼ା ହୋଇଥିବା ହାତୀ ପ୍ରାୟ ତା'ର ନିଜ ଜାଗାକୁ ଫେରିଯାଏ ।

### କ୍ଷତିପୂରଣ

କ୍ଷତିପୂରଣ ବା ବୀମା ହାତୀ-ମଣିଷ ସଂଘର୍ଷର ଏକ ସମାଧାନ ନୁହେଁ । କିନ୍ତୁ ଜୀବନ/ସମ୍ପତ୍ତି ନଷ୍ଟ ହେଲେ ଏହା ଦେବାକୁ ହିଁ ହେବ । କ୍ଷତିଗ୍ରସ୍ତ ଲୋକମାନଙ୍କୁ ଏହା କିଛି ପରିମାଣରେ ସାହାଯ୍ୟ କରିବ । ଏହି ଯୋଜନାକୁ କିନ୍ତୁ ଠିକ ଭାବରେ ଏବଂ ଫଳପ୍ରଦ ଭାବରେ କାର୍ଯ୍ୟକାରୀ କରାଯିବା ଦରକାର । କିନ୍ତୁ ବେଳେବେଳେ ସତ ଘଟଣା ଏବଂ ମିଛ ଦାବି ଭିତରେ ଫରକ ଜାଣିବା କଷ୍ଟକର ହୋଇପଡ଼େ ।

ହାତୀ ସହ ସଂଘର୍ଷରେ ଅନେକ ରାଜ୍ୟରେ କ୍ଷତିପୂରଣ ଦିଆଯାଏ । ପଶ୍ଚିମବଙ୍ଗରେ ଏହି କ୍ଷତିପୂରଣ ଯୋଜନା ୧୯୭୬ ମସିହାରେ ଆରମ୍ଭ କରାଗଲା । ଯୋଜନା ଆରମ୍ଭ ବେଳେ ସରକାର ସ୍ଥିର କଲେ ଯେ କେବଳ ମଣିଷର ମୃତ୍ୟୁ ବା ଆଘାତ ଏବଂ ଫସଲ ନଷ୍ଟ ପାଇଁ କ୍ଷତିପୂରଣ ଦିଆଯିବ । ଏହି ଯୋଜନା ୧୯୮୬ରେ ବଦଳାଗଲା ଏବଂ ଜୀବଜନ୍ତୁଙ୍କ ପାଇଁ ମଧ୍ୟ କ୍ଷତିପୂରଣ ଦିଆଗଲା । ୧୯୯୬ ମସିହାଠାରୁ କ୍ଷତିପୂରଣର ପରିସର ବଢ଼ିଯାଇଛି ଏବଂ ଏବେ ହାତୀ ଦ୍ୱାରା ଭାଙ୍ଗିଥିବା ଘର ପାଇଁ ବି କ୍ଷତିପୂରଣ ଦିଆଯାଉଛି ।

### ଦୁଷ୍ଟ ହାତୀକୁ ଦୂରେଇବା

ମାଈ ହାତୀ ତୁଳନାରେ ଅଣ୍ଡିରା ହାତୀ ଫସଲ ବେଶୀ ନଷ୍ଟ କରେ ଏବଂ ବେଶୀ ମଣିଷ ମାରେ । ବେଳେ ବେଳେ ଅଣ୍ଡିରା ହାତୀ କରିଥିବା କ୍ଷତି ଅନେକ ବେଶୀ ହୋଇଥାଏ । ଏଭଳି କ୍ଷେତ୍ରରେ ସରକାର ହାତୀକୁ ଧରିନେବା ବା ମାରିଦେବା ପାଇଁ ନିଷ୍ପତ୍ତି ନିଅନ୍ତି ।

### ହାତୀ ପ୍ରତିଷ୍ଠାନର ସୃଷ୍ଟି

ହାତୀ ଧରିବା, ତାଲିମଦେବା ଓ ରକ୍ଷଣାବେକ୍ଷଣାର ଦକ୍ଷତା ଥିବା କେତେକ ପ୍ରତିଷ୍ଠାନ ଭାରତରେ ଏବେ ଅଛି । ତଥାପି ଆହୁରି ଅନେକ ଦରକାର ।

### ଶିକାର ବନ୍ଦ ପାଇଁ ପଦକ୍ଷେପ

ଭାରତରେ ହାତୀ ଶିକାର ଗୋଟିଏ ବଡ଼ ବିପଦ । ଉତ୍ତମ ଯୋଜନା ଏବଂ ଶିକାର ବନ୍ଦ ପଦକ୍ଷେପ ଦ୍ୱାରା ସ୍ୱଳ୍ପକାଳୀନ ହାତୀ ପରିଚାଳନା ସମ୍ଭବ ହୋଇପାରିବ । ଏହି ପଦକ୍ଷେପ ରାଜ୍ୟ ସ୍ତରରେ ନିଆଯିବା ଦରକାର । ଏସୀୟ ହାତୀ ଗବେଷଣା ଏବଂ ସଂରକ୍ଷଣ କେନ୍ଦ୍ର ଦ୍ୱାରା ଏଥିପାଇଁ କରାଯାଇଥିବା କେତୋଟି ସୁପାରିଶ ହେଉଛି -

- ଶିକାରକୁ ଏକ ବଡ଼ ସମସ୍ୟା ବୋଲି ଗଣାଯିବା ଉଚିତ । ତାହା ରୋକିବା ପାଇଁ ଜଙ୍ଗଲ ବିଭାଗକୁ ଆର୍ଥିକ ସହାୟତା, ତାଲିମ, ଯନ୍ତ୍ରପାତି ଆଦି ଦେଇ ଦକ୍ଷ କରଯିବା ଦରକାର ।
- ଜଙ୍ଗଲରେ ଥିବା ଶିକାର ବନ୍ଦ ଦଳକୁ ଯଥେଷ୍ଟ ପରିମାଣର ଅସ୍ତ୍ରଶସ୍ତ୍ର, ଗୁଳିବାରୁଦ, ଯୋଗାଯୋଗ ବ୍ୟବସ୍ଥା ଏବଂ ଗାଡ଼ି ଯୋଗାଇବା ଜରୁରୀ ।
- ସେ ଅଞ୍ଚଳକୁ ଭଲଭାବରେ ଜାଣିଥିବା ତାଲିମପ୍ରାପ୍ତ ଆଗ୍ରହୀ ଉତ୍ସାହୀ ଶିକାର ବନ୍ଦ କରିବା ପାଇଁ ବହୁତ ଆବଶ୍ୟକ ।
- ଜଙ୍ଗଲ ବିଭାଗର କିଛି କାର୍ଯ୍ୟକ୍ରମରେ ଶିକାରଙ୍କ ଗତିବିଧି ଜାଣିବା ପାଇଁ ଗୁପ୍ତଚର ରଖିବା ଦରକାର । ଏଥିପାଇଁ ଜଙ୍ଗଲ ବିଭାଗକୁ ଉଭୟ ତାଲିମ ଏବଂ ଆର୍ଥିକ ସାହାଯ୍ୟ ଦେବା ଆବଶ୍ୟକ ।
- ବେଳେ ବେଳେ ଶିକାର ଘଟଣାକୁ ଚପାଇ ଦେବାପାଇଁ ହାତୀର ଶବକୁ ପୋଡ଼ିଦିଆଯାଏ । ଦେଖିବା ସାଙ୍ଗେ ସାଙ୍ଗେ ହାତୀର ଶବକୁ ଦକ୍ଷଲୋକଙ୍କ ଦ୍ୱାରା ପରୀକ୍ଷା କରାଯିବା ଉଚିତ । ଏହା ଫଳରେ ଶିକାରୀଙ୍କୁ ଚିହ୍ନଟ କରିବା ସହଜ ହୋଇପାରେ ।

ହାତୀଦାନ୍ତ ଜିନିଷର ଚାହିଦା କମାଇଲେ ହିଁ ହାତୀ ଶିକାର କମିବ । ଲୋକମାନେ ବୁଝିବା ଦରକାର ଯେ ହାତୀ ଦାନ୍ତର ଜିନିଷ ବ୍ୟବହାର କରିବା ଫଳରେ ହାତୀ ଅଧିକ ସଂଖ୍ୟାରେ ମରୁଛନ୍ତି ଏବଂ ସେମାନଙ୍କ ସଂଖ୍ୟା ଉଦ୍‌ବେଗଜନକ ଭାବରେ କମୁଛି । ଆମ ଦେଶରେ ମରାଯାଉଥିବା ଅଧିକାଂଶ ହାତୀଙ୍କ ଦାନ୍ତ ବାହାର ଦେଶକୁ ଯାଉଛି । ତେଣୁ କେବଳ ଆମ ଦେଶରେ ନୁହେଁ, ଯେଉଁ ଦେଶରେ ଏସବୁର ଚାହିଦା ରହିଛି ସେଠାରେ ବି ଲୋକମାନେ ଏହା ବୁଝିବା ଦରକାର ।

ଶିକାରୀମାନେ ଅଧିକାଂଶ ସମୟରେ ହାତୀ ଖୋଜିବା ଏବଂ ମାରିବାରେ ସ୍ଥାନୀୟ ଲୋକଙ୍କ ଜ୍ଞାନ, ଦକ୍ଷତା ଏବଂ ସହାୟତା ବ୍ୟବହାର କରିଥାନ୍ତି । ଯଦି କୌଣସି ଅଞ୍ଚଳର ଲୋକମାନେ ହାତୀର ମୂଲ୍ୟ ବୁଝିବେ, ତେବେ ସେମାନେ ହାତୀ ଶିକାର ପାଇଁ ସହଯୋଗ କରିବେ ନାହିଁ । ଏହିଭଳି ଏକ ସକାରାତ୍ମକ ପରିବେଶ ସୃଷ୍ଟି ପାଇଁ କିଛି ପଦକ୍ଷେପ ହେଉଛି -

- ଏପରି ଏକ ପରିସ୍ଥିତି ସୃଷ୍ଟି କରିବା ଦରକାର, ଯେଉଁଠି ଲୋକମାନେ ହାତୀକୁ ସେମାନଙ୍କ ଜୀବନ ଓ ଜୀବିକା ପାଇଁ ବିପଦ ବୋଲି ମନେ କରିବେ ନାହିଁ ।
- ଜଙ୍ଗଲ ବିଭାଗର ଅଧିକାରୀ ଏବଂ ସ୍ଥାନୀୟ ଅଧିବାସୀଙ୍କ ଭିତରେ ଉତ୍ତମ ସମ୍ପର୍କ ଓ ସହଯୋଗ ରଖିବା ବିଶେଷ ଜରୁରୀ ।
- ଶିକାର ବନ୍ଦ ଯୋଜନାରେ ସ୍ଥାନୀୟ ଲୋକଙ୍କୁ ସାମିଲ କଲେ ତାହା ଫଳପ୍ରଦ ହେବ ।



Digitized by srujanika@gmail.com

# ହାତୀ ଗଣନା

ସ୍କୁଲର ପିଲାସଂଖ୍ୟା ଗଣନା କରିବା, ତାହେଲେ ପିଲାମାନେ ଜଙ୍ଗଲରେ ହେଉଥିବା ହାତୀ ଗଣନା ବିଷୟରେ ବୁଝିପାରିବେ ।

| | |
|---|---|
| ଉଦ୍ଦେଶ୍ୟ | ପିଲାଙ୍କୁ ସାହାଯ୍ୟ କରିବା -<br>• ଜଙ୍ଗଲରେ ହାତୀ ସଂଖ୍ୟା କିପରି ଗଣନା କରାଯାଏ ତାହା ବୁଝିବାରେ<br>• ସ୍କୁଲରେ 'ଜନଗଣନା'ର ଧାରା ପ୍ରୟୋଗ କରିବାରେ |
| ସ୍ତର | ଉଚ୍ଚତର |
| ବିଷୟ | ବିଜ୍ଞାନ, ଗଣିତ, ଭୂଗୋଳ |
| ଦଳର ଆକାର | ପୂରାଶ୍ରେଣୀ |
| ସ୍ଥାନ | ଶ୍ରେଣୀଗୃହ ବାହାରେ |
| ସମୟ ଅବଧି | ଅଧାଦିନ |
| ସାମଗ୍ରୀ | ଲେଖିବା ଜିନିଷ, ସର୍ବେକ୍ଷଣ ଫର୍ମ |

ଜନଗଣନାର ଇଂରାଜୀ *ସେନ୍‌ସସ୍* ଶବ୍ଦଟି ମୂଳ ଲାଟିନ ଶବ୍ଦ *ସେନ୍‌ସରେରୁ* ଆସିଛି । ଏହାର ଅର୍ଥ ହେଉଛି ହିସାବ କରିବା ବା ମତାମତ ଦେବା । ମଜାର କଥା ହେଉଛି ରୋମାନମାନେ କରଦାତାମାନଙ୍କର ସରକାରୀ ପଞ୍ଜିକରଣ ପାଇଁ ପ୍ରଥମେ ଏହି ଶବ୍ଦଟିକୁ ବ୍ୟବହାର କରିଥିଲେ ।

ଭାରତରେ ପ୍ରତି ଦଶବର୍ଷରେ ଜନଗଣନା କରାଯାଏ । ଜନଗଣନା ତଥ୍ୟର ବହୁତ ମୂଲ୍ୟ ରହିଛି । ଏହି ତଥ୍ୟକୁ ନେଇ ସରକାର ଲୋକଙ୍କ ପାଇଁ ନୂଆ ସୁବିଧା, ନୂଆ କାର୍ଯ୍ୟକ୍ରମ ଏବଂ ଅନ୍ୟ ଯୋଜନାମାନ ସ୍ଥିର କରିଥାନ୍ତି ।

ସାଧାରଣତଃ ଜନଗଣନାରୁ ମିଳିଥିବା ତଥ୍ୟ ସବୁକୁ ସାରଣୀଭୁକ୍ତ କରାଯାଏ । ତା'ପରେ ଏସବୁକୁ ମିଶାଇ ନିର୍ଦ୍ଦିଷ୍ଟ କ୍ରମରେ ବିଭିନ୍ନ ପରିସଂଖ୍ୟାନ ପ୍ରସ୍ତୁତ କରାଯାଏ । ଶେଷରେ ଜନଗଣନା ଦାୟିତ୍ୱରେ ଥିବା ସରକାରୀ ବିଭାଗ ଦ୍ୱାରା ତାହା ପ୍ରକାଶିତ ହୋଇଥାଏ ।

## ବନ୍ୟପ୍ରାଣୀ ଗଣନା

ପ୍ରାଣୀଙ୍କ ଗଣନା ତାଙ୍କର ସଂଖ୍ୟା ଓ ଘନତା ଜଣାଏ । କୌଣସି ନିର୍ଦ୍ଦିଷ୍ଟ ଜୀବଜାତିର ସଂଖ୍ୟାରେ ପରିବର୍ତ୍ତନର ସୂଚନା (ବୃଦ୍ଧି ବା କ୍ଷୟ) ମଧ୍ୟ ଏଥିରୁ ମିଳିଥାଏ । ବଣ୍ୟପ୍ରାଣୀ ଗଣନା ତାଙ୍କର ସଂରକ୍ଷଣ ଓ ପରିଚାଳନା ପାଇଁ ଯୋଜନା କରିବାରେ ବିଶେଷ ସାହାଯ୍ୟ କରେ ।

ଗୋଟିଏ ଉତ୍ତମ ଗଣନା କାର୍ଯ୍ୟ ହେଉଛି ତାହା ଯେଉଁଥିରୁ ଯୁକ୍ତିଯୁକ୍ତ ପରିମାଣର ସମୟ, ଅର୍ଥ ଓ ଲୋକବଳ ବିନିଯୋଗ ସହିତ କୌଣସି ଜୀବର ସଂଖ୍ୟାର ସଠିକ ଏବଂ ସୂକ୍ଷ୍ମ ଆକଳନ କରାଯାଇପାରେ ।

ବଣ୍ୟପ୍ରାଣୀଙ୍କ ସଂଖ୍ୟା ଓ ବୃଦ୍ଧିହାର ଆକଳନ ପାଇଁ କେତେଗୁଡ଼ିଏ ପ୍ରତ୍ୟକ୍ଷ ଓ ପରୋକ୍ଷ ପଦ୍ଧତି କାମରେ ଲଗାଯାଏ । ଏଥିରୁ ଗୋଟିଏ ହେଉଛି ଆଖିଦେଖା ପ୍ରତ୍ୟକ୍ଷ ଗଣନା । ଆଉ କେତେ ଧାରାରେ ଗଣାଯାଉଥିବା ଜନ୍ତୁମାନେ ଛାଡ଼ିଯାଇଥିବା ସୂଚନା, ଯଥା - ମଳ ବା ପାଦଚିହ୍ନ, ସବୁକୁ କାମରେ ଲଗାଇ ସେମାନଙ୍କର ସଂଖ୍ୟା ଆକଳନ କରାଯାଏ ।

ବିଭିନ୍ନ ସମୟରେ କରାଯାଇଥିବା ଗଣନାର ତଥ୍ୟରୁ ସେହି ଜୀବର ସଂଖ୍ୟାରେ ପରିବର୍ତ୍ତନ ଜାଣିହୁଏ । ଜଙ୍ଗଲରେ ଅନେକ ପ୍ରକାରର ପ୍ରାଣୀ ରହନ୍ତି । କିନ୍ତୁ ପ୍ରାଣୀଗଣନା ସବୁବେଳେ ଗୋଟିଏ ନିର୍ଦ୍ଦିଷ୍ଟ ଜାତିର ଜୀବକୁ ହିଁ ତା'ର ଲକ୍ଷରଖେ । କାରଣ ପ୍ରତି ପ୍ରାଣୀ ପାଇଁ ଅଲଗା ଅଲଗା ଧାରା ଦରକାର ହୁଏ ।

## ହାତୀ ଗଣନା

ହାତୀ ଭଳି ବିପନ୍ନ ପ୍ରାଣୀର ଗଣନା ଜନ୍ତୁଟିର ରକ୍ଷଣାବେକ୍ଷଣ ଦିଗରେ ଯୋଜନା କରିବାରେ ସାହାଯ୍ୟ କରେ ।

ଗଣନା କରିବାର ଲକ୍ଷ ଅଲଗା ଅଲଗା ହୋଇପାରେ । ବେଳେବେଳେ କେତେ ହାତୀ ଅଛନ୍ତି ଜାଣିବା ପାଇଁ ଏହା କରାଯାଏ । ଏହି କ୍ଷେତ୍ରରେ ନିର୍ଦ୍ଦିଷ୍ଟ ଅଞ୍ଚଳରେ ଥିବା ମୋଟ ମାଈ ଓ ଅଣ୍ଡିରାଙ୍କ ସଂଖ୍ୟା ଗଣାଯାଏ ।

କେବେ କେବେ ଦଳରେ କେଉଁ ଲିଙ୍ଗର ହାତୀ କେତେ ଅଛନ୍ତି ଓ ତାଙ୍କ ଭିତରେ ସମ୍ପର୍କ ଜାଣିବା ପାଇଁ ଗଣନା କରାଯାଏ । ଏଥିପାଇଁ ବୈଜ୍ଞାନିକମାନେ କିଛି ନିର୍ଦ୍ଦିଷ୍ଟ ସମୟ ପାଇଁ ଦଳର ପିଛା କରନ୍ତି ଏବଂ ତାଙ୍କର ଲକ୍ଷ ଥିବା ମାଈ, ଅଣ୍ଡିରା ବା ଅଳ୍ପବୟସ୍କ ଅଣ୍ଡିରାଙ୍କ ବିଷୟରେ ଜାଣିବାକୁ ଚେଷ୍ଟା କରନ୍ତି ।

ଭୂଇଁରେ ଚାଲି ଚାଲି ବା ଆକାଶମାର୍ଗରୁ ହାତୀ ଗଣନା କରାଯାଇପାରେ । ଭାରତରେ ହାତୀ ଘଞ୍ଚ ଜଙ୍ଗଲ ଭିତରେ ରହୁଥିବାରୁ ଏଠାରେ ଆକାଶ ମାର୍ଗରୁ ଗଣନା କରାଯାଏ ନାହିଁ । ଏଭଳି ପରିସ୍ଥିତିରେ ବି ଶୂନ୍ୟରୁ ଗଣିବା ସମ୍ଭବ ନୁହେଁ । କେବଳ ଖୋଲା ତୃଣଭୂମି ଅଞ୍ଚଳରେ ହିଁ ଏହି ପଦ୍ଧତି କାମ ଦିଏ ।

ମାଟି ଉପରେ ପାଦରେ ଚାଲିଚାଲି କିମ୍ବା ଗାଡ଼ିରେ ବା ହାତୀ ପିଠିରେ ଯାଇ ହାତୀ ଗଣନା କରାଯାଏ । ମଞ୍ଚା ଉପରେ ବସିକରି ମଧ୍ୟ ହାତୀଗଣନା କରାଯାଏ । ବେଳେ ବେଳେ ଏସବୁ ପଦ୍ଧତିକୁ ମିଶାଇ କାମରେ ଲଗାଯାଏ ।

ଭାରତରେ ଅନେକ ବର୍ଷ ଧରି ହାତୀଗଣନା କରାଯାଉଛି । ୧୯୭୦ ଦଶକରୁ ଦେଶର ଅଧିକାଂଶ ଅଞ୍ଚଳରେ ପ୍ରତ୍ୟକ୍ଷ ଗଣନା ପଦ୍ଧତି ହିଁ ବ୍ୟବହାର କରାଯାଉଛି । (ପୃଷ୍ଠା ୯୩ ଦେଖନ୍ତୁ)



Digitized by srujanika@gmail.com

# ଆରମ୍ଭ କରିବା ଆଗରୁ

ଜନଗଣନା କ'ଣ, ବନ୍ୟପ୍ରାଣୀ ଗଣନାର ଆବଶ୍ୟକତା କ'ଣ, ଏସବୁ କରିବାର ବିଭିନ୍ନ ପଦ୍ଧତି ବିଷୟରେ ପିଲାଙ୍କ ସହ ପ୍ରଥମେ ଆଲୋଚନା କର । ପିଲାମାନଙ୍କ କଥାର ସାରାଂଶ ସବୁକୁ କଳାପଟାରେ ଲେଖିରଖ । ଉଦାହରଣ ସ୍ୱରୂପ, ପିଲାଙ୍କ ମତରେ ଜନଗଣନାର ଗୁରୁତ୍ୱ ରହିଛି -

- ଗୋଟିଏ ନିର୍ଦ୍ଦିଷ୍ଟ ଜୀବର ପ୍ରକୃତ ସଂଖ୍ୟା ଜାଣିବାରେ
- ଜନସଂଖ୍ୟା ଆକାର ଏବଂ ଜନସଂଖ୍ୟା ଘନତା ଜାଣିବାରେ
- ଆବାସସ୍ଥଳୀ ବିଷୟରେ ତଥ୍ୟ ସହ ଜନସଂଖ୍ୟାର ସମ୍ପର୍କ ଯୋଡ଼ିବାରେ
- ଯୋଜନା ଏବଂ ପରିଚାଳନାରେ
- ସଂରକ୍ଷଣ ପଦକ୍ଷେପର କାର୍ଯ୍ୟକାରିତା କ୍ଷେତ୍ରରେ
- ମୂଳ ଜୀବଜାତି ଏବଂ ବିପନ୍ନ ପ୍ରାଣୀଙ୍କ ଉପରେ ନିୟମିତ ଦୃଷ୍ଟି ରଖିବାରେ

# ପରଖର ଧାରା

## ଭାଗ କ

ପୂରା ଶ୍ରେଣୀକୁ ଦୁଇଟି ଦଳରେ ଭାଗକର । ପ୍ରଥମ ଦଳଟି ହେବେ ତଥ୍ୟ ସଂଗ୍ରହକାରୀ ଏବଂ ଦ୍ୱିତୀୟ ଦଳଟି ତଥ୍ୟ ସଂକଳନକାରୀ । ପ୍ରତି ଦଳକୁ ପୁଣି ଦୁଇ ତିନି ଜଣିଆ ଦଳରେ ଭାଗକର । ପ୍ରତିଦଳକୁ କ, ଖ, ଗ, ଘ ··· ଏହିପରି ନାଁ ଦିଅ । ଧ୍ୟାନ ଦିଅ ଯେପରି ତଥ୍ୟସଂଗ୍ରହକାରୀ ଦଳ ଓ ତଥ୍ୟ ସଙ୍କଳନକାରୀ ଦଳ ଭିତରେ ସମାନ ସଂଖ୍ୟାର ଛୋଟ ଦଳ ରହିବ ।

ଏହି କାମପାଇଁ ସ୍ୱତନ୍ତ୍ର ଗୁଣଥିବା ମାଧ୍ୟମିକ ଶ୍ରେଣୀର ପିଲାମାନଙ୍କୁ ହାତୀ ଏବଂ ଅନ୍ୟ ପିଲାମାନଙ୍କୁ ଜଙ୍ଗଲର ଅନ୍ୟ ପଶୁ ଭାବରେ ଧରିବେ । ତଥ୍ୟ ସଂଗ୍ରହକାରୀଙ୍କ ସୁବିଧା ପାଇଁ ତିନୋଟି ପ୍ରମୁଖ ଗୁଣ ନିଆଯାଇ ପାରେ । ଉଦାହରଣ ସ୍ୱରୂପ,

| | |
|---|---|
| ମାଈ ହାତୀ | ପଞ୍ଚମ, ଷଷ୍ଠ ଓ ସପ୍ତମ ଶ୍ରେଣୀର ସବୁ ଝିଅ ଯାହାର କାନ୍ଧଯାଏଁ ବାଳ ଥିବ |
| ଅଣ୍ଡିରା ହାତୀ | ପଞ୍ଚମ, ଷଷ୍ଠ ଓ ସପ୍ତମ ଶ୍ରେଣୀର ସବୁ ଚଷମାପିନ୍ଧା ପୁଅ |
| ଛୁଆ ହାତୀ | ପଞ୍ଚମ, ଷଷ୍ଠ ଓ ସପ୍ତମ ଶ୍ରେଣୀର ପାଣିବୋତଲ ଓ ଜଳଖିଆ ଡବା ଧରିଥିବା ସବୁ ପୁଅ ଝିଅ |
| ଅନ୍ୟ ଜନ୍ତୁ | ସ୍କୁଲର ବାକି ସବୁ ପିଲା । |

## ତଥ୍ୟ ସଂଗ୍ରହ

ତଥ୍ୟସଂଗ୍ରହକାରୀ ଦଳଙ୍କୁ କହିଦିଅ ଯେ ସେମାନଙ୍କ କାମ ହେଉଛି ଗଣିବା । ଏଥିପାଇଁ ସେମାନେ ପୂରା ସ୍କୁଲକୁ ବିଭିନ୍ନ ଅଞ୍ଚଳରେ ଭାଗ କରିବେ, ଯଥା, ଖେଳପଡିଆ, କ୍ୟାଣ୍ଟିନ, ସାଇକେଲ ଷ୍ଟାଣ୍ଡ, ସ୍କୁଲ ସାମନା, ଶ୍ରେଣୀଗୃହ ଆଦି । ପ୍ରତି ଛୋଟ ଦଳ ଗୋଟିଏ ଅଞ୍ଚଳର ଦାୟିତ୍ୱ ଏବଂ ସବୁ ଅଞ୍ଚଳରେ ବାଣ୍ଟିହୋଇ ଏକା ସାଙ୍ଗରେ ଗଣିବା କାମ କଲେ ଖେଳଛୁଟିରେ ତାହା ସରିପାରିବ ।

ଗଣିବା ଆରମ୍ଭ କରିବା ଆଗରୁ ପ୍ରତିଦଳ ଗୋଟିଏ ଗଣନା ଫର୍ଦ୍ଦ ତିଆରି କରିବେ ଏବଂ ଗଣନା କାମ ପୂରା ସରିବା ଯାଏଁ ତାକୁ ସାଙ୍ଗରେ ଧରି କାମରେ ଲଗାଇବେ ।

ଫଳାଫଳର ସଠିକତା ପାଇଁ ପ୍ରତ୍ୟେକ ଛୋଟ (୨-୩ଜଣିଆ) ଦଳର ପିଲାମାନେ ଏକାଠି ରହିବେ, କିନ୍ତୁ ପ୍ରତି ପିଲା ତା'ର ଗଣନା ଫଳାଫଳକୁ ଅଲଗା ଲେଖିବ । ଶେଷରେ ଏକାଠି ଗଣୁଥିବା ପିଲାମାନେ ତାଙ୍କର ସଂଖ୍ୟାଗୁଡ଼ିକୁ ମିଶାଇ ହାରାହାରି ବାହାର କରିବେ । ଗଣନାର ହିସାବ ରଖିବା ପାଇଁ ପିଲାମାନେ ଗାର କଟା ପଦ୍ଧତି ବ୍ୟବହାର କରିବେ ଏବଂ ତାଙ୍କ ଅଞ୍ଚଳର ମୋଟ ହାତୀ ସଂଖ୍ୟା ବାହାର କରିବେ । (ସର୍ବେକ୍ଷଣ ଫର୍ଦ୍ଦର ନମୁନା ପାଇଁ ୯୨ ପୃଷ୍ଠା ଦେଖନ୍ତୁ) ।

ଗଣନା ଆରମ୍ଭ ଓ ଶେଷ କରିବାର ସମୟ ଟିପି ରଖିବା ପାଇଁ ପିଲାମାନଙ୍କୁ କୁହ । ହାତୀ ଗଣିବା ବେଳେ ସେମାନେ ହାତୀଟି କେଉଁଠି ଥିଲା ତା' ମଧ୍ୟ ଟିପି ରଖିବେ ।

## ତଥ୍ୟ ସଙ୍କଳନ

ତଥ୍ୟ ସଙ୍କଳନକାରୀ ଦଳ ଗଣନାକାରୀ ଦଳ ସଂଗ୍ରହ କରିଥିବା ତଥ୍ୟ ସବୁକୁ ଏକାଠି କରିବେ ଏବଂ ତଳର ସଂଖ୍ୟା ସବୁ ବାହାର କରିବେ ।

- ଅଣ୍ଡିରା ହାତୀଙ୍କ ମୋଟ ସଂଖ୍ୟା
- ମାଈ ହାତୀଙ୍କ ମୋଟ ସଂଖ୍ୟା
- ଛୁଆ ହାତୀଙ୍କ ମୋଟ ସଂଖ୍ୟା

## ସଂଗୃହୀତ ତଥ୍ୟର ବ୍ୟାଖ୍ୟା

ଆଲୋଚନା ମାଧ୍ୟମରେ ପିଲାମାନଙ୍କୁ ବୁଝାଇଦିଅ କିପରି ସେମାନେ ତାଙ୍କର ଅନୁଭୂତି ଏବଂ ସଂଗୃହୀତ ତଥ୍ୟ ସବୁର ବ୍ୟାଖ୍ୟା କରିପାରିବେ ।

ଏହି ଆଲୋଚନାରେ ତଳର ଦିଗଗୁଡ଼ିକ ନିଆଯାଇପାରେ:

- ସଂଗୃହୀତ ତଥ୍ୟ ଉପରେ ଆଖି ପକାଇଲେ ପ୍ରଥମେ କେଉଁ ଧାରଣା ପିଲାଙ୍କ ମନକୁ ଆସୁଛି ?
- ସଂଗୃହୀତ ତଥ୍ୟର ବ୍ୟାଖ୍ୟାରୁ ସେମାନେ ପାଇଥିବା ଫଳାଫଳ ପୂରା ସ୍କୁଲ ପାଇଁ ଲାଗୁ ହୋଇପାରିବ କି?
- ଗଣିବା ବେଳେ ସେମାନଙ୍କର କି ପ୍ରକାରର ସମସ୍ୟା ଆସିଥିଲା ? ଯଦି ସେମାନେ ପ୍ରକୃତରେ ଗୋଟିଏ ଜଙ୍ଗଲରେ ପଶି ଗଣନା କାମ କରିଥା'ନ୍ତେ, ତେବେ ଏଭଳି ସମସ୍ୟା ଆସିଥାନ୍ତା କି ? ସେଠାରେ ଆଉ କି ପ୍ରକାରର ସମସ୍ୟା ଆସିଥାନ୍ତା ?
- ଯେଉଁ ପଦ୍ଧତିରେ ସେମାନେ ଗଣନା କଲେ ତା'ର ସୁବିଧା କଣ ଓ ଅସୁବିଧା କଣ ? ଏସବୁ ତଥ୍ୟ ପାଇବାପାଇଁ ଆଉ କିଛି ବାଟ ସେମାନେ ଭାବିପାରୁଛନ୍ତି କି ?
- ଗଣନା ମାଧ୍ୟମରେ ପାଇଥିବା ତଥ୍ୟକୁ ନେଇ ସେମାନେ ସ୍କୁଲ ଓ ତା'ର ଛାତ୍ର ଛାତ୍ରୀଙ୍କ ପାଇଁ କ'ଣ ସବୁ ଯୋଜନା କରିପାରିବେ? ଆଉ କ'ଣ ତଥ୍ୟ ମିଳିଥିଲେ ଭଲ ହୋଇଥା'ନ୍ତା ?



Digitized by srujanika@gmail.com

## ଗଣନା ପାଇଁ ନମୁନା ଫର୍ଦ୍ଧ

| | | | | |
|---|---|---|---|---|
| ଛୋଟ ଦଳ | : କ | | | |
| ସ୍ଥାନ | : ଖେଳପଡ଼ିଆ | ଅଣ୍ଡିରା ହାତୀ | 卌 卌 | ମୋଟ ୧୦ |
| ଆରମ୍ଭ ସମୟ | : ଅପରାହ୍ଣ ୧:୦୦ | ମାଈ ହାତୀ | 卌 卌 卌 卌 | ମୋଟ ୨୦ |
| ଶେଷ ସମୟ | : ଅପରାହ୍ଣ ୧:୪୫ | ଛୁଆ ହାତୀ | 卌 | ମୋଟ ୫ |
| କେଉଁ ଶ୍ରେଣୀର ପିଲା | : ପଞ୍ଚମ, ଷଷ୍ଠ, ସପ୍ତମ | ତୁମ ଅଞ୍ଚଳରେ | 卌 卌 卌 卌 卌 | |
| | | ମୋଟ ହାତୀ ସଂଖ୍ୟା | 卌 卌 | ମୋଟ ୩୫ |

**ଶ୍ରେଣୀ ବିଭାଗ ପାଇଁ ବିଭିନ୍ନ ଗୁଣ**

**ମାଈ** : କାନ୍ଧ ଉପରକୁ ବାଳ ଥିବା ପଞ୍ଚମ, ଷଷ୍ଠ, ସପ୍ତମ ଶ୍ରେଣୀର ସବୁ ଝିଅ

**ଅଣ୍ଡିରା** : ପଞ୍ଚମ, ଷଷ୍ଠ, ସପ୍ତମ ଶ୍ରେଣୀର ସବୁ ଚଷମା ପିନ୍ଧା ପୁଅ

**ଛୁଆ**: ପଞ୍ଚମ, ଷଷ୍ଠ, ସପ୍ତମ ଶ୍ରେଣୀର ପାଣିବୋତଲ ଏବଂ ଜଳଖିଆ ଡବା ଧରିଥିବା ସବୁ ପୁଅ ଓ ଝିଅ

## ସଂପ୍ରସାରଣ/ପରିବର୍ତ୍ତନ

ତଥ୍ୟ ସଂଗ୍ରହକାରୀ ଏବଂ ସଙ୍କଳନକାରୀ ଦଳ ଦୁଇଟି ନିଜ ନିଜ ଭିତରେ କାମ ବଦଳାଇ ସ୍କୁଲରେ ଆଉ ଗୋଟିଏ ଦିନ ଗଣନା କରିପାରନ୍ତି । ଦୁଇ ଦିନର ଫଳାଫଳ ଏକା ଆସିଲା କି ? କାହିଁକି ?

### ଭାଗ ଖ

କାମର ଏହି ଭାଗରେ ପିଲାମାନେ ହାତୀ ଗଣନାର ବିଭିନ୍ନ ପଦ୍ଧତି ବିଷୟରେ ଶିଖିବେ (ପୃଷ୍ଠା ୯୩ର ତଥ୍ୟଭଣ୍ଡାର ଦେଖନ୍ତୁ) ।

ପିଲାଙ୍କୁ କହିଦିଅ ଯେ କୌଣସି ଏକ ଗଣନା ପଦ୍ଧତି ସମ୍ପର୍କିତ କିଛି କାଳ୍ପନିକ ତଥ୍ୟ ସେମାନଙ୍କୁ ଦିଆଯିବ ଏବଂ ପ୍ରତି ପଦ୍ଧତିରେ ବ୍ୟବହାର ହେଉଥିବା ସୂତ୍ର ଲଗାଇ ସେହି ତଥ୍ୟରୁ ସେମାନେ ହାତୀଙ୍କ ସଂଖ୍ୟା ବାହାର କରିବେ ।



### ପ୍ରଥମ ପ୍ରଶ୍ନ

ଏଠାରେ କିଛି କାଳ୍ପନିକ ତଥ୍ୟ ଦିଆଯାଇଛି । ପାଣିନାଳ ପଦ୍ଧତି ବ୍ୟବହାର କରି ସେହି ଅଞ୍ଚଳର ହାତୀଙ୍କ ସଂଖ୍ୟା ହିସାବ କର ।

ପାଣିନାଳ ପାଖରେ ଗଣାଯାଇଥିବା ମୋଟ ହାତୀ ସଂଖ୍ୟା ୫୦ । କୌଣସି ହାତୀ ପାଣିନାଳ ପାଖକୁ ଥରେ ଆସିବାର ସମ୍ଭାବନା ହେଉଛି ୦·୯୫ ଏବଂ ଦୁଇଥର ଆସିବାର ସମ୍ଭାବନା ହେଉଛି ୦·୦୨ । ତେବେ ହିସାବ କର –

- ଗୋଟିଏ ହାତୀ ପାଣିନାଳ ପାଖକୁ ଥରେ ମଧ୍ୟ ନ ଆସୁଥିବାର ସମ୍ଭାବନା କେତେ ?
- ସେ ଅଞ୍ଚଳରେ ମୋଟ ହାତୀ ସଂଖ୍ୟା କେତେ ?

### ଦ୍ୱିତୀୟ ପ୍ରଶ୍ନ

ତଳେ କିଛି କାଳ୍ପନିକ ତଥ୍ୟ ଦିଆଯାଇଛି । ଖଣ୍ଡ ନମୁନା ସଂଗ୍ରହ (*ବ୍ଲକ ସାମ୍ପଲିଙ୍ଗ*), ମଳ ଗଣା ପଦ୍ଧତି ବ୍ୟବହାର କରି ସେହି ଅଞ୍ଚଳର ହାତୀସଂଖ୍ୟା ହିସାବ କର ।

୨୨ ହେକ୍ଟର ଜମିରେ ହାତୀଙ୍କର ୨୦୦ଟି ମଳ ଗଦା ରହିଛି । ହାତୀ ଦିନକୁ ୧୫ ଥର ମଳତ୍ୟାଗ କରୁଥାଏ ବୋଲି ଧରାଯାଉ । ସେହି ହାତୀ ଆବାସସ୍ଥଳୀର ମୋଟ କ୍ଷେତ୍ରଫଳ ହେଉଛି ୨୫୦ ବର୍ଗ କି.ମି. (୨୫,୦୦୦ ହେକ୍ଟର) । ତେବେ ସେହି ଅଞ୍ଚଳରେ କେତେ ହାତୀ ଥିବେ ତାହା ହିସାବ କର ।



Digitized by srujanika@gmail.com

# ହାତୀ ସଂଖ୍ୟା ଆକଳନ

## ପ୍ରତ୍ୟକ୍ଷ ପଦ୍ଧତି

### ମୋଟ ସଂଖ୍ୟା ଗଣନା ପଦ୍ଧତି

ଆମ ଦେଶର ଅଧିକାଂଶ ଅଞ୍ଚଳରେ ୧୯୭୦ ଦଶକ ଠାରୁ ଏହି ପଦ୍ଧତିରେ ହାତୀ ସଂଖ୍ୟା ଗଣାଯାଉଛି । ଏହି ପଦ୍ଧତିରେ ହାତୀ ଥିବା ଅଞ୍ଚଳ (ଗୋଟିଏ ରାଜ୍ୟ ବା ବନଖଣ୍ଡ)କୁ ମୌଳିକ ପ୍ରଶାସନିକ ଖଣ୍ଡରେ ଭାଗ କରାଯାଏ । ତା'ପରେ ଜଙ୍ଗଲ ବିଭାଗର ସବୁ କର୍ମଚାରୀଙ୍କୁ ଲଗାଇ ଏକାଦିନରେ ସବୁ ଅଞ୍ଚଳରେ ଦେଖାଯାଉଥିବା ହାତୀଙ୍କ ସଂଖ୍ୟା ଗଣାଯାଏ । ଶେଷରେ ସେସବୁକୁ ମିଶାଇ ପୂରା ଅଞ୍ଚଳର ସଂଖ୍ୟା ବାହାର କରାଯାଏ ।

ହାତୀ ଗୋଟିଏ ଅଞ୍ଚଳରୁ ଆଉ ଗୋଟିଏ ଅଞ୍ଚଳକୁ ଚାଲିଯିବା ଫଳରେ ଯେଉଁ ସମସ୍ୟା ଆସିବା କଥା, ଏହି ପଦ୍ଧତିରେ ସେ ସମସ୍ୟାକୁ କିଛି ପରିମାଣରେ ଦୂର କରାଯାଇପାରେ ।

ଏହି ପଦ୍ଧତିର କେତେକ ଅସୁବିଧା ହେଉଛି:

- ଯଦି ଜଙ୍ଗଲ ଘଞ୍ଚ ହୋଇଥାଏ ଏବଂ ତାହା ଭିତରେ ଭଲ ଭାବରେ ଦେଖିହେଉନଥାଏ, ତେବେ ସବୁ ହାତୀଙ୍କୁ ଗଣିବା କଷ୍ଟ ।
- ବହୁତ ଲୋକ ଏଥିରେ ସାମିଲ ଥିବାରୁ ମିଳିଥିବା ତଥ୍ୟ ପୂରା ଠିକ ନ ହୋଇପାରେ । କାରଣ କେଉଁ କେଉଁ ଜାଗାରେ ଗୋଟିଏ ହାତୀ ଦୁଇଥର ବି ଗଣାହୋଇ ଯାଇପାରେ ।
- ହାତୀର ପୂରା ଅଞ୍ଚଳକୁ ଦିନେ ବା ଦୁଇଦିନରେ ସାରିବା ବହୁତ କଷ୍ଟ ।

### ନମୁନା ଗଣନା

ଏହି ପଦ୍ଧତିରେ ସର୍ବେକ୍ଷଣ ହେବାକୁ ଥିବା ଅଞ୍ଚଳକୁ କେତେଗୁଡ଼ିଏ ନମୁନା ଖଣ୍ଡରେ ଭାଗ କରାଯାଏ ଏବଂ କିଛି ନିର୍ଦ୍ଦିଷ୍ଟ ଖଣ୍ଡର ସବୁ ଜନ୍ତୁଙ୍କୁ ଗଣାଯାଏ । ଗଣାଯାଇଥିବା ମୋଟ ଜନ୍ତୁ ସଂଖ୍ୟାକୁ ଗଣନା ହୋଇଥିବା ଅଞ୍ଚଳର କ୍ଷେତ୍ରଫଳରେ ଭାଗକରି ସେ ଅଞ୍ଚଳରେ ହାତୀଙ୍କ ଘନତା ବାହାର କରାଯାଏ । ନମୁନା ଖଣ୍ଡଗୁଡ଼ିକର ହାରାହାରି ଘନତାକୁ ପୂରା ଅଞ୍ଚଳର କ୍ଷେତ୍ରଫଳରେ ଗୁଣିଲେ ସେଠାକାର ମୋଟ ହାତୀ ସଂଖ୍ୟାର ହିସାବ ମିଳିପାରେ ।

ମୋଟ ଗଣନା ପଦ୍ଧତି ତୁଳନାରେ ଏହାର ଅନେକ ସୁବିଧା ରହିଛି । ଏଗୁଡ଼ିକ ହେଲା -

- ଏଥିରେ କମ ମଣିଷ, ଶକ୍ତି ଏବଂ ସମୟ ଦରକାର ହୁଏ । ମୋଟ ଗଣନା ପଦ୍ଧତିରେ ପୂରା ଅଞ୍ଚଳଟି ନିଆଯାଏ, କିନ୍ତୁ ଏଥିରେ କେତେକ ନମୁନା ଖଣ୍ଡ ମାତ୍ର ନିଆଯାଇଥାଏ । ନମୁନା ଖଣ୍ଡଟି ଗୋଟିଏ ଆୟତାକାର ବା ବର୍ଗାକାର ଅଞ୍ଚଳ (*କ୍ୱାଡ୍ରାଟ୍*) ହୋଇପାରେ । ସେଥିରୁ କେତେକ ଛୋଟ ଅଞ୍ଚଳ ଅନିର୍ଦ୍ଦିଷ୍ଟ ଭାବରେ ବା କୌଣସି ବିଧିବଦ୍ଧ ନିର୍ଦ୍ଦିଷ୍ଟ ଢାଞ୍ଚାରେ ବାଛିକରି ଗଣାଯାଏ । ଗୋଟିଏ ସିଧାଖଣ୍ଡ (*ଟ୍ରାନ୍ସେକ୍ଟ*) ଉପରେ ବି ଗଣନା କରାଯାଇପାରେ । ଅର୍ଥାତ୍ ଗୋଟିଏ ନିର୍ଦ୍ଦିଷ୍ଟ ଲମ୍ବର କେତେଗୁଡ଼ିଏ ସିଧାଗାର ପକାଇ ସେହିଠାରେ ଗଣାଯାଇପାରେ । ଏଥିରେ କମ ଲୋକବଳ ଓ କମ ସମୟ ଲାଗେ ଏବଂ ସଠିକ ତଥ୍ୟ ମିଳେ ।
- ଅଳ୍ପ ସମୟ ଭିତରେ ଗଣନା ଶେଷ କରିବା ଦରକାର ନାହିଁ ।
- ପରିସଂଖ୍ୟାନ ଦୃଷ୍ଟିରୁ ଏଥିରୁ ମିଳୁଥିବା ତଥ୍ୟ ବେଶୀ ମୂଲ୍ୟବାନ ।

### ପାଣିନାଳ ଗଣନା

ଏହି ପଦ୍ଧତିରେ ଗୋଟିଏ ଦିନରେ ପାଣି, ପାଖକୁ ଆସିଥିବା ହାତୀଙ୍କ ସଂଖ୍ୟା ଗଣାଯାଏ । ଗୋଟିଏ ଛୋଟିଆ ଅଞ୍ଚଳର ଏବଂ ଶୁଖିଲା ଋତୁରେ ଆନୁମାନିକ ଗଣନା ପାଇଁ ଏହି ପଦ୍ଧତି ବ୍ୟବହାର କରାଯାଇପାରେ ।

ପ୍ରତି ହାତୀ ଦିନରେ ପାଣିନାଳ ପାଖକୁ ଥରେ ଆସେ ବୋଲି ଧରାଯାଏ । ଯଦି ଏହା ଧରା ନ ଯାଏ, ତେବେ ହିସାବରେ ସଂଶୋଧନ କରିବାକୁ ହୁଏ ।

$P_1$ ଗୋଟିଏ ହାତୀର ଦିନରେ ଥରେ ପାଣିନାଳ ପାଖକୁ ଯିବାର ସମ୍ଭାବନା

$P_2$ ଗୋଟିଏ ହାତୀର ଦିନରେ ଦୁଇଥର ପାଣିନାଳ ପାଖକୁ ଯିବାର ସମ୍ଭାବନା

$P_0$ ଗୋଟିଏ ହାତୀର ପାଣିନଳା ପାଖକୁ ମୋଟେ ନ ଯିବାର ସମ୍ଭାବନା ($P_0 = 1 - P_1 . P_2$)

C ପାଣିନାଳ ପାଖରେ ଗଣାଯାଇଥିବା ମୋଟ ହାତୀ ସଂଖ୍ୟା ।

ତେବେ ସେ ଅଞ୍ଚଳର ମୋଟ ହାତୀ ସଂଖ୍ୟା (N) ହେବ: $N = C / (P_1 + 2 P_2)$

## ପରୋକ୍ଷ ପଦ୍ଧତି

### ମଳଗଦା ଗଣନା

କୌଣସି ଜନ୍ତୁର ଉପସ୍ଥିତି ତା'ର ମଳଗଦାରୁ ଜାଣିହେବ । ହାତୀର ସଂଖ୍ୟା ଗଣିବା ପାଇଁ ଏହି ପଦ୍ଧତି ଅନେକ ସମୟରେ ବ୍ୟବହାର କରାଯାଏ । ବୈଜ୍ଞାନିକମାନଙ୍କ ମତରେ ମଳଗଦା ଗଣିବା ବେଶ୍ ନିର୍ଭରଯୋଗ୍ୟ ଏବଂ ଏଥିରୁ ପ୍ରକୃତ ସଂଖ୍ୟା ହିସାବ କରିହେବ । କିନ୍ତୁ ଏହି ପଦ୍ଧତିର ଅସୁବିଧା ହେଉଛି ଯେ ଏଥିପାଇଁ ଅନେକ କଥା ଅନୁମାନ କରିବାକୁ ହୁଏ ଏବଂ ଏଥିପାଇଁ ସେ ଜାଗାରେ ହାତୀର ଘନତା, ମଳତ୍ୟାଗର ହାର ଏବଂ ମଳର ମାଟିରେ ମିଶିବାର ବେଗ ବିଷୟରେ ଜ୍ଞାନ ଥିବା ଦରକାର । ହାତୀ ମଳକୁ ଅନ୍ୟଜୀବଙ୍କ ମଳଠାରୁ ଠିକ୍ ଭାବରେ ଚିହ୍ନଟ କରିପାରିବା ମଧ୍ୟ ଦରକାର । ଆମଦେଶରେ ଏହି ପଦ୍ଧତି ବ୍ୟବହାର କରିବା ସେତେ ସହଜ ନୁହେଁ ।

ଖଣ୍ଡ ନମୁନା (*ବ୍ଲକ୍ ସାମ୍ପଲିଙ୍ଗ୍*) ବା ସିଧାଖଣ୍ଡ (*ଟ୍ରାନ୍ସେକ୍ଟ*) ପଦ୍ଧତି ବ୍ୟବହାର କରି ମଳଗଦା ଗଣନା କରିହେବ ଏବଂ ସେଥିରୁ ହାତୀଙ୍କ ସଂଖ୍ୟା ହିସାବ କରିହେବ ।

ଖଣ୍ଡ ନମୁନା ପଦ୍ଧତିରେ, ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳରେ ମୋଟ ମଳଗଦାର ସଂଖ୍ୟା ଗଣାଯାଏ । ମଳଗଦାର ସଂଖ୍ୟା ଏବଂ ମଳତ୍ୟାଗର ହାରରୁ ମୋଟ ହାତୀ ସଂଖ୍ୟା ହିସାବ କରିହେବ ।

କୌଣସି ଅଞ୍ଚଳର ମଳଗଦାର ମୋଟ ସଂଖ୍ୟା = କ୍ଷେତ୍ରଫଳ (ହେକ୍ଟର) x ହେକ୍ଟର ପ୍ରତି ମଳଗଦା ।

ହାତୀ ସଂଖ୍ୟା = ମୋଟ ମଳଗଦାର ସଂଖ୍ୟା/ ଗୋଟିଏ ହାତୀର ମାସିକ ମଳତ୍ୟାଗର ହାର ।

ସିଧାଖଣ୍ଡ (*ଟ୍ରାନ୍ସେକ୍ଟ*) ପଦ୍ଧତିରେ ଧରାଯାଏ ଯେ ମଳ କ୍ଷୟ ହେବାର ବେଗ ଏବଂ ଜମା ହେବାର ବେଗ ଭିତରେ ସନ୍ତୁଳନ ରହିଛି । ଅର୍ଥାତ, ଯେତିକି ମଳଗଦା ମାଟିରେ ମିଶିଯାଉଛି, ସେତିକି ନୂଆ ମଳଗଦା ପଡୁଛି । ଏଥିରେ ତଳ ସୂତ୍ର ଅନୁସାରେ ହାତୀଙ୍କ ସଂଖ୍ୟା ହିସାବ କରିହେବ ।

$E = Y \times r / D$.

E = ହାତୀଙ୍କ ସଂଖ୍ୟା

D = ପ୍ରତିଦିନ ହାତୀ ପିଛା ଜମାହେଉଥିବା ମଳଗଦାର ସଂଖ୍ୟା

Y = ବର୍ଗ କି·ମି· ପିଛା ମଳଗଦା ସଂଖ୍ୟା

r = ଦୈନିକ ମଳତ୍ୟାଗର ହାର

ଉତ୍ସ: ରାମକ୍ରିଷ୍ଣନ ଉମା, ସନ୍ତୋଷ ଜେ·ଏ·, ସୁକୁମାର ଆର୍ (ସଂ), *ସେନ୍ସସିଙ୍ଗ୍ ଏଲିଫ୍ୟାଣ୍ଟସ୍ ଇନ୍ ଫରେଷ୍ଟସ୍: ପ୍ରୋସିଡ଼ିଙ୍ଗସ୍ ଅଫ ଆନ୍ ଇଣ୍ଟରନାସନାଲ ୱର୍କସପ,* ଏସିଆନ୍ ଏଲିଫାଣ୍ଟ କଞ୍ଜରଭେସନ୍ ସେଣ୍ଟର, ବାଙ୍ଗାଲୋର ୧୯୯୧ ।



Digitized by srujanika@gmail.com

# ହାତୀଙ୍କ ଗତିବିଧି

**କାଗଜ କଲମରେ ହାତୀର ଗତିବିଧି ଧରିବା**

| | |
|---|---|
| ***ଉଦ୍ଦେଶ୍ୟ*** | **ବୈଜ୍ଞାନିକମାନେ ଜଙ୍ଗଲରେ ହାତୀର ଗତିବିଧି କିପରି ଧରନ୍ତି ସେହି ପଦ୍ଧତି ବିଷୟରେ ପିଲାମାନେ ଜାଣିବେ ।** |
| ***ସ୍ତର*** | **ଉଚ୍ଚତର** |
| ***ବିଷୟ*** | **ଗଣିତ** |
| ***ଦଳର ଆକାର*** | **ଜଣିକିଆ** |
| ***ସ୍ଥାନ*** | **ଶ୍ରେଣୀଗୃହ ଭିତରେ** |
| ***ସମୟ ଅବଧି*** | **୩୦ ମିନିଟ** |
| ***ସାମଗ୍ରୀ*** | **ଅଙ୍କନ ଜିନିଷ, ପେନସିଲ, ସ୍କେଲ, ଲେଖିବା ଜିନିଷ** |

## ଆରମ୍ଭ କରିବା ଆଗରୁ

ହାତୀର ଆବାସସ୍ଥଳୀ, ଗତିବିଧି ଏବଂ ପାରିବାରିକ ଜୀବନ ବିଷୟରେ ଜାଣିବା ପାଇଁ ଉଭୟ ଏସିଆ ଏବଂ ଆଫ୍ରିକାର ଗବେଷକମାନେ ହାତୀର ଗତିବିଧି ଲକ୍ଷ କରିବା ଦରକାର । ଭାରତରେ ହାତୀର ଗତିବିଧି ଜାଣିବା ପାଇଁ ବେତାର ଦୂରମିତି ବ୍ୟବହାର କରାଯାଏ ।

ଆଫ୍ରିକାରେ ଡ଼ାକବାଜି ଯନ୍ତ୍ର ବ୍ୟବହାର କରି ହାତୀର ଗତିବିଧି ଲକ୍ଷ କରାଯାଏ । ହାତୀ ମିଳିବାର ସମ୍ଭାବନା ଥିବା ଅଞ୍ଚଳର ଚାରିକୋଣରେ ଚାରୋଟି ଡ଼ାକବାଜି ଯନ୍ତ୍ର ରଖାଯାଏ । ଗୋଟିଏ ହାତୀ ଅନ୍ୟ ହାତୀଙ୍କୁ ଡ଼ାକିବାର ଶବ୍ଦରୁ ବୈଜ୍ଞାନିକମାନେ ଏମାନଙ୍କୁ ଠାବ କରିବାକୁ ଚେଷ୍ଟା କରନ୍ତି ।

## ପରଖର ଧାରା

### ଭାଗ କ

ପିଲାଙ୍କୁ ମନେ ପକାଇଦିଅ ଯେ ଗୋଟିଏ ଅଣ୍ଡିରା ହାତୀର ବିଚରଣ ଇଲାକା ଦଳର ଇଲାକାଠାରୁ ଅଲଗା । ବିଭିନ୍ନ ଋତୁରେ ହାତୀର ବିଭିନ୍ନ ଜାଗାକୁ ଯିବା ଉପରେ ତା'ର ବିଚରଣ ଇଲାକା ନିର୍ଭର କରେ । ବିଭିନ୍ନ ଋତୁରେ ମିଳୁଥିବା ଖାଦ୍ୟ ଓ ପାଣି ଉପରେ ମଧ୍ୟ ତାହା ନିର୍ଭର କରେ । (ବାସସ୍ଥଳୀ ଏବଂ ବିଚରଣ ଉପରେ ଅଧିକ ତଥ୍ୟ ପାଇଁ ପୃଷ୍ଠା ୨୯-୩୦ ଦେଖନ୍ତୁ)

ପିଲାଙ୍କୁ କୁହ ଯେ ଏହି କାମରେ ସେମାନେ ଡାକବାଜି ଯନ୍ତ୍ର ସାହାଯ୍ୟରେ ହାତୀକୁ ଠାବ କରିବେ । ଏଥିରେ ପିଲାମାନେ କାଗଜ କଲମରେ ଗୋଟିଏ ଅଣ୍ଡିରା ହାତୀକୁ ଠାବ କରିବେ ।

ପିଲାମାନଙ୍କୁ ଖାତାରେ ଗୋଟିଏ ୫ସେ.ମି. x ୫ସେ.ମି. ମାପର ବର୍ଗ ଆଙ୍କିବା ପାଇଁ କୁହ । ଏହା ଗୋଟିଏ ଅଣ୍ଡିରା ହାତୀର ବାସସ୍ଥଳୀକୁ ବୁଝାଇବ । ୧ସେ.ମି. = ୩.୫କି.ମି. ହେଲେ ପୂରା ବର୍ଗଟି ୨୫ ବର୍ଗ ସେ.ମି. = ୩୦୬.୨୫ ବର୍ଗ କି.ମି. (ପ୍ରାୟ ୩୦୫ ବର୍ଗ କି.ମି.) ହେବ । ଏହି ଅଞ୍ଚଳରେ ହାତୀ ମିଳିବାର ସମ୍ଭାବନା ବହୁତ ବେଶି ।

ସେହି ବର୍ଗକ୍ଷେତ୍ରର ଚାରିକୋଣରେ ଚାରୋଟି ଡାକବାଜି ଯନ୍ତ୍ର ରହିଛି ବୋଲି ପିଲାଙ୍କୁ କହିଦିଅ । ଏଥିରୁ ମିଳୁଥିବା ସଙ୍କେତ ଅନୁସାରେ ସେମାନେ ହାତୀକୁ ଠାବ କରିବାକୁ ଚେଷ୍ଟା କରିବେ । ହାତୀର ସଠିକ ସ୍ଥାନ ନିରୂପଣ କରିବା ପାଇଁ ଚାରୋଟି ଭିତରୁ ଦୁଇଟି ବା ତିନୋଟି ଡାକବାଜି ଯନ୍ତ୍ରଠାରୁ ଦୂରତା ଦିଆଯିବ ।

**ଉଦାହରଣ**

କ, ଖ, ଗ, ଘ ବର୍ଗକ୍ଷେତ୍ରର ଚାରୋଟି କୋଣ ଏବଂ ଏହି କୋଣଗୁଡ଼ିକରେ ଡାକବାଜି ଯନ୍ତ୍ର ଲଗାଯାଇଛି । ଚ ହେଉଛି ହାତୀ । ଏହି କାମ ପାଇଁ ମନେକର ଯେ ଚାରୋଟିରୁ ତିନୋଟି ଡାକବାଜି ଯନ୍ତ୍ର କାମ କରୁଛି ।

ମନେକର କ, ଖ ଓ ଗ ଯନ୍ତ୍ର କାମ କରୁଛି ଏବଂ ଏହି ତିନୋଟିରୁ ହାତୀର ଦୂରତା ଯଥାକ୍ରମେ ୧୪ କି.ମି., ୧୪.୩୫ କି.ମି. ଏବଂ ୧୧.୨ କି.ମି. ।

କାଗଜରେ ହାତୀକୁ ଠାବ କରିବା ପାଇଁ ତଳର କାମଗୁଡ଼ିକ କର ।

**ପ୍ରଥମ ପାଦ:** ପ୍ରଥମେ ଦୂରତାକୁ କିଲୋମିଟରରୁ ସେଣ୍ଟିମିଟରରେ ପରିଣତ କର । ତେଣୁ କଚ = ୧୪ କି.ମି. = ୪ ସେ.ମି., ଖଚ = ୧୪.୩୫ କି.ମି. = ୪ ସେ.ମି., ଗଚ = ୧୧.୨ କି.ମି. = ୩.୨ ସେ.ମି.

**ଦ୍ୱିତୀୟ ପାଦ:** କାଗଜରେ ହାତୀର ସ୍ଥାନ ଠିକ କରିବା ପାଇଁ ସ୍କେଲ ଉପରେ ରଖି କମ୍ପାସରେ ୪ ସେ.ମି. ମାପ । କ କୁ କେନ୍ଦ୍ର କରି ୪ ସେ.ମି. ବ୍ୟାସାର୍ଦ୍ଧର ଗୋଟିଏ ଚାପ କାଟ ।

**ତୃତୀୟ ପାଦ:** ଖ କୁ କେନ୍ଦ୍ର କରି ୪ ସେ.ମି. ବ୍ୟାସାର୍ଦ୍ଧର ଗୋଟିଏ ଚାପ କାଟ । ଏବେ ଗ କୁ କେନ୍ଦ୍ର କରି ୩.୨ ସେ.ମି. ବ୍ୟାସାର୍ଦ୍ଧର ଗୋଟିଏ ଚାପ କାଟ ।

**ଚତୁର୍ଥ ପାଦ:** ଯେଉଁଠି ତିନୋଟି ଯାକ ଚାପ କଟିବ, ସେଠାରେ ହିଁ ହାତୀ ଅଛି । ମନେକର ହାତୀ ଥିବା ଜାଗା ହେଲା ଚ । ଏବେ କ, ଖ ଓ ଗ ବିନ୍ଦୁଠାରୁ ଚ ପାଏଁ ଗାର ଟାଣ । କଚ, ଖଚ ଏବଂ ଗଚ ଦୂରତାକୁ ମାପ । ଏହା ଉପରେ ଦିଆଯାଇଥିବା ଦୂରତା ସହ ସମାନ ହେବ ।

ଲକ୍ଷ କର ଯେପରି ପିଲାମାନେ ଏଥିପାଇଁ ମୁନିଆଁ ପେନସିଲ ବ୍ୟବହାର କରିବେ, ଚାପ କାଟିବା ବେଳେ କମ୍ପାସର ମୁନକୁ ଠିକ ଭାବରେ ରଖିବେ, ଗାର ଠିକ ଭାବରେ ପକାଇବେ ଏବଂ ଦୂରତା ଠିକ ଭାବରେ ମାପିବେ ।



Digitized by srujanika@gmail.com




## ପ୍ରଶ୍ନାବଳୀ

ତୁମକୁ କ, ଖ, ଗ, ଘ ଭିତରୁ ଦୁଇଟି ବା ତିନୋଟି ଜାଗାରୁ ହାତୀର ଦୂରତା ଦିଆଯାଇଛି । କାଗଜରେ ଅଙ୍କନ କରି ହାତୀର ସ୍ଥାନ ବାହାର କର ।

୧· କଚ = ୯·୧ କି·ମି·, ଖଚ = ୧୪ କି·ମି·, ଘଚ = ୧୧·୯ କି·ମି·

୨· କଚ = ୧୯·୬ କି·ମି·, ଖଚ = ୧୬·୮ କି·ମି·, ଘଚ = ୯·୧ କି·ମି·

୩· କଚ = ୯·୧ କି·ମି·, ଗଚ = ୧୭·୧୫ କି·ମି·

୪· ଖଚ = ୧୨·୨୫ କି·ମି·, ଘଚ = ୧୫·୦୫ କି·ମି·

ହାତୀର ସଠିକ ସ୍ଥାନ ନିରୂପଣ କରିବା ପାଇଁ କେତୋଟି ଡାକବାଜି ଯନ୍ତ୍ର ଦରକାର ହେବ ?

## ଭାଗ ଖ

ହାତୀର ସ୍ଥାନ ବାହାର କରିସାରିବା ପରେ ପାଣିନାଳଠାରୁ ତା'ର ଦୂରତା କେତେ ବାହାର କର । ପାଣିନାଳର ସ୍ଥାନ୍ ଦିଆଯାଇଛି । ପାଣିନାଳଟି ଗ କୋଣ ପାଖରେ ରହିଛି । ଏହା ଆକାରରେ ଗୋଲ ଏବଂ ତା'ର ବ୍ୟାସ ହେଉଛି ୭ କି·ମି· । ପାଣିନାଳର କେନ୍ଦ୍ର ଗ କୋଣଠାରୁ ୭ କି·ମି· ଦୂରରେ ରହିଛି ଏବଂ ଘ କୋଣଠାରୁ ୧୨·୯୫ କି·ମି· ଦୂରରେ ଅଛି ।

ଉପରର ପ୍ରଶ୍ନ ଚାରିଟିରୁ ଯେକୌଣସି ଦୂରତା ତଥ୍ୟ ନେଇ ହାତୀ ପାଣିନାଳଠାରୁ କେତେ ଦୂରରେ ଅଛି ତାହା ବାହାର କର । ସେଇ ଏକା କାଗଜରେ ଏହା କରିପାରିବ । ପାଣିନାଳଠାରୁ ହାତୀର ଦୂରତା ଜାଣିବା ପାଇଁ ଉଦାହରଣ ଦେଖ ।

## ଉଦାହରଣ

ହାତୀଠାରୁ ପାଣିନାଳର ଦୂରତା ବାହାର କରିବା ପାଇଁ

**ପ୍ରଥମ ପାଦ:** ପ୍ରଥମେ ୧ ସେ·ମି· = ୩·୫ କି·ମି· ମାପ ବ୍ୟବହାର କରି ବର୍ଗକ୍ଷେତ୍ର ଭିତରେ ପାଣିନାଳର ସ୍ଥାନ ସ୍ଥିର କର । ପାଣିନାଳର ବ୍ୟାସ ୭ କି·ମି· = ୨ ସେ·ମି·, ଗଚ = ୭ କି·ମି· = ୨ ସେ·ମି· ଏବଂ ଘଚ = ୧୨·୯୫ କି·ମି· = ୩·୭ ସେ·ମି·

**ଦ୍ୱିତୀୟ ପାଦ:** ସ୍କେଲ ଉପରେ କମ୍ପାସ ରଖି ୨ ସେ·ମି· ମାପ । ଗ କୁ କେନ୍ଦ୍ର କରି ୨ ସେ·ମି· ବ୍ୟାସାର୍ଦ୍ଧର ଗୋଟିଏ ଚାପ କାଟ ।

**ତୃତୀୟ ପାଦ:** ଏବେ ଘ କୁ କେନ୍ଦ୍ର କରି ୩·୭ ସେ·ମି· ବ୍ୟାସାର୍ଦ୍ଧର ଚାପ କାଟ ।

**ଚତୁର୍ଥ ପାଦ:** ଗ ଏବଂ ଘ ରୁ ଚାପ ଦୁଇଟି ମିଶିଥିବା ବିନ୍ଦୁ ଯାଏଁ ଗାର ଟାଣ । ଏହା ପାଣିନାଳର କେନ୍ଦ୍ର ଛ ।

**ପଞ୍ଚମ ପାଦ:** ୨ ସେ·ମି· ବ୍ୟାସରୁ ବ୍ୟାସାର୍ଦ୍ଧ ହିସାବ କର । ବ୍ୟାସ/୨ = ୨/୨ = ୧ ସେ·ମି· । ଏବେ ଛ କୁ କେନ୍ଦ୍ର କରି ୧ ସେ·ମି· ବ୍ୟାସାର୍ଦ୍ଧର ଗୋଟିଏ ଗୋଲ ଟାଣ । ଏହା ହେଲା ପାଣିନାଳି ।

**ଷଷ୍ଠ ପାଦ:** ହାତୀ ପାଣିନାଳଠାରୁ କେତେ ଦୂରରେ ଅଛି ଜାଣିବା ପାଇଁ ଚ ରୁ ଛ ଯାଏଁ ଗୋଟିଏ ଗାର ଟାଣ । ସ୍କେଲରେ ଏହି ଦୂରତାକୁ ମାପ । ଏହା ହେଉଛି ହାତୀଠାରୁ ପାଣିନାଳର ଦୂରତା ।

## ଆଲୋଚନା

କାମଟି କରି ପାରିବା ପରେ ପିଲାଙ୍କ ସହ ଆଲୋଚନା କର ।

- ଜଙ୍ଗଲରେ ହାତୀକୁ ଠାବ କରିବା ପାଇଁ ଏହି ପଦ୍ଧତି କାମ ଦେବ କି ?
- ଏହି ପଦ୍ଧତିର ମୁଖ୍ୟ ଅସୁବିଧାଗୁଡ଼ିକ କ'ଣ ହୋଇପାରେ ?
- ହାତୀର ବାସସ୍ଥଳୀ ଏବଂ ତା'ର ସ୍ଥାନ ନିରୂପଣ କରିବା କାହିଁକି ଜରୁରୀ ? ଏଥିରୁ କେଉଁ ତଥ୍ୟ ମିଳିପାରିବ ?
- ଏଥିରୁ ବୈଜ୍ଞାନିକମାନଙ୍କୁ ସଂରକ୍ଷଣ ବିଷୟରେ ଯୋଜନା କରିବାରେ ସାହାଯ୍ୟ ମିଳିବ କି ? କିପରି ?





Digitized by srujanika@gmail.com

# ବଜାର ଚାପ

ବ୍ୟବସାୟିକରଣ କ'ଣ ସଂରକ୍ଷଣରେ ସାହାଯ୍ୟ କରିପାରେ? ଏକ ବିତର୍କ ।

| | |
|---|---|
| *ଉଦ୍ଦେଶ୍ୟ* | ବଜାର ସଂରକ୍ଷଣରେ ସାହାଯ୍ୟ କରିପାରିବ କି ନାହିଁ ଏବଂ କିପରି ତାହା ବୁଝିବାରେ ପିଲାଙ୍କୁ ସାହାଯ୍ୟ କରିବା । |
| *ସ୍ତର* | ଉଚ୍ଚତର |
| *ବିଷୟ* | ଅର୍ଥନୀତି, ଭାଷା |
| *ଦଳର ଆକାର* | ଛୋଟ ଛୋଟ ଦଳରେ |
| *ସ୍ଥାନ* | ଶ୍ରେଣୀଗୃହ ଭିତରେ |
| *ସମୟ ଅବଧି* | ୩୦ ମିନିଟ |
| *ସାମଗ୍ରୀ* | ଲେଖିବା ଜିନିଷ |

## ଆରମ୍ଭ କରିବା ଆଗରୁ

ଆରମ୍ଭ କରିବା ଆଗରୁ ବର୍ତ୍ତମାନର ହାତୀ ଉତ୍ପାଦିତ ଜିନିଷର ଆନ୍ତର୍ଜାତୀୟ ବାଣିଜ୍ୟ ଉପରେ ଧାରଣା ପିଲାଙ୍କୁ ଦିଅ (ଅଧିକ ତଥ୍ୟ ୮୨ ପୃଷ୍ଠାରେ) ।

## ପରଖର ଧାରା

### ଭାଗ କ

ପ୍ରଥମେ ପୃଷ୍ଠା ୯୭ରେ ଥିବା ଏମ୍. ଡି. ମଧୁସୂଦନ ଏବଂ ରୋମୁଲସ୍ ହ୍ୱିଟେକରଙ୍କର "ବଜାର କ'ଣ ବିପନ୍ନ ପ୍ରାଣୀଙ୍କୁ ରକ୍ଷା କରିପାରିବ" ଲେଖା ଦୁଇଟି ପିଲାଙ୍କ ଆଗରେ ପଢ଼ ।

ଲେଖକମାନେ ଉପସ୍ଥାପନା କରିଥିବା ଦୁଇଟି ଯାକ ମତ ଉପରେ ଆଲୋଚନା କର । କିଛି ଲୋକ ବିଶ୍ୱାସ କରନ୍ତି ଯେ ହାତୀ ଦେହରୁ ମିଳୁଥିବା ଜିନିଷର ବିକ୍ରି ପୂରା ନିଷିଦ୍ଧ ହେବା ଉଚିତ । ଆଉ କେତେକ ବିଶ୍ୱାସ କରନ୍ତି ଯେ ନିଷେଧ କରିବା ଫଳରେ ସେସବୁର ଚୋରା କାରବାର ବଢ଼ିବ ଏବଂ ହାତୀ ପ୍ରତି ବିପଦ ବି ବଢ଼ିବ । ସେମାନଙ୍କ ମତରେ ପାଳିତ ହାତୀର ପ୍ରଜନନ କରାଇ ସଂଖ୍ୟା ବଢ଼ାଇଲେ ଏବଂ ହାତୀ ଦେହର ଜିନିଷ ବେଶି ପରିମାଣରେ ମିଳିପାରିଲେ ତାହା ହାତୀ ସଂରକ୍ଷଣରେ ସାହାଯ୍ୟ କରିପାରିବ ।

ପୂରା ଶ୍ରେଣୀକୁ ଚାରି ପାଞ୍ଚ ଜଣିଆ ଦଳରେ ଭାଗ କର । ସେମାନଙ୍କୁ କହିଦିଅ ଯେ *ବଜାର କ'ଣ ବିପନ୍ନ ପ୍ରାଣୀଙ୍କୁ ରକ୍ଷା କରିପାରିବ?* ଲେଖାରେ ଥିବା ତଥ୍ୟ ଅନୁଯାୟୀ ସେମାନଙ୍କୁ ଗୋଟିଏ ପ୍ରାଚୀର ପତ୍ର ତିଆରି କରିବାକୁ ହେବ । ପ୍ରାଚୀର ପତ୍ରର ଶୀର୍ଷକ 'ବଜାର ଶକ୍ତି ବିରୁଦ୍ଧରେ ମଧୁସୂଦନଙ୍କ ଯୁକ୍ତି' କିମ୍ବା 'ବଜାର ଶକ୍ତି ସପକ୍ଷରେ ରୋମୁଲସ ହ୍ୱିଟେକରଙ୍କର ଯୁକ୍ତି' ହୋଇପାରେ । ପ୍ରାଚୀର ପତ୍ରରେ ଉଭୟ ଲେଖକ ଏବଂ ଦଳର ସଦ୍ୟମାନଙ୍କର ମତ ରହିବ । ଏହି ପ୍ରାଚୀର ପତ୍ରର ରୂପରେଖର ଏକ ସମ୍ଭାବ୍ୟ ନମୁନା ତଳେ ଦିଆଯାଇଛି ।

| ବଜାର ଶକ୍ତି ବିରୁଦ୍ଧରେ ମଧୁସୂଦନଙ୍କ ଯୁକ୍ତି | |
|---|---|
| ତାଙ୍କର ଯୁକ୍ତି | ଆମର ମତ |
| • | • |
| • | • |
| • | • |
| • | • |

| ବଜାର ଶକ୍ତି ସପକ୍ଷରେ ହ୍ୱିଟେକରଙ୍କ ଯୁକ୍ତି | |
|---|---|
| ତାଙ୍କର ଯୁକ୍ତି | ଆମର ମତ |
| • | • |
| • | • |
| • | • |
| • | • |

### ଭାଗ ଖ

ଏହି କାମ ପାଇଁ ପୂରା ଶ୍ରେଣୀକୁ ଦୁଇ ଭାଗ କର । ଉଭୟ ଦଳଙ୍କୁ କହିଦିଅ ଯେ ସେମାନେ 'ବଜାର ହାତୀ ସଂରକ୍ଷଣରେ ସାହାଯ୍ୟ କରିପାରେ' ବିଷୟ ଉପରେ ଗୋଟିଏ ତର୍କ ପ୍ରସ୍ତୁତ କରିବେ । ଗୋଟିଏ ଦଳ ଏହାର ସପକ୍ଷରେ ଏବଂ ଅନ୍ୟ ଦଳଟି ବିପକ୍ଷରେ । ପ୍ରତି ଦଳର ଅତିକମ୍‌ରେ ଚାରିଜଣ ବକ୍ତା କହିବେ । ବାକିମାନେ ବକ୍ତାମାନଙ୍କୁ ପ୍ରସ୍ତୁତ ହେବାରେ ସାହାଯ୍ୟ କରିବେ । ପ୍ରସ୍ତୁତ ହେବା ପାଇଁ ସେମାନଙ୍କୁ ଗୋଟିଏ ଦିନ ଦିଆଯିବ ଏବଂ ପ୍ରତି ବକ୍ତାଙ୍କୁ ନିଜର ମତ ଉପସ୍ଥାପନା କରିବା ପାଇଁ ୩ ମିନିଟ ସମୟ ମିଳିବ ।

ତର୍କ ସରିବା ପରେ ପୂରା ଶ୍ରେଣୀ "ହାତୀଦାନ୍ତର ବାଣିଜ୍ୟ ପୂରାପୂରି ବନ୍ଦ ହେବା ଜରୁରୀ" ବିଷୟରେ ଭୋଟ ଦେବେ । ଏହି ଉକ୍ତିରେ ରାଜି ଥିବା ପିଲା ହାତ ଉପରକୁ ଉଠାଇବେ । ଏମାନଙ୍କ ସଂଖ୍ୟା ଗଣିବା ପରେ ତା'ର ବିପକ୍ଷରେ ଥିବା ପିଲାଙ୍କୁ ଗଣିବେ । ନଚେତ ଗୁପ୍ତ ଭୋଟ ମଧ୍ୟ ନିଆଯାଇପାରିବ । ପିଲାମାନେ କାଗଜରେ ନିଜର ମତ ଲେଖି ଭୋଟ ଦେଇପାରିବେ ।



Digitized by srujanika@gmail.com

## ସଂପ୍ରସାରଣ/ପରିବର୍ତ୍ତନ

ତଳ ଅନୁଚ୍ଛେଦଟି ପିଲାଙ୍କ ଆଗରେ ପଢ଼ ଏବଂ ନିଜ ନିଜର ମତ ଜଣାଇ ଆଫ୍ରିକୀୟ ଉଦ୍ୟାନର ନିର୍ଦ୍ଦେଶକଙ୍କ ପାଖକୁ ଚିଠି ଲେଖିବା ପାଇଁ କୁହ ।

ଭାରତର ଗୋଟିଏ ହାତୀ ଅଭୟାରଣ୍ୟର ନିର୍ଦ୍ଦେଶକ ଆଫ୍ରିକାର ବିଭିନ୍ନ ଉଦ୍ୟାନ ବୁଲି ସେଠାରେ କିପରି ହାତୀ ଏବଂ ହାତୀଙ୍କର ଆବାସସ୍ଥଳୀ ପରିଚାଳନା କରାଯାଉଛି ତାହା ଦେଖୁଥିଲେ ।

ସେଠାରେ ଗୋଟିଏ ଉଦ୍ୟାନର ପରିଚାଳକ କହିଲେ ଯେ ତାଙ୍କର ହାତୀସଂଖ୍ୟା ଏବେ ୧୭,୫୦୦ରୁ ୧୮,୦୦୦କୁ ବଢ଼ିଯାଇଛି । ସେ କିନ୍ତୁ ଏଥିରେ ଖୁସି ନଥିଲେ । ତାଙ୍କ ଅସୁଖୀ ହେବାର କାରଣ ହେଉଛି, ତାଙ୍କ ମତରେ ତାଙ୍କ ଉଦ୍ୟାନ ଏବଂ ତାଙ୍କ ଦେଶ ଏତେଗୁଡ଼ିଏ ଜୀବଙ୍କୁ ସମ୍ଭାଳିବା ପାଇଁ ବହୁତ ଛୋଟ । ଗୋଟିଏ ଅଣ୍ଡିରା ହାତୀ ଦିନକୁ ପ୍ରାୟ ଏକ ଟନ ଓଜନର ଡାଳପତ୍ର ଦରକାର କରେ । ଖାଦ୍ୟ ପାଇଁ ଶହ ଶହ ବର୍ଷ ଧରି ବଢ଼ିଥିବା ଗଛକୁ ସେ ଭାଙ୍ଗି ପକାଇବ । ଏତେ ଅଳ୍ପ ସମୟ ଭିତରେ ଏତେଗୁଡ଼ିଏ ଜୀବ ବଢୁଥିବାରୁ ଖୁବ ଶୀଘ୍ର ସେଠି ଆଉ ଗଛ ରହିବ ନାହିଁ । ପୂରା ଉଦ୍ୟାନଟି ନଷ୍ଟ ହୋଇଯିବ ଏବଂ ଏଥିପାଇଁ ହାତୀ ବି ଅସୁବିଧାରେ ପଡ଼ିବେ । ଉପାୟ କ'ଣ ବୋଲି ଭାରତୀୟ ନିର୍ଦ୍ଦେଶକ ତାଙ୍କୁ ପଚାରିବାରୁ ସେ କହିଲେ, "ବାଛି ବାଛି ମାରିବା । ଆମ ହାତରେ ଏକମାତ୍ର ବାଟ ହେଉଛି ଉଦ୍ୟାନ ସମ୍ଭାଳି ନ ପାରୁଥିବା ହାତୀଙ୍କୁ ମାରିଦେବା । ହାତୀ ଦଳର ପାରିବାରିକ ଜୀବନ ବଡ଼ ଜଟିଳ ହୋଇଥିବାରୁ ଏକାଥରେ ପୂରା ଦଳଙ୍କୁ ମାରିବାକୁ ହେବ । ଯଦି କେହି ଖସିଯାନ୍ତି ତେବେ ସେମାନେ ଅନ୍ୟ ଦଳଙ୍କୁ ଉତ୍ତେଇଦେବେ । ଫଳରେ ବାକି ଦଳଙ୍କର ସାମାଜିକ ଜୀବନ ଅସ୍ତବ୍ୟସ୍ତ ହୋଇଯିବ ।"

ନିର୍ଦ୍ଦେଶକ ଚମକି ପଡ଼ିବା ଦେଖି ସେ ପୁଣି କହିଲେ, "ଯଦି ଗୋଟିଏ ମଲାହାତୀର ଦାନ୍ତ, ଚମଡ଼ା, ମାଁସ ଆଦି ବିକ୍ରି କରାଯାଏ ତେବେ ସେଥିରୁ ବେଶ୍ ଅର୍ଥ ମିଳିବ । ଏହି ଅର୍ଥରେ ଉଦ୍ୟାନର ପରିଚାଳନାକୁ ଆହୁରି ଉନ୍ନତ କରାଯାଇ ପାରିବ । ଫଳରେ ତାହା ହାତୀର ସଂରକ୍ଷଣରେ ସହାୟକ ହେବ । ଯଦି କୌଣସି ବାଟରେ ଉଦ୍ୟାନ ଚାରିପଟେ ଥିବା ଗୋଷ୍ଠୀ ସେହି ଲାଭରେ ଭାଗିଦାର ହୋଇପାରନ୍ତେ, ତେବେ ସେମାନେ ହାତୀଙ୍କୁ ରକ୍ଷା କରିବାରେ ସାହାଯ୍ୟ କରନ୍ତେ । ମଲା ହାତୀର ଜିନିଷ ବିକିବା ଛଡ଼ା, ହାତୀ ମାରିବା ପାଇଁ ଆଗ୍ରହୀ ଲୋକଙ୍କଠାରୁ ବେଶ ମୋଟା ଧରଣର ଅର୍ଥ ଦାବି କରାଯାଇ ପାରନ୍ତା । ଏଥିରୁ ଆହୁରି ଅଧିକ ପଇସା ମିଳନ୍ତା । ଫଳରେ ହାତୀ ଏବଂ ଉଦ୍ୟାନ ପାଖରେ ରହୁଥିବା ଗୋଷ୍ଠୀ ଉଭୟଙ୍କର ଲାଭ ହୁଅନ୍ତା ।"

ପିଲାମାନଙ୍କୁ ପଚାରନ୍ତୁ, ସେମାନେ ଉପରର ଚିନ୍ତା ସହ ଏକମତ ହେଉଛନ୍ତି କି? ଏସୀୟ ହାତୀଙ୍କ ପାଇଁ ଏପରି କଲେ କିପରି ହେବ? ତୁମର ମତ ଓ ଯୁକ୍ତି ସହିତ ବନ୍ୟପ୍ରାଣୀ ବିଭାଗକୁ ଗୋଟିଏ ଚିଠି ଲେଖ ।

## ବଜାର ବିପନ୍ନ ପ୍ରାଣୀଙ୍କୁ ରକ୍ଷା କରିପାରିବ କି?

**ଏମ୍. ଡି. ମଧୁସୂଦନ, ଇକୋଲୋଜି ଆଣ୍ଡ କଞ୍ଜରଭେସନ ଗବେଷକ, ମହୀଶୂର**

ଗୋଟିଏ ବାଘର ମୂଲ୍ୟ କେତେ ହୋଇପାରେ? ଯଦି ଜଣେ ଚମଡ଼ା ଚୋରାବେପାରୀଙ୍କୁ ପଚରାଯାଏ ତେବେ ସେ କହିବେ କେତେ ହଜାର ଡଲାର । ଜଣେ ଛୋଟକାଟିଆ ବାଘ ଶିକାରୀ ପାଇଁ ହୁଏତ ତାହା ହେବ କେତେ ହଜାର ଟଙ୍କା । କିନ୍ତୁ ବାଘ ଦ୍ୱାରା ମରିଥିବା ମହୁ ସଂଗ୍ରହକାରୀଙ୍କ ଶୋକସନ୍ତପ୍ତ ପରିବାରଙ୍କୁ ପଚାରିଲେ ସେମାନେ କହିବେ ଯେ ବାଘଟି ଗୋଟିଏ ବୋଝ । ଅନ୍ୟ ପକ୍ଷରେ ଜଣେ ପରିବେଶବିତ୍ ଜୀବଜଗତ ପାଇଁ ତାହାର ଆବଶ୍ୟକତା ଦେଖିବେ ଏବଂ ଜଣେ କବି ସୌନ୍ଦର୍ଯ୍ୟବୋଧ ଦୃଷ୍ଟିରୁ ତା'ର ମୂଲ୍ୟ ବୁଝିବେ । ଏହି ଦୁହିଁଙ୍କର ମୂଲ୍ୟାୟନ ଆର୍ଥିକ ଆକଳନଠାରୁ ଉର୍ଦ୍ଧ୍ୱତର ସ୍ତରରେ । ତେବେ ବାଘ କ'ଣ? ଅତି ସୁନ୍ଦର ଛାଲର ଧାରକ? ଚାରିଗୋଡ଼ରେ ଚାଲୁଥିବା ପ୍ରାଚ୍ୟ ଔଷଧମାନଙ୍କର ଏକ ଭଣ୍ଡାର? ଗୋଟିଏ ରକ୍ତଲୋଭୀ ମଣିଷଖିଆ? ଉପର ସ୍ତରର ଜଣେ ଶିକାରୀ? କିମ୍ବା ଶକ୍ତି ଲାଳିତ୍ୟର ଏକ ସାଂସ୍କୃତିକ ସଙ୍କେତ? ଏଗୁଡ଼ିକ ନିଶ୍ଚିତ କେବଳ ଆଳଙ୍କାରିକ ପ୍ରଶ୍ନ ନୁହେଁ । ବରଂ ଏହା ହେଉଛି ମଣିଷପ୍ରଧାନ ପୃଥିବୀର ବାସ୍ତବତା ଭିତରେ ଏହି ସବୁ ପରିଚୟ ଭିତରେ ଅନିଶ୍ଚିତ ଭାବରେ ନିଜର ସ୍ଥିତି ଖୋଜୁଥିବା ବାଘର କଥା । ବାଘର ତିଷ୍ଠିରହିବା ଏବେ ଅତି ଅସନ୍ତୁଳିତ ଭାବରେ ନିର୍ଭର କରୁଛି ଏହିସବୁ ନିଜ ନିଜ ସହିତ ମେଳଖାଉନଥିବା ପରିଚୟଗୁଡ଼ିକୁ ଗ୍ରହଣ କରିବା ପାଇଁ ମଣିଷର - ବାଘର ନିଜର ନୁହେଁ - ସାମର୍ଥ୍ୟ ଉପରେ ।

ମୋ ମତରେ ବଜାର ବନ୍ୟପ୍ରାଣୀଠାରୁ ଲାଭ ପାଇଥାଏ ଏବଂ ବନ୍ୟପ୍ରାଣୀ ସଙ୍କଟର ମୂଳ କାରଣ । ପୃଥିବୀସାରା ବଜାର ବନ୍ୟପ୍ରାଣୀଙ୍କୁ ଏଭଳି ସଙ୍କଟମୟ ପରିସ୍ଥିତିରେ ଆଣି ପହଞ୍ଚାଇଥିବା କଥା ବେଶ୍ ଜଣାଶୁଣା । ବାଘ ହାଡ଼, ଗଣ୍ଡା ଶିଂଘ ଏବଂ ହାତୀଦାନ୍ତ ଆଦିକୁ ନେଇ ଚାଲିଥିବା ଉଜଦରର ବାଣିଜ୍ୟ ଯୋଗୁଁ ସେମାନଙ୍କର ସଂଖ୍ୟା ଗୁରୁତର ଭାବରେ କମି କମି ଚାଲୁଛି । କିନ୍ତୁ ବଜାର ଏହିସବୁ ଜିନିଷରେ ଭରପୂର ହୋଇରହୁଛି । ଯେଉଁ ଅଗମ୍ୟ ଅଞ୍ଚଳରେ ବନ୍ୟପ୍ରାଣୀ ଆଶ୍ରୟ ନେଉଥିଲେ ଏବେ ଧୀରେ ଧୀରେ ବଜାର ସେସବୁ ଜାଗାରେ ବି ପହଞ୍ଚିଲାଣି । ସାମାଜିକ ଜୀବନ ଧାରଣର ନିମ୍ନତମ ଅର୍ଥନୀତି ସହ ବିଶ୍ୱ ବାଣିଜ୍ୟ ବଜାର ଏବେ ଦ୍ରୁତ ଗତିରେ ମିଶିଯାଉଛି । ଜୀବନ ଧାରଣର ଅନେକ ଅତି ପୁରୁଣା ଧାରା ଆଜି ବିଶ୍ୱ ବଜାର ପାଇଁ ଯୋଗାଣକାରୀ ଭାବରେ କାମ କରୁଛି । ଏବେ ଆଧୁନିକ ପ୍ରଯୁକ୍ତିବିଦ୍ୟା ସାହାଯ୍ୟରେ ସେମାନେ ଦୋହନର ସୀମା ଟପିଯାଉଛନ୍ତି । ଏହି ଧ୍ୱଂସକାରୀ ଯୋଡ଼ିର କବଳରୁ ଖୁବ୍ କମ୍ ବନ୍ୟପ୍ରାଣୀ ବା ଆବାସସ୍ଥଳୀ ବର୍ତ୍ତିପାରିଛନ୍ତି । ଅପର ପକ୍ଷରେ, ମୁଁ ବିଶ୍ୱାସ କରେ ଯେ ବଜାର ବନ୍ୟପ୍ରାଣୀଙ୍କ ପୃଷ୍ଠପୋଷକତା କରୁଥିବା କଥା ହେଉଛି କେବଳ ଏକ କଳ୍ପନାବିଳାସୀ ଚିନ୍ତା, ବାସ୍ତବ ନୁହେଁ । ବଜାର ପଣ୍ୟରୂପୀ ବନ୍ୟପ୍ରାଣୀଙ୍କ ମୂଲ୍ୟକୁ ପସନ୍ଦ କରେ, କିନ୍ତୁ ତାଙ୍କର କାମର, ସୌନ୍ଦର୍ଯ୍ୟର ବା ପରୋକ୍ଷ ମୂଲ୍ୟକୁ ବୁଝେନାହିଁ । ତାଙ୍କ ପାଇଁ ପ୍ରବାଳ ହୁଏ ସିମେଣ୍ଟ, ହାତୀ ହୁଏ ହାତୀଦାନ୍ତ ଏବଂ ଗଛ ହୁଏ କେବଳ କାଠ । ଅନାସକ୍ତ ଭାବ ଏବଂ ଅର୍ଥନୀତିକ ନିଖୁଣତାର ପତଳା ଚମ ତଳେ ଲୁଚିଥିବା ତାଙ୍କର ଏହି ମନୋବୃତ୍ତି ହେଉଛି ବିପଦଜନକ ଭାବରେ ସଂକୀର୍ଣ୍ଣ । ଆଜିର ବଜାରକୁ ଚଳାଉଥିବା ଆର୍ଥିକ ଦର୍ଶନ ଧରିନେଉଛି ଯେ ପ୍ରକୃତି ଯୋଗାଉଥିବା ସାମଗ୍ରୀ ଓ ସେବା ହେଉଛି ସାଧାରଣ ସମ୍ବଳ । ସେମାନେ ବୁଝିପାରୁନାହାନ୍ତି ଯେ ସୀମିତ ପ୍ରାକୃତିକ ସମ୍ବଳ ଉପରେ ହିଁ ବଜାରର ଭାଗ୍ୟ ନିର୍ଭର କରୁଛି ।



Digitized by srujanika@gmail.com

ତଥାପି ଅନୈତିକ ଶୋଷଣ ବଢ଼ିଚାଲିଛି, କାରଣ ନିତିଦିନିଆ ବଜାରରେ ତିଷ୍ଠି ରହିବା ପାଇଁ ଭବିଷ୍ୟତକୁ ହିଁ ବିକିବାକୁ ପଡୁଛି । ତେଣୁ ପ୍ରାକୃତିକ ସମ୍ପଦର ସଂରକ୍ଷଣ ଦିଗରେ ବଜାରର ଦାୟିତ୍ୱ ହେଉଛି ପ୍ରାୟ ଶୂନ୍ୟ ।

ବନ୍ୟପ୍ରାଣୀ ସଂରକ୍ଷଣ କ୍ଷେତ୍ରରେ ଆମର ଅସୁବିଧା ସବୁର ପ୍ରତିକାର ପାଇଁ ଅନେକ 'ସାପତେଲ' ଔଷଧ ବିକାଯାଉଛି । ସଂରକ୍ଷଣ ଓ ବଜାରକୁ ମିଶାଇବା କଥା ମଧ୍ୟ ସେଥିରେ କୁହାଯାଉଛି । ବନ୍ୟପ୍ରାଣୀ ପାଳନ କେନ୍ଦ୍ରରେ ଜନ୍ମ ହୋଇଥିବା ବାଘର ହାଡ଼ ବା କୁମ୍ଭୀରର ଚମଡ଼ା କ'ଣ ଉତ୍ପାଦନ କରାଯାଇପାରିବ ନାହିଁ ? ଏହା ଫଳରେ କୁମ୍ଭୀର ବା ବାଘ ତିଷ୍ଠି ରହିବା ନିଶ୍ଚିତ ହେବନାହିଁ କି ? ପ୍ରସ୍ତାବଗୁଡ଼ିକ ଯେତେ ଆକର୍ଷଣୀୟ ଲାଗିଲେ ବି ଏସବୁ ଜଙ୍ଗଲରେ ଶିକାରକୁ ରୋକି ପାରିବ ନାହିଁ ଏବଂ ପ୍ରକୃତିରେ ବନ୍ୟପ୍ରାଣୀଙ୍କର ଭୂମିକା ସେହି କେନ୍ଦ୍ରଗୁଡ଼ିକ ତୁଲାଇ ପାରିବେନାହିଁ । ବଜାର ଉପଭୋକ୍ତାଙ୍କ ଖିଆଲ ଉପରେ ନିର୍ଭର କରେ । ଯଦି ଆଜିର ଖିଆଲ କାଲି ବଦଳିଯାଏ, ତେବେ ସେହି ବନ୍ୟପ୍ରାଣୀ ପାଳନ କେନ୍ଦ୍ର ସବୁର ହେବ କ'ଣ ? 'ଅସୁନ୍ଦର ଓ ମୂଲ୍ୟହୀନ' ମନେକରାଯାଉଥିବା ପୋକ ଓ ଅନ୍ୟ ପ୍ରାଣୀଙ୍କର ସଂରକ୍ଷଣ କରିବ ବା କିଏ ? ବାଘ ଭଳି ସେମାନେ ମଧ୍ୟ ବନ୍ୟପ୍ରାଣୀ । ମୋଟ ଉପରେ ଦେଖିଲେ, ଅସଂଖ୍ୟ ଜୀବଙ୍କର ବ୍ୟାପକ ସୂକ୍ଷ୍ମ ସମ୍ପର୍କକୁ ବିକ୍ରିଯୋଗ୍ୟ ପଣ୍ୟର ଖେଚେଡ଼ିରେ ପରିଣତ କରିବାଟା ବନ୍ୟପ୍ରାଣୀଙ୍କୁ ବଞ୍ଚାଇବାର ଉଚିତ ବାଟ ବୋଲି ମନେହୁଏନାହିଁ ।

## ରୋମୁଲସ ହ୍ୱିଟେକର, ଜାତିସଂଘର ବନ୍ୟପ୍ରାଣୀ ପରିଚାଳନା ଉପଦେଷ୍ଟା

ତେଇଁଉଠ ଏବଂ ଅବସ୍ଥାକୁ ବୁଝ । ପୂର୍ଣ୍ଣ ସୁରକ୍ଷା ଆଉ ଆମର ବନ୍ୟପ୍ରାଣୀକୁ ରକ୍ଷା କରିପାରୁନାହିଁ । ତେଣୁ ଏଠାରେ ଦେଖିବା ଚିରନ୍ତନ ବିନିଯୋଗ ଏବଂ ବନ୍ୟପ୍ରାଣୀଙ୍କ ବାଣିଜ୍ୟ କିପରି କାମ କରୁଛି । ମୋଜାମ୍ବିକ ଓ ପାପୁଆ ନିଉଗିନିରେ ପାରମ୍ପରିକ ଜମି ଉପରେ ଏବଂ ବନ୍ୟପ୍ରାଣୀଙ୍କ ଉପରେ ଅଧିକାର ଗ୍ରାମବାସୀ ଓ ଜନଗୋଷ୍ଠୀଙ୍କ ହାତରେ ରହିଛି । ବିଶେଷଜ୍ଞଙ୍କ ପରାମର୍ଶ ନେଇ ସେମାନେ ସ୍ଥିର କରନ୍ତି ନିଜ ବ୍ୟବହାର ପାଇଁ ସେମାନେ କେତେ ଜୀବ ମାରିବେ, ଶିକାରୀଙ୍କୁ ସେମାନେ କ'ଣ ବିକ୍ରି କରିପାରିବେ ଏବଂ ସେମାନଙ୍କ ପରିଚାଳନାରେ ଥିବା ଜଙ୍ଗଲ ଜମି କିପରି ବ୍ୟବହାର କରାଯିବ । ପରିଚାଳନାର ଦାୟିତ୍ୱ ଗାଁ ଲୋକମାନଙ୍କ ହାତରେ ଥିବାଯୋଗୁଁ ସେମାନେ ସବୁ ଜୀବଜନ୍ତୁ ମାରିପକାଇବାର ବା ଜଙ୍ଗଲକୁ ଉଜାଡ଼ିଦେବାର ସମ୍ଭାବନା ପ୍ରାୟ ନଥାଏ । କାରଣ ବଜାର ଅର୍ଥନୀତିର ନିୟମ ଅନୁସାରେ ସୁନା ଅଣ୍ଡା ଦେଉଥିବା ହଂସକୁ କେହି ମାରିଦିଏ ନାହିଁ । ଯେଉଁ ଲୋକମାନେ ଜଙ୍ଗଲ ଜିନିଷକୁ ସରକାରୀ ମାଲ୍ ଭାବି ମନଇଚ୍ଛା ବ୍ୟବହାର କରନ୍ତି, ଏଭଳି କାର୍ଯ୍ୟକ୍ରମ ଯୋଗୁଁ ସେମାନେ ଏବେ ତା'ର ସୁରକ୍ଷା କରିବେ ।

ସାରା ପୃଥିବୀର କେତେକ ନିର୍ଦ୍ଦିଷ୍ଟ ବନ୍ୟପ୍ରାଣୀ ବ୍ୟବହାର ଯୋଜନା ଭିତରେ ରହିଛି - ଜଙ୍ଗଲରେ ବିପଦ ସୃଷ୍ଟି କରୁଥିବା ଜୀବଙ୍କୁ ମାରିବା ପାଇଁ ଶିକାରୀଙ୍କୁ ଚଢ଼ା ମୂଲ୍ୟରେ ଲାଇସେନ୍‌ସ ଦେବା; ମାଂସ, ଚମଡ଼ା, ଶିଂଘ ଆଦି ପାଇଁ ହରିଣ ଏବଂ ଖୁରାଥିବା ଅନ୍ୟ ସ୍ତନ୍ୟପାୟୀ ପ୍ରାଣୀଙ୍କୁ ବଢ଼ାଇବା; ନିୟନ୍ତ୍ରିତ ହାରରେ ଶିକାର କରିବା । ଏସବୁରୁ ଯେଉଁ ଲକ୍ଷ ଲକ୍ଷ ଡଲାର ଅର୍ଥ ମିଳୁଛି ସେଗୁଡ଼ିକ ବନ୍ୟପ୍ରାଣୀ ସଂରକ୍ଷଣ, ଗବେଷଣା ଏବଂ ଆବାସସ୍ଥଳୀ ସୁରକ୍ଷାରେ ବ୍ୟବହୃତ ହେଉଛି । ଉଦାହରଣ ସ୍ୱରୂପ, ଶିକାରୀମାନଙ୍କ ଯୋଗୁଁ ହିଁ ଆମେରିକାର ଟେକ୍ସାସରେ ଭାରତ ତୁଳନାରେ ଅଧିକ ସଂଖ୍ୟକ କୃଷ୍ଣସାର ମୃଗ (ବ୍ଲାକବକ୍) ଅଛନ୍ତି । ଚିରନ୍ତନ ବିନିଯୋଗର ସଫଳ ଉଦାହରଣ ଖୋଜିଲେ କୁମ୍ଭୀର ଚାଷକୁ କେହି ବଳିଯାଇ ପାରିବେ ନାହିଁ । ଚାଷ କରିବା ପାଇଁ କୁମ୍ଭୀର ଗୋଟିଏ ଆଦର୍ଶ ଜୀବ । କାରଣ ଏମାନେ ଅଳ୍ପ ଖାଆନ୍ତି; ଖୁବ୍ ରୋଗ ପ୍ରତିରୋଧୀ; ଶୀଘ୍ର ବଢ଼ନ୍ତି; ମୋଟା, ଟାଣ, ଦାମିକା ଚମଡ଼ା ଏବଂ ପୁଷ୍ଟିସାର ଯୁକ୍ତ ସୁଆଦିଆ ମାଂସ ଯୋଗାନ୍ତି । ଯେଉଁ ସବୁ ଦେଶରେ କୁମ୍ଭୀର ଚାଷ ହେଉଛି ସେସବୁ ଜାଗାରେ ସୁସ୍ଥ ଜଙ୍ଗଲୀ କୁମ୍ଭୀର ଦଳ ତିଷ୍ଠିରହିପାରିଛି ଏବଂ ତାହା ସହିତ ଯୋଡ଼ାଥିବା ମୂଲ୍ୟବାନ ଜଳାଭୂମି ଏବଂ ଅନ୍ୟ ବନ୍ୟପ୍ରାଣୀ ମଧ୍ୟ ସୁରକ୍ଷିତ ରହିଛି । ଏହାର ଶିକ୍ଷଣୀୟ କଥାଟି ଅତି ସ୍ପଷ୍ଟ, କିନ୍ତୁ ଭାରତ ମୋଟେ ଏହା ଶୁଣୁନାହିଁ । ଆମେ ଆମ କୁମ୍ଭୀରକୁ କେବଳ ଭଲ ପାଇବାକୁ ଚାହୁଁଛେ ଏବଂ ତାଙ୍କୁ ଏକ ମୂଲ୍ୟବାନ ସମ୍ପଦ ଭାବରେ ଦେଖିବାକୁ ଚାହୁଁନାହେଁ । ତେଣୁ ସେହି କୁମ୍ଭୀରମାନେ ତାଙ୍କର ନିଜ ପ୍ରାକୃତିକ ପରିବେଶରେ ଏବେ ବିପଦରେ ପଡୁଛନ୍ତି, ଏଣେ କିନ୍ତୁ ସରକାରୀ କୁମ୍ଭୀର ଉଦ୍ୟାନମାନଙ୍କରେ ବର୍ଷକୁ ୧୦,୦୦୦ରୁ ୧୫,୦୦୦ ଅଣ୍ଡା ସଢୁଛି ବୋଲି ଅଟକଳ କରାଯାଏ ।

କିନ୍ତୁ ଭାରତର ବନ୍ୟପ୍ରାଣୀ ସୁରକ୍ଷା ପାଇଁ ସୁଦୂରପ୍ରସାରୀ ବିକଳ୍ପ ପଦକ୍ଷେପ ସବୁ ଉପରେ ଅନାସକ୍ତ ବିତର୍କ ଓ ବିଚାର କରିବା ଏବେ ଅତି ଜରୁରୀ ହୋଇପଡ଼ିଛି । ଏଥିରୁ କିଛି ପଦକ୍ଷେପ ପ୍ରଥମରୁ ହୁଏତ ଘୃଣ୍ୟ ବି ମନେ ହୋଇପାରେ । ବନ୍ୟପ୍ରାଣୀଙ୍କର ଚିରନ୍ତନ ବିନିଯୋଗ ଏବଂ ସଂରକ୍ଷଣରେ ଲୋକଙ୍କ ଭାଗୀଦାରୀର ସଫଳ କାହାଣୀ ଅନେକ ରହିଛି । ଆହୁରି ମଧ୍ୟ ଜଣାଅଛି ଯେ ଯେତେ ନୀତି ପ୍ରଣୟନ କଲେ ଏବଂ ଜଗାରଖା କଲେ ବି ଅବୈଧ ଶିକାରୀଙ୍କୁ ଅଟକାଇ ହେବନାହିଁ ।

ଏଇ ଛୋଟିଆ ଆଲୋଚନା ଭିତରେ "କିପରି" ପ୍ରଶ୍ନର ଉତ୍ତର ଦେବା ସମ୍ଭବ ନୁହେଁ । ତଥାପି ଏହା ଦୋହରାଯାଇପାରେ ଯେ ଅନେକ ବିକଶିତ ଏବଂ ବିକାଶଶୀଳ ଦେଶମାନଙ୍କରେ କେତେ ଦଶନ୍ଧି ଧରି କୁମ୍ଭୀର ଚାଷ ସଂରକ୍ଷଣ ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ହତିଆର ବୋଲି ପ୍ରମାଣିତ ହୋଇଛି । ଡବ୍ଲୁଡବ୍ଲୁଏଫ୍ ଏବଂ ଆଇୟୁସିଏନ୍ ଭଳି ପୃଥିବୀର ମୁଖ୍ୟ ସଂରକ୍ଷଣ ସଂସ୍ଥା ସବୁ ମଧ୍ୟ ଏହାକୁ ସ୍ୱୀକୃତି ଦେଇଛନ୍ତି ।

ଗୋଟିଏ ସକାରାତ୍ମକ କଥାରେ ମୁଁ ଶେଷ କରିବି - ୧୯୭୬ରେ ତାମିଲନାଡୁରେ ସାପ ଚମଡ଼ା ଉପରେ ନିଷେଧାଜ୍ଞା ଜାରି ହେବାରୁ ଇରୁଲା ଜାତିର ଲୋକମାନେ ସେମାନଙ୍କର ପାରମ୍ପରିକ ସାପ ଧରା ଜୀବିକାରୁ ବଞ୍ଚିତ ହେଲେ । ଏହା ସାପଙ୍କ ପାଇଁ ଭଲ, କିନ୍ତୁ ଇରୁଲାଙ୍କ ପାଇଁ ଖରାପ । ଏବେ ମୋଟ ସାପ ବିଷ ଉତ୍ପାଦନର ଶତକଡ଼ା ୯୦ ଭାଗ ଇରୁଲାମାନେ ସମବାୟ ଚାଷ ମାଧ୍ୟମରେ ଯୋଗାଉଛନ୍ତି । ଚାରିଥର ବିଷ କାଢ଼ିବା ପରେ ସାପଗୁଡ଼ିକୁ ଜଙ୍ଗଲରେ ଛାଡ଼ି ଦିଆଯାଉଛି । ଏହା ହେଉଛି ଚିରନ୍ତନ ବିନିଯୋଗର ଏକ ସ୍ଥାନୀୟ ରୂପାୟନ - ଔଷଧ ବଜାରର ଚାହିଦା ଏହାକୁ ଚଳାଉଛି । ଏହା ସାପ ପାଇଁ ଭଲ, ଇରୁଲା ପାଇଁ ଭଲ ଏବଂ ତମ ପାଇଁ ଓ ମୋ ପାଇଁ ବି ଭଲ (ଯଦି ଆମକୁ କେବେ ସାପ କାମୁଡ଼େ) । ବିତର୍କର ଏହା ଆରମ୍ଭ ମାତ୍ର । ଏହାର କାର୍ଯ୍ୟକାରୀତାକୁ ପରୀକ୍ଷା ନକରି ତାକୁ ଫିଙ୍ଗିଦିଅ ନାହିଁ । କାରଣ ପ୍ରତିଦିନ ଆମର ବାଘ, ହାତୀ, କୁମ୍ଭୀର ଏବଂ ଜଙ୍ଗଲ କମୁଛି - ଲୋକଙ୍କ ହାତରେ ଏସବୁର ଦାୟିତ୍ୱ ନାହିଁ ବା ତାଙ୍କ ପାଇଁ ଏସବୁର କିଛି ଆର୍ଥିକ ମୂଲ୍ୟ ନାହିଁ ।

*ଉତ୍ସ: ଦି ଇକୋନୋମିକ୍ ଟାଇମ୍‌ସ୍, ଅକ୍‌ଟୋବର ୧୭, ୨୦୦୦, ପୃଷ୍ଠା-୭ ।*



Digitized by srujanika@gmail.com

# ହାତୀଙ୍କୁ ବଞ୍ଚାଅ

ହାତୀର ସୁରକ୍ଷା ଦିଗରେ ସରକାର ନେଇଥିବା ବିଭିନ୍ନ ପଦକ୍ଷେପ ବିଷୟରେ ପିଲାମାନେ ଜାଣିବେ ।

| | |
|---|---|
| *ଉଦ୍ଦେଶ୍ୟ* | ହାତୀଥିବା ଅଞ୍ଚଳରେ ଆସୁଥିବା ସମସ୍ୟା ସମାଧାନର ଜଟିଳତା ବିଷୟରେ ପିଲାମାନେ ଜାଣିବେ । |
| *ସ୍ତର* | ଉଚ୍ଚତର |
| *ବିଷୟ* | ବିଜ୍ଞାନ |
| *ଦଳର ଆକାର* | ଚାରୋଟି ଦଳ |
| *ସ୍ଥାନ* | ଶ୍ରେଣୀଗୃହ ଭିତରେ |
| *ସମୟ ଅବଧି* | ୩୦ ମିନିଟ |
| *ସାମଗ୍ରୀ* | ଲେଖିବା ଜିନିଷ |

## ଆରମ୍ଭ କରିବା ଆଗରୁ

ପୃଷ୍ଠା ୮୩-୮୯ରେ ଥିବା ହାତୀ ସୁରକ୍ଷା ବିଷୟରେ ବିଶଦ ଆଲୋଚନା କରି ଏହି କାମ ଆରମ୍ଭ କରାଯାଇପାରେ । ସେହି ଲେଖାର ସାରାଂଶ ପୁଣିଥରେ ଶ୍ରେଣୀରେ କୁହାଯାଇପାରେ ଏବଂ କାମ କରୁଥିବା ବେଳେ ନିଜ ପାଖରେ ରଖିବା ପାଇଁ ପିଲାଙ୍କୁ ଦେଇପାର ।

## ପରଖର ଧାରା

ପୂରା ଶ୍ରେଣୀକୁ ଚାରି ଦଳରେ ଭାଗ କର । ପ୍ରତି ଦଳ ଜଣେ ଜଣେ ପ୍ରତିନିଧି ବାଛିବେ ଯିଏକି ପୂରା ଦଳର ବିବରଣୀ ଶ୍ରେଣୀରେ ଉପସ୍ଥାପନା କରିବେ ।

ପ୍ରତି ଦଳ ହାତୀ ଅଭୟାରଣ୍ୟ ପ୍ରକଳ୍ପରେ ହାତୀର ସୁରକ୍ଷା ଏବଂ ସଂରକ୍ଷଣ ପାଇଁ ହୋଇଥିବା ବିଭିନ୍ନ କମିଟି ଭାବରେ କାମ କରିବେ । ଏବେ ଗୋଟିଏ ସମସ୍ୟା ଆସିଥିବାରୁ ଅଭୟାରଣ୍ୟର ନିର୍ଦ୍ଦେଶକ କମିଟିର ପରାମର୍ଶ ପାଇଁ ଆଲୋଚନା ସଭା ଡକାଇଛନ୍ତି । ତଳେ ଚାରିଟି ସମସ୍ୟାର ଧାରଣା ଦିଆଯାଇଛି । ପ୍ରତି ଦଳ ଗୋଟିଏ କରି ସମସ୍ୟା ନେଇ ଆଲୋଚନା କରିବେ ।

ପ୍ରତି ଦଳକୁ ଆଲୋଚନା ପାଇଁ ୩୦ ମିନିଟ ଦିଆଯାଇଛି । ଏହି ସମୟ ଭିତରେ ସେମାନେ ନିଜ ନିଜ ଭିତରେ ବିଚାର ବିମର୍ଷ କରି ସମସ୍ୟାର ସମାଧାନ ପାଇଁ ଗୋଟିଏ ବାଟ ବାହାର କରିବେ ।

ତାଙ୍କ ସମସ୍ୟାର ସମାଧାନ ଉପରେ ନିଜର ମତ କହିବାକୁ ଦଳର ପ୍ରତି ପିଲାକୁ ୧ ମିନିଟ ସମୟ ଦିଆଯିବ । ତା'ପରେ ସମସ୍ତଙ୍କ ମତକୁ ସେମାନେ ବିଚାର କରିବେ ଏବଂ କି କି ପ୍ରକାରର କାମ କରାଯାଇପାରେ ତା'ର ଏକ ତାଲିକା ପ୍ରସ୍ତୁତ କରିବେ । ଏହି ସବୁ କାମ କରିବା ବେଳେ କେଉଁ ପ୍ରକାରର ବାଧା ବା ସମସ୍ୟା ଆସିପାରେ ତାହା ମଧ୍ୟ ସେମାନେ ଦେଖାଇବେ ।

ପ୍ରତି ଦଳର ପିଲାମାନେ ନିଜ ସମସ୍ୟା ଉପରେ ଆଲୋଚନା କରି ତାହାର ସମାଧାନ ପାଇଁ ଗୋଟିଏ କାମ ଯୋଜନା ପ୍ରସ୍ତୁତ କରିବେ ଏବଂ ଶେଷରେ ପ୍ରତି ଦଳର ପ୍ରତିନିଧି ପୂରା ଶ୍ରେଣୀ ଆଗରେ ସେମାନେ ଚିନ୍ତା କରିଥିବା ସମାଧାନ ଉପସ୍ଥାପିତ କରିବେ ।

### ଆଲୋଚନା ପାଇଁ କିଛି ପରିସ୍ଥିତି

ତଳେ ଚାରୋଟି ପରିସ୍ଥିତି ଦିଆଯାଇଛି । ପ୍ରତି ଦଳକୁ ଗୋଟିଏ ପରିସ୍ଥିତି ଦିଅ । ସେମାନେ ହାତୀ ପ୍ରକଳ୍ପ ଅଧୀନରେ ତିଆରି କରାଯାଇଥିବା କମିଟି ସବୁ ବୋଲି କହିଦିଅ । ସମସ୍ୟାର ସମାଧାନ ପାଇଁ ଗୋଟିଏ ଗୋଟିଏ କାମ ଯୋଜନା ସେମାନଙ୍କୁ କରିବାକୁ ହେବ ।

### ପରିସ୍ଥିତି - ୧

ଆସାମରେ କାଠ କାଟିବା ଏବଂ ବିକିବା ଉପରେ ନିଷେଧାଜ୍ଞା ଜାରି କରାଯାଇଛି । ତେଣୁ କାଠ ଶିଳ୍ପର ବହୁତ କ୍ଷତି ହେଉଛି । ନିଷେଧାଜ୍ଞାର ଆଉ ଗୋଟିଏ ବଡ଼ ଅସୁବିଧା ହେଉଛି ଯେ ଏସବୁ ଜଙ୍ଗଲ ଶିବିରରେ ଥିବା ପୋଷା ହାତୀମାନଙ୍କ ପାଇଁ କିଛି କାମ ନାହିଁ । କାମ ନଥିବାରୁ ହାତୀମାନେ ବିରକ୍ତ ହେଉଛନ୍ତି ଏବଂ ଅଦ୍ଭୁତ ବ୍ୟବହାର ଦେଖାଉଛନ୍ତି । କେତେକ ହାତୀ ଫସଲ ନଷ୍ଟ କରୁଛନ୍ତି ଏବଂ ଲୋକଙ୍କୁ ମାରୁଛନ୍ତି । ଗତବର୍ଷ ଏହି ହାତୀମାନେ ପାଞ୍ଚ ଜଣ ଲୋକଙ୍କୁ ମାରିଥିବାର ସୂଚନା ମିଳିଛି । ତାଙ୍କର ପ୍ରତିରୋଧ କଲାବେଳେ ଲୋକମାନେ ବି ଦୁଇଟି ହାତୀ ମାରିଦେଇଛନ୍ତି ।

### ପରିସ୍ଥିତି - ୨

ଦକ୍ଷିଣ ଭାରତରେ ଦେଶର ସବୁଠାରୁ ଅଧିକ ଅଣ୍ଡିରା ହାତୀ ଅଛନ୍ତି । ଏଠିକାର ଅଣ୍ଡିରା ହାତୀମାନେ ଶିକାରୀ ହାବୁଡ଼ରେ ପଡ଼ିବାର ଭୟ ସବୁବେଳେ ରହୁଛି । ଗତ କିଛି ଦିନରେ କେତେଗୁଡ଼ିଏ ଶିକାର ଘଟଣା ଘଟିଛି । ମାତ୍ର ଦୁଇଦିନ ତଳେ ହାତୀ ଅଭୟାରଣ୍ୟରେ ଗୋଟିଏ ଜଙ୍ଗଲୀ ଦନ୍ତାହାତୀ ମରିଯାଇଥିବାର ଖବର ମିଳିଛି । ହାତୀଟିକୁ ଗୋଟିଏ ବନ୍ଧୁକରେ ମରାଯାଇଛି ବୋଲି ବିଶ୍ୱାସ କରାଯାଉଛି । ହାତୀଦାନ୍ତ ପାଇଁ ବାଛି ବାଛି ଏଭଳି ଅଣ୍ଡିରା ହାତୀ ମାରିବା ଦ୍ୱାରା କେବଳ ହାତୀ ସଂଖ୍ୟା କମୁନାହିଁ, ବରଂ ଲିଙ୍ଗ ଅନୁପାତ ବି ବଦଳିଯାଉଛି ଏବଂ ଅଣ୍ଡିରା ଦନ୍ତାହାତୀଙ୍କ ସଂଖ୍ୟା କମୁଛି ।

### ପରିସ୍ଥିତି - ୩

ଭାରତର ପୂର୍ବାଞ୍ଚଳରେ ମରୁଡ଼ି ହୋଇଛି । ଉଭୟ ମଣିଷ ଏବଂ ବନ୍ୟପ୍ରାଣୀ ମରୁଡ଼ି ଯୋଗୁଁ କ୍ଷତିଗ୍ରସ୍ତ ହୋଇଛନ୍ତି । ମରୁଡ଼ିର ମୁକାବିଲା କରିବା ପାଇଁ



Digitized by srujanika@gmail.com

ତାଲିଆଡ଼େ ବିଭିନ୍ନ ପଦକ୍ଷେପ ନିଆଯାଉଛି । ଅନେକ ସଂଖ୍ୟାରେ ହାତୀ ଥିବା ପଶ୍ଚିମବଙ୍ଗର ଅଭୟାରଣ୍ୟରେ ବି ମଲୂଡ଼ି ଦେଖାଦେଇଛି । ସାତ ଦିନ ଭିତରେ ଦୁଇଟି ହାତୀଛୁଆ ମରିଯାଇଛନ୍ତି । ନିକଟ ଭବିଷ୍ୟତରେ ଏହି ଅଞ୍ଚଳରେ ବର୍ଷାର କୌଣସି ସମ୍ଭାବନା ଦେଖାଯାଉନାହିଁ । ଉଚିତ ପଦକ୍ଷେପ ନିଆନଗଲେ ହାତୀ ଏବଂ ଅନ୍ୟ ପ୍ରାଣୀଙ୍କର ଅବସ୍ଥା ଆହୁରି ଖରାପ ହେବ ।

### ପରିସ୍ଥିତି - ୪

ଉତ୍ତରପ୍ରଦେଶର ଉତ୍ତର ଭାଗରେ ହାତୀ ଅଭୟାରଣ୍ୟ ଭିତରେ ଗୋଟିଏ ଜଳବିଦ୍ୟୁତ ପ୍ରକଳ୍ପ ତିଆରି ହେଉଛି । ରାସ୍ତା ଏବଂ ରେଳରାସ୍ତା ତିଆରି ହେବା ଫଳରେ ଆବାସସ୍ଥଳୀ ତ ଆଗରୁ ଖଣ୍ଡ ଖଣ୍ଡ ହୋଇଯାଇଛି, ସେଥିରେ ପୁଣି ଏହି ପ୍ରକଳ୍ପ ଆହୁରି ନୂଆ ସମସ୍ୟା ସୃଷ୍ଟି କରିବ । ହାତୀଙ୍କ ଚଲାବୁଲାକୁ ଏହା କମାଇଦେବ ଏବଂ ଗୋଟିଏ ଛୋଟିଆ ଅଞ୍ଚଳ ଭିତରେ ହାତୀ ରହିଯିବେ । ଏହା ହାତୀର ବ୍ୟବହାର ଏବଂ ଚାଲିଚଳଣକୁ ପ୍ରଭାବିତ କରିବ । ପରିବେଶବିତ୍‌ମାନେ ଏହି ବନ୍ଧ ବିରୁଦ୍ଧରେ ଗୋଟିଏ ସମାବେଶର ଆୟୋଜନ କରୁଛନ୍ତି । କିନ୍ତୁ ଏ ଅଞ୍ଚଳରେ ଅତି କମ୍ ବିଦ୍ୟୁତ ଶକ୍ତି ଏବେ ମିଳୁଛି । ତେଣୁ ଶକ୍ତି ଚାହିଦା ପୂରଣ କରିବା ପାଇଁ ସେ ପ୍ରକଳ୍ପର ଆବଶ୍ୟକତା ମଧ୍ୟ ରହିଛି ।

## ସଂପ୍ରସାରଣ/ପରିବର୍ତ୍ତନ

- ଯଦି ତୁମେ ଗୋଟିଏ ହାତୀ ଅଭୟାରଣ୍ୟ ପାଖରେ ଅଛ ତେବେ ସେଠାରେ ହାତୀଙ୍କର ସମସ୍ୟା ଏବଂ ତାହାକୁ ଦୂର କରିବା ପାଇଁ କର୍ତ୍ତୃପକ୍ଷ କି ପ୍ରକାର ପଦକ୍ଷେପ ନେଇଛନ୍ତି, ସେ ବିଷୟରେ ଅଭୟାରଣ୍ୟର କର୍ତ୍ତୃପକ୍ଷଙ୍କ ସହ ଆଲୋଚନା କରିପାରିବ ।
- ଯଦି ହାତୀ ନଥିବା ଅଞ୍ଚଳରେ ରହିଛ ତେବେ ଚିଡ଼ିଆଖାନା ଅଧିକାରୀଙ୍କୁ ହାତୀଙ୍କ ସମସ୍ୟା ବିଷୟରେ (ଚାଲବୁଲ କରିନପାରିବା, ରୋଗ ଆଦି ବିଷୟରେ) ଏବଂ ଏହାକୁ ଦୂର କରିବା ପାଇଁ କି ପ୍ରକାରର ପଦକ୍ଷେପ ସବୁ ନିଆଯାଉଛି ସେ ବିଷୟରେ ପଚାରିପାରିବ ।



## ଜୀବଜାତିଙ୍କ ପ୍ରତି ବିପଦର ଶ୍ରେଣୀବିଭାଗ

*ଆଇୟୁସିଏନ୍ - ଦି ୱାର୍ଲ୍ଡ କନଜରଭେସନ୍ ୟୁନିଅନ* ହେଉଛି ପୃଥିବୀର ସବୁଠାରୁ ବଡ଼ ସଂରକ୍ଷଣ ସଂସ୍ଥା । ଏହା ଗୋଟିଏ ନାଲି ତଥ୍ୟ ବହି (ରେଡ୍ ଡାଟା ବୁକ୍) ପ୍ରସ୍ତୁତ କରିଛନ୍ତି । ଏହାର ଲକ୍ଷ ହେଉଛି ଜୀବଜାତିମାନଙ୍କ ପ୍ରତି ବିପଦର ଉଗ୍ରତା ଅନୁସାରେ ଶ୍ରେଣୀବିଭାଗ କରିବା ଏବଂ କେତେ ଶୀଘ୍ର ସେମାନେ ଲୋପ ପାଇବେ ତାହା ହିସାବ କରିବା । ଆଇୟୁସିଏନ୍ ତାଲିକାଭୁକ୍ତ କରିଥିବା ସଙ୍କଟର ପ୍ରକାର ଏବଂ ସେମାନଙ୍କ ସଂଜ୍ଞା ଏହିପରି -

**ବିଲୁପ୍ତ (ଏକ୍ସଟିଙ୍କ୍ଟ, ଇଏକ୍ସ):** କୌଣସି ଜାତିର ଶେଷ ଜୀବଟି ମରିଯାଇଥିବା କଥା ନିଃସନ୍ଦେହ ଭାବରେ ଜଣାଥିବା । ଭାରତରେ ଚିତାବାଘ, ଗୋଲାପୀମୁଣ୍ଡୀ ବତକ ଏବଂ ହିମାଳୟର ତିତ୍ତିର ଚଢ଼େଇ ପୂରା ବିଲୁପ୍ତ ।

**ଜଙ୍ଗଲରେ ଲୁପ୍ତ (ଏକ୍ସଟିଙ୍କ୍ଟ ଇନ୍ ଦି ୱାଇଲ୍ଡ, ଇଡବ୍ଲୁ):** କୌଣସି ଜୀବଜାତି ଜଙ୍ଗଲରୁ ଲୋପ ପାଇସାରିଥିବ, କେବଳ ପୋଷା ଭାବରେ ବା ଚିଡ଼ିଆଖାନା ଆଦିରେ ରହିଥିବ ।

**ଗୁରୁତର ବିପନ୍ନ (କ୍ରିଟିକାଲି ଏନେ୍‌ଡଞ୍ଜରଡ୍, ସିଆର୍):** ନିକଟ ଭବିଷ୍ୟତରେ ଲୋପ ପାଇଯିବାର ବହୁତ ସମ୍ଭାବନା ଥିବା କୌଣସି ଜୀବଜାତି ।

**ବିପନ୍ନ (ଏନେ୍‌ଡଞ୍ଜରଡ୍, ଇଏନ):** କୌଣସି ଜୀବଜାତି ଗୁରୁତର ବିପନ୍ନ ଅବସ୍ଥାରେ ନଥିଲେ ମଧ୍ୟ ଯେଉଁ ପ୍ରାଣୀ ନିକଟ ଭବିଷ୍ୟତରେ ଲୋପ ପାଇଯିବାର ସମ୍ଭାବନା ରହିଛି, ତାକୁ ବିପନ୍ନ ଶ୍ରେଣୀରେ ରଖାଯାଏ । ହାତୀ, ବାଘ, ମେରୁବାଘ ଆଦି ଏହି ଶ୍ରେଣୀର ଜୀବ ।

**ସମ୍ଭାବ୍ୟ ବିପନ୍ନ (ଭଲନରେବଲ୍, ଭିୟୁ):** କୌଣସି ଜୀବଜାତି ବିପନ୍ନ ବା ଗୁରୁତର ବିପନ୍ନ ହୋଇନଥିଲେ, କିନ୍ତୁ ଅଳ୍ପ କିଛି ବର୍ଷ ଭିତରେ ଯିଏ ଲୋପ ପାଇଯିବାର ସମ୍ଭାବନା ଦେଖାଦେଲାଣି, ତାହା ଏହି ଶ୍ରେଣୀର । ନୀଳଗିରି ପତ୍ର ମାଙ୍କଡ଼, ଧୋଲ୍ ଆଦି ଏହି ଶ୍ରେଣୀର ଜୀବ ।

**କମ ବିପଦଗ୍ରସ୍ତ (ଲୋୱର ରିସ୍କ, ଏଲଆର):** କୌଣସି ଜୀବଜାତିର ସ୍ଥିତି ଆକଳନରୁ ତାହା ଯଦି ସିଆର, ଇଏନ ବା ଭିୟୁ ଶ୍ରେଣୀରେ ନଆସେ ତେବେ ତା'ପ୍ରତି ବିପଦ କମ୍ ଅଛି ବୋଲି ଧରାଯାଏ । ଏହି ଜୀବଙ୍କୁ ତିନି ଭାଗରେ ବିଭକ୍ତ କରାଯାଏ - ସଂରକ୍ଷଣ ନିର୍ଭରଶୀଳ, ସଙ୍କଟର ନିକଟ ଏବଂ ନ୍ୟୁନତମ ବିପଦ ।

**ତଥ୍ୟ ଅଭାବ (ଡାଟା ଡେଫିସିଏଣ୍ଟ, ଡିଡି):** କୌଣସି ଜୀବର ଲୋପ ପାଇବାର ସମ୍ଭାବନାକୁ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ମୂଲ୍ୟାୟନ କରିବା ପାଇଁ ଯଥେଷ୍ଟ ତଥ୍ୟ ନଥିଲେ ତାଙ୍କୁ ଏହି ଶ୍ରେଣୀରେ ରଖାଯାଏ । ଏହି ଶ୍ରେଣୀର ଜୀବଙ୍କ ଶରୀର ଗଠନ ଓ ଶରୀର ବିଜ୍ଞାନ ବିଷୟରେ ଯଥେଷ୍ଟ ଜଣାଥାଇପାରେ, କିନ୍ତୁ ସେମାନଙ୍କ ସଂଖ୍ୟା ବିଷୟରେ ତଥ୍ୟ ନଥାଇପାରେ । ତେଣୁ ତଥ୍ୟ ଅଭାବ ଶ୍ରେଣୀ କୌଣସି ଜୀବ ବିପଦରେ ଥିବା ବା ନଥିବାର ସୂଚନା ଦିଏନାହିଁ । ଏହା ଜଣାଏ ଯେ ତାହାର ଶ୍ରେଣୀ ବିଭାଗ ପାଇଁ ଅଧିକ ତଥ୍ୟ ଦରକାର । ଭାରତୀୟ କଳା କଇଁଚ, ବଙ୍ଗ କୋକିଶିଆଳୀ ଆଦି ଏହି ଶ୍ରେଣୀର ।

**ମୂଲ୍ୟାୟନ ହୋଇନାହିଁ (ନଟ୍ ଇଭାଲୁଏଟେଡ୍, ଏନଇ):** ଯେଉଁ ଜୀବଙ୍କ ପାଇଁ ବିପଦର କୌଣସି ମୂଲ୍ୟାୟନ କରାଯାଇନାହିଁ ।

ଉତ୍ସ: ଡବ୍ଲୁଡବ୍ଲୁଡବ୍ଲୁ·ଆଇୟୁସିଏନ୍·ଓଆରଜି (www.iucn.org)



Digitized by srujanika@gmail.com

**ପରଖ**

# ହାତୀ-ଡାକ ଶୃଙ୍ଖଳ

| | |
|---|---|
| **ହାତୀ ଏବଂ ସେମାନଙ୍କ ବିପଦ ବିଷୟରେ ଚାରିଆଡ଼େ ପ୍ରଚାର କର ।** | |
| *ଉଦ୍ଦେଶ୍ୟ* | ସାଙ୍ଗସାଥି, ବନ୍ଧୁବାନ୍ଧବଙ୍କ ଭିତରେ ହାତୀ ସଂରକ୍ଷଣର ଆବଶ୍ୟକତା ବିଷୟରେ ପ୍ରଚାର ଦିଗରେ ପିଲାଙ୍କୁ ସାହାଯ୍ୟ କରିବା |
| *ସ୍ତର* | ମାଧ୍ୟମିକ |
| *ବିଷୟ* | ଭାଷା |
| *ଦଳର ଆକାର* | ଉଣିକିଆ |
| *ସ୍ଥାନ* | ଶ୍ରେଣୀଗୃହ ଭିତରେ |
| *ସମୟ ଅବଧି* | ୪୫ ମିନିଟ |
| *ସାମଗ୍ରୀ* | ପୋଷ୍ଟକାର୍ଡ, ଲେଖିବା ଜିନିଷ |

## ଆରମ୍ଭ କରିବା ଆଗରୁ

ପିଲାଙ୍କୁ କହିଦିଅ ଯେ ଚିଠି ହେଉଛି ଯୋଗାଯୋଗର ପୁରୁଣା ମାଧ୍ୟମ ଭିତରୁ ଗୋଟିଏ ଏବଂ ଏବେ ବି ଏହା ବହୁତ ଗୁରୁତ୍ୱପୂର୍ଣ୍ଣ ଓ ଫଳପ୍ରଦ ମାଧ୍ୟମ । ପିଲାମାନଙ୍କ ଭିତରୁ କେତେଜଣ ଚିଠି ଶୃଙ୍ଖଳ ପାଇଛନ୍ତି ଆଲୋଚନା କର । ଏହା ପାଇଲେ ବହୁତ ବିରକ୍ତ ଲାଗେ । ସେମାନଙ୍କୁ କହିଦିଅ ଯେ ଏବେ ସେମାନେ ଏହାକୁ ଗୋଟିଏ ସକାରାତ୍ମକ କାମରେ ଲଗାଇବେ ।

ହାତୀ ସଂରକ୍ଷଣର ଆବଶ୍ୟକତା ବିଷୟରେ ପ୍ରଚାର କରିବା ପାଇଁ ଚିଠି ଶୃଙ୍ଖଳ ବ୍ୟବହାର କରାଯିବ । ଯେତେ ବେଶି ଲୋକଙ୍କ ପାଖରେ ସେମାନେ ପହଞ୍ଚି ପାରିବେ, ସେମାନଙ୍କ କାମ ସେତେ ବେଶି ଫଳପ୍ରଦ ଓ ସଫଳ ହୋଇପାରିବ । କେତେ ପିଲା ସେମାନଙ୍କ ସାଙ୍ଗମାନଙ୍କ ପାଖକୁ ଇମେଲ୍ ପଠାଇବା ପାଇଁ ଆଗ୍ରହୀ ହୋଇପାରନ୍ତି, ତମେ ସେମାନଙ୍କୁ ମଧ୍ୟ ଉତ୍ସାହିତ କର ।

## ପରଖର ଧାରା

### ଭାଗ କ

କାମର ପୂର୍ବଦିନ ପ୍ରତି ପିଲା ପାଞ୍ଚଟି ଲେଖାଏଁ ପୋଷ୍ଟକାର୍ଡ କିଣିବା ପାଇଁ କୁହ । କେଉଁ ପାଞ୍ଚଜଣଙ୍କ ପାଖକୁ ଚିଠି ପଠାଇବେ ତାହା ମଧ୍ୟ ସେମାନେ ଭାବିଥିବେ ଏବଂ ସେମାନଙ୍କର ଡାକ ଠିକଣା ଆଣିଥିବେ । ଏହି ପାଞ୍ଚଜଣଙ୍କ ଭିତରେ ଜେଜେବାପା, ଜେଜେମା, ଦାଦା, ଖୁଡ଼ି, ଭାଇ, ଭାଉଣୀ, ସାଙ୍ଗ ରହିପାରନ୍ତି ।

ପ୍ରତି ପିଲା ଗୋଟିଏ ପୋଷ୍ଟକାର୍ଡ ଲେଖି ତା'ର ପାଞ୍ଚଟି ନକଲ କରିପାରେ ବା ପାଞ୍ଚଟି ପୋଷ୍ଟକାର୍ଡରେ ଅଲଗା ପ୍ରକାରର ଲେଖିପାରେ । ପ୍ରତି ପୋଷ୍ଟକାର୍ଡର ଶେଷରେ ପାଇବା ଲୋକକୁ ଗୋଟିଏ ଅନୁରୋଧ କରାଯାଇଥିବ ଯେ ସେମାନେ ବି ଏହିପରି ପାଞ୍ଚଟି ପୋଷ୍ଟକାର୍ଡ ଲେଖି ପାଞ୍ଚଜଣଙ୍କୁ ପଠାଇବେ ।

ପୋଷ୍ଟକାର୍ଡରେ କ'ଣ ରହିପାରିବ ତାହା ପିଲାଙ୍କ ସହ ଆଲୋଚନା କର । ପିଲାମାନଙ୍କ ମତକୁ କଳାପଟାରେ ଲେଖିଦିଅ । ଆଲୋଚନା ସରିବା ପରେ ପିଲାଙ୍କୁ ଗୋଟିଏ ଢାଞ୍ଚା ବା ନମୁନା (ପୃଷ୍ଠା ୧୦୨) ଦିଆଯାଇପାରେ ।

### ଭାଗ ଖ

କାମର ଏହି ଭାଗ ପାଇଁ ଏସୀୟ ହାତୀର ସଙ୍କଟ ଏବଂ ତା'ର ସଂରକ୍ଷଣର ଆବଶ୍ୟକତା ଆଲୋଚନା କରି ପିଲାମାନେ କୌଣସି ସମ୍ବାଦପତ୍ର ବା ପତ୍ରିକାର ସମ୍ପାଦକଙ୍କୁ ଲେଖିବେ । ଲେଖାଗୁଡ଼ିକ ପ୍ରକାଶ କରିବା ପାଇଁ ଅନୁରୋଧ କରି ଗୋଟିଏ ଚିଠି ସହ ଏଗୁଡ଼ିକୁ ପଠାଯାଇପାରେ ।

ଲେଖିବା ଆଗରୁ ପିଲାଙ୍କ ସହ ଚିଠିର ଢାଞ୍ଚା ବିଷୟରେ ଆଲୋଚନା କର ।

ଚିଠିରେ ରହିବା ଭଳି କଥା କିଛି ହେଉଛି,

- ହାତୀ ଆମ ପରମ୍ପରା ଏବଂ ଐତିହ୍ୟର ଏକ ଅଂଶ
- ହାତୀ ସହ ମଣିଷର ସମ୍ପର୍କ
- ଏସୀୟ ହାତୀଙ୍କ ସଂଖ୍ୟା କମିବା
- ଭାରତ ଏବଂ ଏସିଆରେ ଏବେ ଏସୀୟ ହାତୀଙ୍କ ସଂଖ୍ୟା
- ହାତୀର ବିପଦ, ବିଶେଷ କରି ତୁମ ରାଜ୍ୟ ବା ଅଞ୍ଚଳର
- ସଂରକ୍ଷଣର ଆବଶ୍ୟକତା

## ସଂପ୍ରସାରଣ/ପରିବର୍ତ୍ତନ

- ତୁମେ ଗୋଟିଏ ହାତୀ ସୁରକ୍ଷା କ୍ଲବ ଗଢ଼ ଏବଂ ସେଥିରେ ତୁମ ଅଞ୍ଚଳର ଲୋକଙ୍କୁ ସାମିଲ କରି ହାତୀ ସଂରକ୍ଷଣ ଦିଗରେ ସାହାଯ୍ୟ କର ।





Digitized by srujanika@gmail.com

# ତଥ୍ୟ ଭଣ୍ଡାର

## ହାତୀଙ୍କ ବିଷୟରେ କିଛି ୱେବ୍‌ସାଇଟ୍

http://www.animalinfo.org

http://animaldiversity.ummz.umich.edu

http://www.bbc.co.uk

http://www.bornfree.org.uk

http://www.encyclopedia.com

http://www.elephants.com

http://elephants.elehost.com

http://www.elephant.tnet.co.th

http://www.elephant.se

http://envfor.nic.in

http://www.honoluluzoo.org

http://www.iisc.ernet.in

http://www.kidsgowild.com

http://members.aol.com

http://www.nationalgeographic.com

http://nature.ca

http://www.nwf.org

http://www.okczoo.com

http://www.panda.org

http://www.sanctuaryasia.com

http://www.smithsonianmag.si.edu

http://www.wii.org

http://www.yptenc.org.uk

http://www.zoo.org/educate

## ନମୁନା ପୋଷ୍ଟକାର୍ଡ

### ପ୍ରଥମ ପଟ

ଭାରତରେ ମାତ୍ର



୨୫୦୦୦ଟି ଅଛନ୍ତି

To,

______________________

______________________

______________________

______________________

**ହାତୀ ତଥ୍ୟ**

ଉଚ୍ଚତା ୩·୨ ମିଟର

ଓଜନ ୪ ଟନ୍

ଖାଦ୍ୟ ଘାସ, ବକଳ, ଫଳ, ପତ୍ର, ଦିନକୁ ପ୍ରାୟ ୧୦୦ କି·ଗ୍ରା· ଖାଦ୍ୟ ଖାଏ ।

### ଦ୍ୱିତୀୟ ପଟ

**ଏସୀୟ ହାତୀ** *(ଏଲିଫସ୍ ମାକ୍ସିମସ୍)* ସ୍ଥିତି: ବିପନ୍ନ

ହାତୀ ଆଜି କାହିଁକି ବିପନ୍ନ? ଭାରତର ଜଙ୍ଗଲରେ ଏବେ କାହିଁକି ମାତ୍ର ୨୫,୦୦୦ ହାତୀ ଅଛନ୍ତି? ଏହାର ଗୋଟିଏ ନୁହେଁ, ଅନେକ କାରଣ ରହିଛି ଏବଂ ଆମେ ମଣିଷ ହିଁ ମୁଖ୍ୟତଃ ଏଥିପାଇଁ ଦାୟୀ ।

୧· କେବଳ ଭାରତରେ ବର୍ଷକୁ ପ୍ରାୟ ୧୦୦ଟି ହାତୀ ଶିକାର କରାଯାଉଛି । ଏହା ହେଉଛି ଜଣାପଡ଼ିଥିବା ଘଟଣାର କଥା । ଅଜଣା ଭାବରେ କେତେ ମରୁଛନ୍ତି କେହି ଜାଣନ୍ତି ନାହିଁ ।

୨· ହାତୀର ବସତି ଜଙ୍ଗଲ ସଫାକରି ସେଠାରେ ରାସ୍ତା, ନଦୀବନ୍ଧ, ରେଳରାସ୍ତା, ଘର ତିଆରି ହେଉଛି, ଚାଷଜମି କରାଯାଉଛି । ସେମାନେ ଯିବେ କୁଆଡ଼େ?

୩· ବଞ୍ଚିରହିବା ପାଇଁ ସମ୍ବଳ, ମୁଖ୍ୟତଃ ପାଣି ଓ ଖାଦ୍ୟ, ପାଇଁ ହାତୀ ଓ ମଣିଷ ଭିତରେ ସଂଘର୍ଷ ବଢୁଛି । ଏଥିରେ ବର୍ଷକୁ ପ୍ରାୟ ୨୦ଟି ହାତୀ ମରୁଥିବାର ଜଣାଯାଏ ।

ହାତୀଙ୍କ ପାଇଁ ଆପଣ ଚିନ୍ତିତ କି? ସେମାନଙ୍କ ବିପଦ ବିଷୟରେ ପାଞ୍ଚ ଜଣଙ୍କୁ ଜଣାନ୍ତୁ । ଏହି ଚିଠି ଶୃଙ୍ଖଳକୁ ଭାଙ୍ଗନ୍ତୁ ନାହିଁ ।



Digitized by srujanika@gmail.com

# ଦାୟୀ କିଏ ?

ହାତୀ-ମଣିଷ ସଂଘର୍ଷ ବିଷୟରେ ଆଲୋଚନା

| | |
|---|---|
| *ଉଦ୍ଦେଶ୍ୟ* | ହାତୀ ମଣିଷର ସଂଘର୍ଷର ବିଭିନ୍ନ ଦିଗ ବିଷୟରେ ପିଲାଙ୍କୁ ବୁଝାଇବା |
| *ସ୍ତର* | ଉଚ୍ଚତର |
| *ବିଷୟ* | ବିଜ୍ଞାନ, ଭାଷା |
| *ଦଳର ଆକାର* | ପାଞ୍ଚ ଛଅ ଜଣିଆ ଦଳ |
| *ସ୍ଥାନ* | ଶ୍ରେଣୀଗୃହ ଭିତରେ |
| *ସମୟ ଅବଧି* | ୪୫ ମିନିଟ |
| *ସାମଗ୍ରୀ* | ଲେଖିବା ଜିନିଷ |

## ଆରମ୍ଭ କରିବା ଆଗରୁ

ବାସ୍ତବ ପରିସ୍ଥିତିରେ କିଏ ଠିକ କିଏ ଭୁଲ ବାଛିବା କେତେ କଷ୍ଟ ତାହା ପିଲାଙ୍କ ସହ ଆଲୋଚନା କର । ସମସ୍ୟାର ସମାଧାନ ଖୋଜିବା ଏବଂ ତାହାକୁ କାର୍ଯ୍ୟକାରି କରିବା ଆହୁରି କଷ୍ଟର କଥା ।

## ପରଖର ଧାରା

ତଳ ଅନୁଚ୍ଛେଦଟି ପିଲାଙ୍କ ଆଗରେ ପଢ଼ । ଏହାକୁ ଗୋଟିଏ ଗପ ଆକାରରେ ପିଲାଙ୍କୁ କହିଲେ ଆହୁରି ଭଲ ହେବ । ଏବେ ସେମାନଙ୍କୁ ପାଞ୍ଚ ଛଅ ଜଣିଆ ଦଳରେ ଭାଗ ହୋଇଯିବାକୁ କୁହ । ପ୍ରତି ଦଳ ଆଲୋଚନା କରି କହିବେ ଯେ ପିଲାଟିର ମୃତ୍ୟୁ ପାଇଁ ଦାୟୀ କିଏ ?

### ପଢ଼ିବା ପାଇଁ ଅନୁଚ୍ଛେଦ

ଉତ୍ତର ପଶ୍ଚିମବଙ୍ଗର ହିନ୍ଦୁପୁର ଗାଁଟି ଗୋଟିଏ ହାତୀ ଅଭୟାରଣ୍ୟକୁ ଲାଗି ରହିଛି । ଗତ କେତେ ବର୍ଷ ଧରି ହାତୀ ଗାଁ ଭିତରେ ପଶିବା ଏବଂ ଫସଲ ଖାଇଯିବା ବଢ଼ିଯାଇଛି । ହାତୀ ଜଙ୍ଗଲରେ ଯଥେଷ୍ଟ ଖାଦ୍ୟ ନପାଇବା ଏହାର ଗୋଟିଏ କାରଣ ହୋଇପାରେ । କିମ୍ବା ହାତୀ ଥରେ ଫସଲ ଚାଖିବା ପରେ ତାକୁ ତାହା ବେଶି ସୁଆଦ ଲାଗିଛି, ତେଣୁ ସେ ଆଉ କଷ୍ଟ କରି ଖାଦ୍ୟ ସଂଗ୍ରହ କରିବାକୁ ଇଚ୍ଛା କରୁନାହିଁ । ଆହୁରି ମଧ୍ୟ ଏହି ଗାଁର ଲୋକେ ମଦ ତିଆରି କରନ୍ତି ଏବଂ ଗୁଡ଼ ରାନ୍ଧନ୍ତି । ଗୁଡ଼ ଓ ମଦ ହାତୀର ବହୁତ ପ୍ରିୟ ହୋଇଥିବାରୁ ବି ସେ ଗାଁକୁ ଆକର୍ଷିତ ହେଉଥାଇପାରେ ।

ହିନ୍ଦୁପୁର ଗାଁର ଲୋକେ ଚେଷ୍ଟା କରି ବି ହାତୀକୁ କିଆରୀରୁ ଦୂରେଇ ପାରିନାହାନ୍ତି । ଗତ ବର୍ଷ ନଭେମ୍ବର ମାସରେ ଏ ଦିଗରେ କିଛି ପଦକ୍ଷେପ ନେବା ପାଇଁ ସେମାନେ ରାଜ୍ୟ ସରକାରଙ୍କୁ ନିବେଦନ କଲେ । ସରକାର ସେମାନଙ୍କୁ ଆଶ୍ୱାସନା ଦେଲେ ଯେ କିଛି କରାଯିବ, କିନ୍ତୁ କିଛି ବଳିଷ୍ଠ ପଦକ୍ଷେପ ନିଆଗଲା ନାହିଁ । କେତେ ଗାଁ ଲୋକ ରାତିରେ ସେମାନଙ୍କ ଝରକା ବାହାରେ ହାତୀ ଦେଖିଛନ୍ତି । ଦିନକୁ ଦିନ ଗାଁବାଲାଙ୍କ ଭିତରେ ହାତୀ ପ୍ରତି ଭୟ ବଢ଼ି ବଢ଼ି ଯାଉଛି । ସନ୍ଧ୍ୟା ଆଗରୁ ସବୁ କାମ ସାରିଦେଇ ସେମାନେ ଘରେ ପଶିଯାଉଛନ୍ତି ।

ବଢ଼ୁଥିବା ଭୟ ଏବଂ ସରକାରଙ୍କ ଉଦାସୀନତା ଯୋଗୁଁ ଗାଁବାଲା ସେମାନଙ୍କୁ ଏ ଦିଗରେ ସାହାଯ୍ୟ କରିପାରିବା ଭଳି ଗୋଟିଏ ଦଳ ସହ ସମ୍ପର୍କ ପ୍ରତିଷ୍ଠା କଲେ । ଏହି ଦଳ ଏ ଦିଗରେ କିଛି ନୂଆ ପଦକ୍ଷେପ ନେବାର ଯୋଜନା କଲେ । ରାତିରେ ଆଲୁଅ ଜଳାଇ ଏବଂ ଶବ୍ଦ କରି ସେମାନେ ହାତୀକୁ ଦୂରେଇ ରଖିବାର ନୂଆ ବାଟ କାଢ଼ିଲେ । ଆରମ୍ଭରେ ଏହା କାମ ଦେଲା । କିନ୍ତୁ ଖୁବ ଶୀଘ୍ର ହାତୀମାନେ ଏଥିରେ ଅଭ୍ୟସ୍ତ ହୋଇଗଲେ । ଏହିପରି ସମାଧାନର ବାଟ ଖୋଜୁଥିବା ବେଳେ ଦିନେ ହାତୀମାନେ ଗାଁ ଉପରେ ଆକ୍ରମଣ କଲେ ।

ଫେବୃଆରୀ ୧୯୯୬ ମସିହାର ସେହି ଭୟାନକ ରାତି । ଘଣ୍ଟାରେ ଏଗାରଟା ବାଜିଲା । ଦୁଇଟି ଦନ୍ତାହାତୀ ସହ ୩୦ ଜଣିଆ ଗୋଟିଏ ହାତୀପଲ ଗାଁ ଭିତରକୁ ଆସିଲେ । ହାତୀମାନେ ଫସଲ ନଷ୍ଟ କଲେ । ଜୀବଜନ୍ତୁ ଦଳି ମାରିଦେଲେ ଏବଂ କେତେ ଘରର ଛାତ ଭିଡ଼ିଦେଲେ । କିନ୍ତୁ ସବୁଠାରୁ ଦୁଃଖର କଥା ଯେ ଏହି ଘଟଣାରେ ଗୋଟିଏ ଛଅ ବର୍ଷର ପିଲା ମରିଗଲା । ଏଭଳି ଘଟଣା ପାଇଁ ଗାଁ ଲୋକମାନେ ପ୍ରସ୍ତୁତ ନଥିଲେ । ଆଗରୁ ସେମାନଙ୍କର ଜଙ୍ଗଲ ବିଭାଗ ଏବଂ ରାଜ୍ୟ ସରକାରଙ୍କ ଉପରୁ ଆସ୍ଥା ତୁଟିଯାଇଥିଲା । ତେଣୁ ସେମାନ ନିଜେ ଏହାର ସମାଧାନ କରିବାକୁ ବାହାରିଲେ । ଗାଁର ଲୋକମାନେ ପାଞ୍ଚଟି ହାତୀ ମାରିଦେଲେ । ଏଗୁଡ଼ିକ ଭିତରେ ତିନୋଟି ମାଈ, ଗୋଟିଏ ଅଣ୍ଡିରା ଏବଂ ଗୋଟିଏ ଅଳ୍ପବୟସ୍କ ହାତୀ ଥିଲେ ।





Digitized by srujanika@gmail.com

# ହାତୀଙ୍କୁ ନେଇ ପ୍ରକଳ୍ପ

**ଶିକ୍ଷାର** ଶେଷ ଲକ୍ଷ୍ୟ ହେଉଛି ପ୍ରୟୋଗ - କିଛି ପଦକ୍ଷେପ ଯାହା ଲୋକଙ୍କର ଆବଶ୍ୟକତାକୁ ଆଖିରେ ରଖି ପରିବେଶର ଉନ୍ନତି କରିପାରିବ । ସ୍କୁଲ ପିଲା, ବିଶେଷକରି ପ୍ରାଥମିକ ସ୍ତରର ପିଲାମାନେ ସେମାନଙ୍କ ଜୀବନର ଗୋଟିଏ ଅତି ସମ୍ବେଦନଶୀଳ ଅବସ୍ଥାରେ ଥାଆନ୍ତି । ଏହି ଅବସ୍ଥାରେ ତାଙ୍କ ମନରେ କିଛି ସକାରାତ୍ମକ ମୂଲ୍ୟବୋଧର ମୂଳଦୁଆ ପଡ଼ିଲେ ତାହାର ପ୍ରଭାବ ଗଭୀର ହୋଇ ରହିଯିବ ।

ସାଧାରଣତଃ ସ୍କୁଲରେ ପିଲାମାନେ ତାଙ୍କ ପାଠ୍ୟକ୍ରମ ସମ୍ବନ୍ଧୀୟ ପ୍ରକଳ୍ପ କରିଥାନ୍ତି । ସେମାନେ ସାଧାରଣତଃ ପ୍ରାଚୀରପତ୍ର, ମଡ଼େଲ ତିଆରି କରିଥା'ନ୍ତି ଏବଂ ବେଳେବେଳେ ସେମାନେ ଶିଖିଥିବା ଜିନିଷକୁ ଅନ୍ୟ ନୂଆ ଧାରାରେ ଉପସ୍ଥାପନ କରନ୍ତି । ସେମାନେ ଶିଖିଥିବା କଥାକୁ ଗଭୀରତର କରିବାରେ ଏହା ସାହାଯ୍ୟ କରେ ଏବଂ ସେମାନଙ୍କର ତଥ୍ୟଗତ ଜ୍ଞାନକୁ ବ୍ୟବହାରରେ ଲଗାଇବାର ସୁଯୋଗ ଦିଏ । ବହିଟିର ଏହି ବିଭାଗରେ ଆଲୋଚନା କରାଯାଇଥିବା ପ୍ରକଳ୍ପଗୁଡ଼ିକ ଆଗର ବିଭାଗ ସବୁରେ ଦିଆଯାଇଥିବା ତଥ୍ୟ ସବୁକୁ ଆହୁରି ବଳବତ୍ତର କରିବ । ହାତରେ କାମ କରିବା ଫଳରେ ତାଙ୍କ ମନରେ ତଥ୍ୟ ଏବଂ ପ୍ରୟୋଗ ଭିତରେ ଥିବା ଦୂରତା କମାଯାଇପାରିବ ।



ପିଲାମାନେ ଦୁଇ ପ୍ରକାରର ପ୍ରକଳ୍ପ କରିପାରିବେ - ପଦକ୍ଷେପ ପ୍ରକଳ୍ପ ଏବଂ ଗୋଷ୍ଠୀ ପ୍ରକଳ୍ପ । ଏହି ପ୍ରକଳ୍ପଗୁଡ଼ିକ ସକାରାତ୍ମକ ଦୃଷ୍ଟିକୋଣ ବିକାଶ କରିବ ଏବଂ ସଂରକ୍ଷଣ ମୂଲ୍ୟବୋଧର ମୂଳଦୁଆ ପକାଇବ । ଆହୁରି ମଧ୍ୟ ବନ୍ୟପ୍ରାଣୀ ସଂରକ୍ଷଣ ସମ୍ବନ୍ଧିତ ଗବେଷଣା ଦିଗରେ ଏକ ଦୀର୍ଘକାଳୀନ ବାତାବରଣ ସୃଷ୍ଟି କରିବ ।

ଏଠାରେ ଦିଆଯାଇଥିବା କେତେକ ପ୍ରକଳ୍ପ ମାଧ୍ୟମରେ ଏସୀୟ ହାତୀ ପ୍ରତି ବିପଦ ବିଷୟରେ ପିଲାମାନେ ଜନସାଧାରଣ ଏବଂ ସ୍କୁଲର ଅନ୍ୟ ପିଲାଙ୍କ ଭିତରେ ସଚେତନତା ସୃଷ୍ଟି କରିପାରିବେ । ଆଉ କେତେକ ପ୍ରକଳ୍ପରେ ଯୋଜନାଠାରୁ ଆରମ୍ଭ କରି କାର୍ଯ୍ୟକାରିତା ଏବଂ ତଥ୍ୟ ବିଶ୍ଳେଷଣ ଭଳି ବୈଜ୍ଞାନିକ ଗବେଷଣାର ଧାରା ବିଷୟରେ ପିଲା ଶିଖିପାରିବେ ।

ଏହି ବିଭାଗରେ ରହିଥିବା ବିଭିନ୍ନ ପ୍ରକଳ୍ପର ସଂକ୍ଷିପ୍ତ ବର୍ଣ୍ଣନା ଏଠାରେ ଦିଆଯାଇଛି । ଶିକ୍ଷକର ସହାୟତାରେ ଷଷ୍ଠ ଶ୍ରେଣୀରୁ ଉପରର ପିଲାମାନେ ଏହି ପ୍ରକଳ୍ପଗୁଡ଼ିକୁ କରିପାରିବେ ।

## ମଣିଷ ଓ ସ୍ଥୂଳଚର୍ମା

ଏହି ପ୍ରକଳ୍ପ ଏସୀୟ ହାତୀର ପରିପାର୍ଶ୍ୱ, ବିପଦ ଏବଂ ସଂରକ୍ଷଣ ଉପରେ ଲୋକଙ୍କ ଧାରଣାକୁ ବୁଝିବାରେ ପିଲାଙ୍କୁ ସାହାଯ୍ୟ କରିବ । ସର୍ବେକ୍ଷଣ କରିବା, ତଥ୍ୟ ସଙ୍କଳନ ଏବଂ ବିଶ୍ଳେଷଣ କରିବାର ଦକ୍ଷତା ବି ଏହି ପ୍ରକଳ୍ପ ମାଧ୍ୟମରେ ବଢ଼ିବ ।

### ସମୟ

ତଥ୍ୟ ସଂଗ୍ରହ ପାଇଁ ଦୁଇ ତିନି ଦିନ ଏବଂ ସଂକଳନ ଓ ବିଶ୍ଳେଷଣ ପାଇଁ ଆଉ ଏକ ଦିନ ।

### ସାମଗ୍ରୀ

ସର୍ବେକ୍ଷଣ ପ୍ରଶ୍ନ ଫର୍ଦ୍ଦ, ଲେଖିବା ଜିନିଷ ଏବଂ ତଥ୍ୟ ସଙ୍କଳନ ଓ ବିଶ୍ଳେଷଣ ପାଇଁ ସଥେଷ୍ଟ ସ୍ଥାନ

### ମାର୍ଗଦର୍ଶନ

ଏହି କାମ ପାଇଁ ପିଲାମାନଙ୍କୁ ବିଷୟ ଶିକ୍ଷକଙ୍କ ସହିତ ପରିସଂଖ୍ୟାନ ଶିକ୍ଷକ ବି ମାର୍ଗଦର୍ଶନ ଦେବେ । ତାଙ୍କ ପାଇଁ ବାପା ମା, ସାଙ୍ଗସାଥି ଏବଂ ଜନସାଧାରଣଙ୍କ ଠାରୁ ବି ସହଯୋଗ ଦରକାର ।



Digitized by srujanika@gmail.com



## ହାତୀ ଅନୁଧ୍ୟାନ

ବୈଜ୍ଞାନିକ ଗବେଷଣା ପାଇଁ ଯୋଜନା କରିବା ଏବଂ ତାହାକୁ କାର୍ଯ୍ୟକାରୀ କରିବା ବିଷୟରେ ପିଲାମାନେ ଏହି ପ୍ରକଳ୍ପରେ ଜାଣିବେ । ଗବେଷଣା ଧାରାର ବିକାଶ, ବିଶେଷଜ୍ଞଙ୍କ ସାମନାରେ ତାହାର ଉପସ୍ଥାପନା ଏବଂ କିଛି ପୋଷା ହାତୀଙ୍କୁ ନେଇ କ୍ଷେତ୍ରରେ ତାହାର ପ୍ରୟୋଗ ଦିଗରେ ପିଲାଙ୍କୁ ଏହା ସାହାଯ୍ୟ କରିବ ।

### ସମୟ

ଗବେଷଣା ଧାରାର ପ୍ରସ୍ତୁତି ପାଇଁ ଦୁଇ ତିନି ଦିନ, ବିଶେଷଜ୍ଞଙ୍କ ଆଗରେ ଉପସ୍ଥାପନା ପାଇଁ ଅଧାଦିନ । କ୍ଷେତ୍ର ପ୍ରୟୋଗ ପାଇଁ ଏକ ସପ୍ତାହ ।

### ସାମଗ୍ରୀ

ନିରୀକ୍ଷଣ ଫର୍ଦ୍ଦର ନକଲ, ଲେଖିବା ଜିନିଷ

### ମାର୍ଗଦର୍ଶନ

ଏହି ପ୍ରକଳ୍ପ ପାଇଁ ଶିକ୍ଷକ ବନ୍ୟପ୍ରାଣୀ ଉପରେ ଗବେଷଣା କରୁଥିବା ଲୋକଙ୍କର ସହାୟତା ନେବେ । ଚିଡ଼ିଆଖାନା କର୍ତ୍ତୃପକ୍ଷ, ବୈଜ୍ଞାନିକ, ହାତୀର ମାହୁନ୍ତ, ଜଙ୍ଗଲ ଶିବିର ଅଧିକାରୀ ବା ମନ୍ଦିର ପୂଜାରୀଙ୍କ ସହଯୋଗ ମଧ୍ୟ ପିଲାମାନଙ୍କ ପାଇଁ ଦରକାର ହେବ ।

## ହାତୀ ନିରୀକ୍ଷଣ

ଏହି ପ୍ରକଳ୍ପ ମାଧ୍ୟମରେ ପିଲାମାନେ ରହିବା ଜାଗା, ଜୀବନଶୈଳୀ ଏବଂ ବ୍ୟବହାର ଦୃଷ୍ଟିରୁ ଗୋଟିଏ ପୋଷା ହାତୀକୁ ଜଙ୍ଗଲୀ ହାତୀ ସହ ତୁଳନା କରିବେ । ଗୋଟିଏ ପୋଷାହାତୀକୁ ନିରୀକ୍ଷଣ କରି ପିଲାମାନେ ତା'ର ବ୍ୟବହାର ଏବଂ ଖାଦ୍ୟ ଆଦି ବିଷୟରେ ଜାଣିବେ । ହାତୀ ସହ ମାହୁନ୍ତର ସମ୍ପର୍କ ବିଷୟରେ ବି ଆହୁରି ଅଧିକ ଜାଣିବେ । ଚିଡ଼ିଆଖାନା ବୁଲିଗଲା ବେଳେ ସେମାନେ ଚିଡ଼ିଆଖାନାର ଅଧିକାରୀ ଏବଂ ମାହୁନ୍ତଙ୍କୁ ଭେଟିପାରନ୍ତି ଏବଂ ସେମାନଙ୍କୁ ବିଭିନ୍ନ କଥା ପଚାରି ନିରୀକ୍ଷଣ ଫର୍ଦ୍ଦ ଏବଂ ପ୍ରଶ୍ନାବଳୀ ପୂରଣ କରିପାରନ୍ତି ।

### ସମୟ

ପ୍ରଶ୍ନାବଳୀ ତିଆରି କରିବା ପାଇଁ ଏବଂ ତାହା ବିଷୟରେ ପିଲାଙ୍କୁ ବିଭିନ୍ନ ସୂଚନା ଦେବା ପାଇଁ ଅଧାଦିନ । ପରେ ଚିଡ଼ିଆଖାନା ଯାଇ ନିରୀକ୍ଷଣ ଓ ତଥ୍ୟ ସଂଗ୍ରହ ପାଇଁ ଆଉ ଗୋଟିଏ ଦିନ ।

### ସାମଗ୍ରୀ

ନିରୀକ୍ଷଣ ଫର୍ଦ୍ଦ, ମାହୁନ୍ତ ପାଇଁ ପ୍ରଶ୍ନାବଳୀ, ଲେଖିବା ଜିନିଷ

### ମାର୍ଗଦର୍ଶନ

ପ୍ରକଳ୍ପର ସଫଳତା ପାଇଁ ଚିଡ଼ିଆଖାନା ଅଧିକାରୀ ଓ ହାତୀ ମାହୁନ୍ତଙ୍କର ସହଯୋଗ ଏବଂ ମାର୍ଗଦର୍ଶନ ଦରକାର ।

## ହାତୀ ମେଳା

ଏସୀୟ ହାତୀର ସ୍ଥିତି ଏବଂ ତା'ର ବିପଦ ବିଷୟରେ ପିଲା ଏବଂ ଜନସାଧାରଣଙ୍କ ଭିତରେ ସଚେତନତା ବଢ଼ାଇବା ହେଉଛି ଏହି ପ୍ରକଳ୍ପର ମୂଳ ଉଦ୍ଦେଶ୍ୟ । ବର୍ତ୍ତମାନ ହାତୀର ସ୍ଥିତି କ'ଣ ଏବଂ ତାହା ପାଇଁ ଆସୁଥିବା ବିଭିନ୍ନ ବିପଦ ବିଷୟରେ ପିଲାମାନେ ପ୍ରଥମେ ନିଜେ ବୁଝିବାରେ ଏବଂ ଲୋକଙ୍କୁ ତାହା ବୁଝାଇବାରେ ପ୍ରକଳ୍ପଟି ସାହାଯ୍ୟ କରିବ । ଏହି ଯୋଗାଯୋଗକୁ ଫଳପ୍ରଦ ଏବଂ ଆଗ୍ରହଜନକ କରିବା ଦରକାର । ଏଥିପାଇଁ ପିଲାମାନେ ବିଭିନ୍ନ ଖେଳ, ତର୍କ, ପ୍ରାଚୀରପତ୍ର, ନାଟକ ଏବଂ ଅନ୍ୟ ଯୋଗାଯୋଗ ମାଧ୍ୟମ ବ୍ୟବହାର କରିପାରିବେ ।

### ସମୟ

ହାତୀମେଳା ମାତ୍ର ଗୋଟିଏ ଦିନ ପାଇଁ ହେବ । କିନ୍ତୁ ଏଥିପାଇଁ ପ୍ରସ୍ତୁତି, କାମଗୁଡ଼ିକର ଯୋଜନା, ପରଖ ଓ ଖେଳ ସବୁର ବ୍ୟବସ୍ଥା ଆଦି କରିବା ପାଇଁ ଅନ୍ତତଃ ଦୁଇ ସପ୍ତାହ ସମୟ ଦରକାର ହେବ । ଏହି ପ୍ରସ୍ତୁତି ପାଇଁ ପିଲାମାନଙ୍କୁ ବେଶ୍ କିଛି କାମ କରିବାକୁ ପଡ଼ିବ ।

### ସାମଗ୍ରୀ

ଲେଖିବା ଜିନିଷ, ଡ୍ରଇଁସିଟ୍, ସ୍କେଚ କଲମ, ହାତୀର ଫଟୋ, ଯୋଜନା କରାଯାଇଥିବା ପରଖରେ ଲାଗୁଥିବା ଅନ୍ୟ ସବୁ ଜିନିଷ ।

### ମାର୍ଗଦର୍ଶନ

ଏଥିପାଇଁ ଶିକ୍ଷକ ପିଲାମାନଙ୍କୁ ଖେଳ ଓ କାମର ଯୋଜନା କରିବାରେ ସାହାଯ୍ୟ କରିବେ । ମେଳା ଆୟୋଜନ କରିବା ପାଇଁ ଶିକ୍ଷକ ସ୍କୁଲ କର୍ତ୍ତୃପକ୍ଷଙ୍କ ଠାରୁ ଅନୁମତି ମଧ୍ୟ ଆଣିବେ ।



### ଷଷ୍ଠ ଇନ୍ଦ୍ରିୟ?

ବୈଜ୍ଞାନିକ ଗବେଷଣାରୁ ଭୂମିକମ୍ପର କାରଣ ଜଣାଅଛି । କିନ୍ତୁ ଏବେ ମଧ୍ୟ ଭୂମିକମ୍ପ ଆସୁଥିବା ବିଷୟରେ ଆଗୁଆ ସୂଚନା ଦେବା ସମ୍ଭବ ହୋଇନାହିଁ ।

ଅହମଦାବାଦର କମଳା ନେହେରୁ ପ୍ରାଣୀ ଉଦ୍ୟାନର କର୍ମକର୍ତ୍ତାମାନେ ଲକ୍ଷ କରିଛନ୍ତି ଯେ ଜୀବଜନ୍ତୁମାନେ ଏପରି ଘଟଣା ପ୍ରତି ସମ୍ବେଦନଶୀଳ । ଜାନୁଆରୀ ୨୬, ୨୦୦୧ ମସିହାର ଭୂମିକମ୍ପର କିଛି ସମୟ ଆଗରୁ ହାତୀ ଓ ଗଣ୍ଡା ଉଭୟ ଜୀବ ତାଙ୍କ ଘେରା ଭିତରେ ବସିପଡ଼ିଥିବାର ଲକ୍ଷ କରାଗଲା । ଏଭଳି ବ୍ୟବହାର ଏମାନଙ୍କ ପାଇଁ ସ୍ୱାଭାବିକ ନୁହେଁ । ଦେଖାଯାଇଛି ଯେ ହାତୀ ସେଦିନ ଚାରିଘଣ୍ଟା ବିଶ୍ରାମ ନିଏ ସେ ଖୁବ୍ କ୍ୱଚିତ୍ ତଳେ ଶୁଏ । ବିଶେଷଜ୍ଞ ଏବଂ ଗବେଷକଙ୍କ ମତରେ ଏମାନଙ୍କ ଭଳି ବିରାଟ ଜୀବ ଭୂମିକମ୍ପ ସମୟରେ ଗଡ଼ିପଡ଼ି ଆହତ ନହେବା ପାଇଁ ବୋଧହୁଏ ତଳେ ବସିଯାନ୍ତି ।



Digitized by srujanika@gmail.com

ପରଖ

# ମଣିଷ ଓ ସ୍ଥୂଳଚର୍ମା

ହାତୀ ବିଷୟରେ ଲୋକଙ୍କର ଜ୍ଞାନର ସର୍ବେକ୍ଷଣ କରିବା ଏବଂ ତଥ୍ୟର ବିଶ୍ଳେଷଣ କରି କିଛି ମୂଲ୍ୟବାନ ସୂଚନା ବାହାର କରିବା ।

| | |
|---|---|
| *ଉଦ୍ଦେଶ୍ୟ* | ହାତୀ ବିଷୟରେ ଲୋକମାନଙ୍କର ଜ୍ଞାନ ଓ ଦରଦ ବିଷୟରେ ବୁଝିବାରେ ପିଲାମାନଙ୍କୁ ସାହାଯ୍ୟ କରିବା । |
| *ସ୍ତର* | ଉଚ୍ଚତର |
| *ବିଷୟ* | ସାମାଜିକ ବିଜ୍ଞାନ |
| *ଦଳର ଆକାର* | ଦୁଇରୁ ପାଞ୍ଚଜଣିଆ ଦଳ |
| *ସ୍ଥାନ* | ଶ୍ରେଣୀଗୃହ ବାହାରେ |
| *ସମୟ ଅବଧି* | କିଛି ନିର୍ଦ୍ଦିଷ୍ଟ ନାହିଁ |
| *ସାମଗ୍ରୀ* | ପ୍ରତି ଦଳ ପାଇଁ ପ୍ରଶ୍ନାବଳୀର ନକଲ, ଲେଖିବା ଜିନିଷ |

## ଆରମ୍ଭ କରିବା ଆଗରୁ

ଏହି କାମ ପାଇଁ ସ୍କୁଲର ପ୍ରଧାନ ଶିକ୍ଷକଙ୍କଠାରୁ ଅନୁମତି ନେବାକୁ ପଡ଼ିପାରେ । ତାହା ମିଳିଲେ ପିଲାମାନେ ସ୍କୁଲ ସମୟରେ ସର୍ବେକ୍ଷଣ କରିପାରିବେ ।

ସର୍ବେକ୍ଷଣର ଉଦ୍ଦେଶ୍ୟ ବିଷୟରେ ପିଲାଙ୍କ ସହ ଆଲୋଚନା କର । ସର୍ବେକ୍ଷଣ ଦ୍ୱାରା ହାତୀର ବିସ୍ତାର, ସ୍ଥିତି, ସଂରକ୍ଷଣ ଆଦି ବିଷୟରେ ଲୋକଙ୍କର ଜ୍ଞାନ କେତେ ତାହା ଜଣାପଡ଼ିବ । ଗୋଟିଏ ପ୍ରଶ୍ନାବଳୀ କିପରି ହାତୀ ବିଷୟରେ ଲୋକଙ୍କ ମତ ଏବଂ ଜ୍ଞାନ ମାପିବାରେ ମାଧ୍ୟମ ହୋଇପାରେ ସେ ବିଷୟରେ ପିଲାଙ୍କ ସହ ଆଲୋଚନା କର । ଲୋକଙ୍କ ଭିତରେ ହାତୀର ସଂରକ୍ଷଣ ପାଇଁ ସାଧାରଣ ସଚେତନତା କେତେ ରହିଛି ତା' ବୁଝିବାରେ ମଧ୍ୟ ଏଭଳି ସର୍ବେକ୍ଷଣ ସାହାଯ୍ୟ କରିବ ।

ଏହି କାମ ସେମାନଙ୍କୁ ହାତୀମେଳାର ଯୋଜନା କରିବାରେ ବି ସାହାଯ୍ୟ କରିବ (ସ୍କୁଲ ବର୍ଷର ଶେଷ ଆଡ଼କୁ ଏହା କରାଯାଇପାରେ) । ଲୋକଙ୍କ ଜ୍ଞାନ ଏବଂ ଅନୁଭବକୁ ନେଇ ମେଳାର କାମ ସ୍ଥିର କରାଯାଇପାରେ ।

କାମ କରିବାର ଗୋଟିଏ ଦିନ ଆଗରୁ ପ୍ରଶ୍ନାବଳୀର କେତେଗୁଡ଼ିଏ ନକଲ କରି ରଖ । (ପୃଷ୍ଠା ୧୦୮ ଦେଖନ୍ତୁ) ।

## ପରଖର ଧାରା

ପୂରା ଶ୍ରେଣୀକୁ ଦୁଇଟି ଦଳରେ ଭାଗ କର । ଗୋଟିଏ ଦଳ ସ୍କୁଲର ଅନ୍ୟ ପିଲାଙ୍କଠାରୁ ଏବଂ ଆର ଦଳଟି ଆଖପାଖର ଲୋକମାନଙ୍କଠାରୁ ତଥ୍ୟ ସଂଗ୍ରହ କରିବା ପାଇଁ ପିଲାଙ୍କୁ କୁହ ।

ପ୍ରତି ଦଳକୁ ପାଞ୍ଚଟି କରି ପ୍ରଶ୍ନାବଳୀ ଫର୍ଦ୍ଦ ବାଣ୍ଟିଦିଅ । ପିଲାଙ୍କୁ କହିଦିଅ ଯେ ସେମାନେ କୌଣସି ଲୋକ ପାଖକୁ ଗଲାବେଳେ ପ୍ରଥମେ ନିଜର ପରିଚୟ ଦେବେ, ସର୍ବେକ୍ଷଣର ଉଦ୍ଦେଶ୍ୟ ଏବଂ ପ୍ରଶ୍ନାବଳୀ ବିଷୟରେ କହିବେ । ପ୍ରଶ୍ନାବଳୀ ପୂରଣ କରିବା ପାଇଁ ପିଲାମାନେ ସେ ଲୋକଙ୍କୁ ପ୍ରତିଟି ପ୍ରଶ୍ନ ପଚାରି ତାଙ୍କ ଉତ୍ତର ଟିପି ରଖିବେ । ସେମାନେ କେବଳ ଗୋଟିଏ ଉତ୍ତରରେ ଗୋଲ ବୁଲାଇବେ ବୋଲି ପିଲାଙ୍କୁ କହିଦିଅ ।

ସର୍ବେକ୍ଷଣ ବେଳେ କିପରି କ'ଣ କରିବାକୁ ହେବ ସେ ବିଷୟରେ ଶ୍ରେଣୀରେ ଗୋଟିଏ ଅଭ୍ୟାସ ସର୍ବେକ୍ଷଣ କରାଯାଇପାରେ । ଏହା ଫଳରେ ପ୍ରଶ୍ନାବଳୀର ପ୍ରତିଟି ପ୍ରଶ୍ନକୁ ପିଲାମାନେ ବୁଝିପାରିବେ ।

ପିଲାମାନେ ପ୍ରଶ୍ନାବଳୀ ଧରି ବାହାରିଯିବା ଆଗରୁ, ଏହି ସବୁର ପ୍ରଶ୍ନ ପଛରେ ଥିବା ବିଭିନ୍ନ ବିଚାର ବିଷୟ ଉପରେ ତାଙ୍କ ସହିତ ଆଲୋଚନା କର । ଏପାୟ ହାତୀର ସଙ୍କଟ ଏବଂ ସଂରକ୍ଷଣ ପଦକ୍ଷେପ ବିଷୟରେ ପିଲାମାନେ ଗୋଟିଏ ସୂଚନାପତ୍ର ତିଆରି କରିପାରିବେ । ଯେଉଁ ଲୋକଙ୍କ ସହିତ ସେମାନେ ସାକ୍ଷାତକାର ନେବେ ତାଙ୍କୁ ଏହି ସୂଚନାପତ୍ରରୁ ଖଣ୍ଡେ ଦେଇପାରିବେ । ସେହି ସୂଚନାପତ୍ର ହାତୀ ମେଳା ସମୟରେ ମଧ୍ୟ ଦର୍ଶକମାନଙ୍କ ଭିତରେ ବାଣ୍ଟିବା ପାଇଁ କାମରେ ଲାଗିପାରିବ । ।

ସର୍ବେକ୍ଷଣ ସରିବା ପରେ ପିଲାମାନଙ୍କୁ ତାଙ୍କର ସଂଗୃହୀତ ତଥ୍ୟଗୁଡ଼ିକର ସଙ୍କଳନ କରିବା ପାଇଁ କୁହ (ପୃଷ୍ଠା ୧୦୯ ଦେଖ) । ତା'ପରେ ସେମାନେ ସଂକଳିତ ତଥ୍ୟଗୁଡ଼ିକୁ ବିଶ୍ଳେଷଣ କରି କିଛି ସିଦ୍ଧାନ୍ତ ବାହାର କରିବାକୁ ଚେଷ୍ଟାକରିବେ । ବିଶ୍ଳେଷଣ ଓ ବ୍ୟାଖ୍ୟା ବିଷୟରେ ସୂଚନା ପର ପୃଷ୍ଠାଗୁଡ଼ିକରେ (ପୃଷ୍ଠା ୧୦୯ରୁ ୧୧୧ରେ) ଦିଆଯାଇଛି । କେତେକ ତଥ୍ୟକୁ ପିଲାମାନେ ଗ୍ରାଫ୍ ଆକାରରେ ମଧ୍ୟ ଉପସ୍ଥାପିତ କରିପାରିବେ ।

ପ୍ରକଳ୍ପର କାମ ଭିତରେ ତଳ ପଦକ୍ଷେପଗୁଡ଼ିକ ନିଆଯିବ ।

- ନମୁନା ବାଛିବା
- ସର୍ବେକ୍ଷଣ କରିବା
- ତଥ୍ୟ ସଙ୍କଳନ କରିବା
- ବ୍ୟାଖ୍ୟା କରିବା



Digitized by srujanika@gmail.com

# ପ୍ରଶ୍ନାବଳୀ

ଏସୀୟ ହାତୀ ସଂରକ୍ଷଣ ଉପରେ ଆମ **ସ୍କୁଲ ପ୍ରକଳ୍ପର** ଏକ ଅଂଶ ଭାବରେ ଆମେ ଆପଣଙ୍କୁ ଏହି ପ୍ରଶ୍ନାବଳୀର ଉତ୍ତର ଦେବାକୁ ଅନୁରୋଧ କରୁଛୁ ।

**ଉତ୍ତରଦାତାଙ୍କ** ନାମ ______________________________

**ବୟସ** __________, **ଲିଙ୍ଗ** ______________, **ଶିକ୍ଷା** ________________________, **ମାସିକ ପାରିବାରିକ ଆୟ** ________________

ପ୍ରତି ପ୍ରଶ୍ନ ପାଇଁ ଠିକ୍ ମନେକରୁଥିବା ଉତ୍ତର ଚିହ୍ନଟ କରନ୍ତୁ ।

୧· ପୃଥିବୀରେ ଦୁଇ ପ୍ରକାରର ହାତୀ ଅଛନ୍ତି କି?
- କ· ହଁ
- ଖ· ନାଁ
- ଗ· ଜାଣିନାହିଁ

୨· ଏସୀୟ ଏବଂ ଆଫ୍ରିକୀୟ ହାତୀ ଭିତରେ ମୁଖ୍ୟ ତଫାତ୍ କ'ଣ?
- କ· ଉଚ୍ଚତା, ହାତୀଦାନ୍ତ ଏବଂ କାନ
- ଖ· ଉଚ୍ଚତା, ହାତୀଦାନ୍ତ
- ଗ· କୌଣସିଟି ନୁହେଁ

୩· ଭାରତରେ ଏସୀୟ ହାତୀଙ୍କର ଆନୁମାନିକ ସଂଖ୍ୟା କେତେ?
- କ· ୨୫,୦୦୦
- ଖ· ୩୫,୦୦୦
- ଗ· ୫୦,୦୦୦

୪· ହାତୀ ଦଳର ମୁଖିଆ କିଏ?
- କ· ସବୁଠାରୁ ବୟସ୍କା ମାଈ (ମାତୃମୁଖ୍ୟ)
- ଖ· ବୟସ୍କା ଅଣ୍ଡିରା (ପିତୃମୁଖ୍ୟ)
- ଗ· ସବୁଠାରୁ ବଳୁଆ ଅଣ୍ଡିରା (ରାଜା)

୫· ହାତୀ ଗୋଟିଏ
- କ· ତୃଣଭୋଜୀ, ଶାକାହାରୀ
- ଖ· ଆମିଷଭୋଜୀ, ମାଂସାଶୀ
- ଗ· ସବୁ ଖାଏ, ଉଭୟ ନିରାମିଷାଶୀ ଓ ଆମିଷଭୋଜୀ

୬· ହାତୀ ଦିନକୁ କେତେ ପାଣି ପିଏ?
- କ· ୫୦ ଲିଟର
- ଖ· ୧୫୦ ଲିଟର
- ଗ· ୨୫୦ ଲିଟର

୭· ହାତୀର ପ୍ରତିଦିନ କେତେ ସବୁଜ ଡାଳପତ୍ର ଦରକାର?
- କ· ୧୦୦ କିଲୋଗ୍ରାମ
- ଖ· ୨୦୦ କିଲୋଗ୍ରାମ
- ଗ· ୩୦୦ କିଲୋଗ୍ରାମ

୮· କେଉଁ ରାଜ୍ୟରେ ହାତୀ ତା'ର ପ୍ରାକୃତିକ ଆବାସସ୍ଥଳୀରେ ଦେଖାଯାଏ?
- କ· ଗୁଜରାଟ,
- ଖ· ମେଘାଳୟ,
- ଗ· ହରିଆଣା

୯· ଭାରତ ସରକାର ହାତୀ ପ୍ରକଳ୍ପ ନାଁରେ କିଛି ଆରମ୍ଭ କରିଛନ୍ତି କି?
- କ· ହଁ
- ଖ· ନାଁ
- ଗ· ଜାଣିନାହିଁ

୧୦· ଯଦି ହଁ, ତେବେ ହାତୀ ପ୍ରକଳ୍ପର ଉଦ୍ଦେଶ୍ୟ କ'ଣ?
- କ· ଏସୀୟ ହାତୀର ସୁରକ୍ଷା
- ଖ· ଏସୀୟ ହାତୀ ଏବଂ ତା'ର ଆବାସସ୍ଥଳୀର ସୁରକ୍ଷା
- ଗ· ହାତୀକୁ ଶିକାରୀଙ୍କ ପାଖରୁ ରକ୍ଷା କରିବା

୧୧· ଭାରତରେ କୌଣସି ହାତୀ ଅଭୟାରଣ୍ୟ ଅଛି କି?
- କ· ହଁ
- ଖ· ନାଁ
- ଗ· ଜାଣିନାହିଁ

୧୨· ଯଦି ହଁ, ଅତି କମରେ ଗୋଟିଏ ଅଭୟାରଣ୍ୟର ନାଁ ଲେଖ ।

______________________________

୧୩· ଆପଣଙ୍କ ମତରେ ହାତୀର ସଙ୍କଟ,
- କ· ପ୍ରକୃତ
- ଖ· ରାଜନୈତିକ ଉଦ୍ଦେଶ୍ୟ ପ୍ରଣୋଦିତ
- ଗ· ପରିବେଶବିତ୍‌ଙ୍କ ଦ୍ୱାରା ଅତିରଞ୍ଜିତ

୧୪· ତଳର କେଉଁଟି ଭାରତରେ ହାତୀଙ୍କ ପାଇଁ ସଙ୍କଟ ନୁହେଁ?
- କ· ହାତୀଦାନ୍ତ ପାଇଁ ଶିକାର
- ଖ· ସଉକରେ ଶିକାର
- ଗ· ଚାଷୀଙ୍କ ଦ୍ୱାରା ମରାଯିବା

୧୫· ଆପଣଙ୍କ ମତରେ ଭାରତରେ ଏସୀୟ ହାତୀର ସ୍ଥିତି ପାଇଁ ସବୁଠାରୁ ବଡ଼ ସଙ୍କଟ କ'ଣ? ଗମ୍ଭୀରତା ଦୃଷ୍ଟିରୁ ତଳର ଚାରୋଟି ବିପଦ ପାଇଁ ୧ରୁ ୪ ସଂଖ୍ୟା ଲେଖ, ୪ ସବୁଠାରୁ ବେଶୀ ଏବଂ ୧ ସବୁଠାରୁ କମ ।
- କ· ହାତୀଦାନ୍ତ ପାଇଁ ଶିକାର
- ଖ· ଜଙ୍ଗଲ କମିଯିବା
- ଗ· ମାଂସ ପାଇଁ ମରାଯିବା
- ଘ· ଫସଲ ନଷ୍ଟ କରୁଥିବାରୁ ଚାଷୀଙ୍କ ଦ୍ୱାରା ମରାଯିବା

## ଉତ୍ତର

୧· ହଁ
୨· ଉଚ୍ଚତା, ହାତୀଦାନ୍ତ, କାନ
୩· ୨୫,୦୦୦
୪· ଜ୍ୟେଷ୍ଠା ମାଈ (ମାତୃମୁଖ୍ୟ)
୫· ତୃଣଭୋଜୀ, ଶାକାହାରୀ
୬· ୧୫୦ ଲିଟର
୭· ୧୦୦ କିଲୋଗ୍ରାମ
୮· ମେଘାଳୟ
୯· ହଁ
୧୦· ଏସୀୟ ହାତୀ ଓ ତା'ର ଆବାସସ୍ଥଳୀର ସୁରକ୍ଷା
୧୧· ହଁ
୧୨· ୧୧ଟି ହାତୀ ଅଭୟାରଣ୍ୟର ତାଲିକା ପାଇଁ ହାତୀର ସୁରକ୍ଷା (ଭାଗ ୬) ଦେଖ
୧୩· ପ୍ରକୃତ
୧୪· ସଉକରେ ଶିକାର
୧୫· ଏସୀୟ ହାତୀର ସଙ୍କଟ ବିଷୟରେ ଲୋକମାନେ କ'ଣ ଭାବୁଛନ୍ତି ତାହା ଜାଣିବା ପାଇଁ ଏହି ପ୍ରଶ୍ନଟି ପଚରାଯାଉଛି । ତେଣୁ ଏହାର କିଛି ଠିକ ବା ଭୁଲ ଉତ୍ତର ନାହିଁ ।



Digitized by srujanika@gmail.com

## ନମୁନା ବାଛିବା

ସାଧାରଣ ଅବସ୍ଥାକୁ ବୁଝାଇପାରିଲା ଭଳି ଫଳ ପାଇବା ପାଇଁ ହେଲେ ୩୦ରୁ ଅଧିକ ସଂଖ୍ୟାର ଲୋକଙ୍କ ସହିତ କାମ କରିବାକୁ ହେବ । ଏହାକୁ ପରଖର ନମୁନା ଦଳ କୁହାଯିବ । ଅଧିକ ନିରାପତ୍ତା ପାଇଁ ଗୋଟିଏ ୪୦ ଜଣିଆ ନମୁନା ଦଳ ନିଆଯାଇପାରିବ । ତା'ହେଲେ ଏମାନଙ୍କ ଭିତରୁ କିଛି ଓହରିଗଲେ ବି ଭଲ ଫଳାଫଳ ଦେବା-ପାଇଁ ଯଥେଷ୍ଟ ରହିବେ ।

## ଗୋଷ୍ଠୀ ନମୁନା

ଜନସାଧାରଣଙ୍କ ସର୍ବେକ୍ଷଣ କରିବା ପାଇଁ ଯାଉଥିବା ପିଲାମାନେ ପ୍ରଥମେ ସେମାନେ ନିଜେ ରହୁଥିବା ଜାଗା ସବୁର ତାଲିକା କରିବେ । ଏହା ଭିତରୁ ଚାରୋଟି ଅଞ୍ଚଳ ବଛାଯାଇପାରେ । ପ୍ରତି ଅଞ୍ଚଳ ସର୍ବେକ୍ଷଣ କରିବା ପାଇଁ ଗୋଟିଏ ଦୁଇରୁ ପାଞ୍ଚଜଣିଆ ଦଳ କର । ଦେଖ, ଯେପରି ଏକା ଅଞ୍ଚଳକୁ ଦୁଇଟି ଦଳ ନଯାଆନ୍ତି । ପ୍ରତିଦଳ ସେହି ଅଞ୍ଚଳର ପାଞ୍ଚ ଜଣ ପୁରୁଷ ଏବଂ ପାଞ୍ଚ ଜଣ ମହିଳାଙ୍କୁ ପ୍ରଶ୍ନାବଳୀ ପୂରଣ କରିବା ପାଇଁ ବାଛିବେ । ବଛାଯାଉଥିବା ଲୋକମାନେ ୨୧ ବର୍ଷରୁ ବେଶି ବୟସର ହୋଇଥିବା ଦରକାର । ଏହା ହେବ ସେହି ପିଲାଙ୍କର ନମୁନା ଦଳ ।

ଚାରୋଟି ଅଞ୍ଚଳରୁ ଦଶଜଣ ଲେଖାଏଁ ବଛା ଯାଉଥିବାରୁ ପୂରା ଶ୍ରେଣୀର ନମୁନାରେ ମୋଟ ୪୦ ଜଣ ରହିବେ ।

## ପିଲାଙ୍କ ନମୁନା

ଏଥିପାଇଁ ତୁମ ସ୍କୁଲର ପଞ୍ଚମ, ଷଷ୍ଠ, ସପ୍ତମ ଓ ଅଷ୍ଟମ ଶ୍ରେଣୀର ପିଲାମାନଙ୍କୁ ବଛାଯିବ । ପିଲାଙ୍କଠାରୁ ନମୁନା ସଂଗ୍ରହ କରିବା ଦଳକୁ ଦୁଇରୁ ପାଞ୍ଚ ଜଣିଆ ଚାରୋଟି ଦଳ କର । ପ୍ରତି ଦଳ ଗୋଟିଏ ଶ୍ରେଣୀର ପିଲାଙ୍କର ସାକ୍ଷାତକାର ନେବେ । ପ୍ରତି ଶ୍ରେଣୀରୁ ଦଶ ଜଣ ଲେଖାଏଁ ପିଲା ବାଛିବାକୁ ସେମାନଙ୍କୁ କହିଦିଅ ।

ଚାରୋଟି ଶ୍ରେଣୀରୁ ଦଶଜଣ ଲେଖାଏଁ ପିଲା ବଛାଯାଉଥିବାରୁ ନମୁନାରେ ମୋଟ ୪୦ ଜଣ ପିଲା ରହିବେ ।

## ତଥ୍ୟ ସଙ୍କଳନ

ଜନସାଧାରଣଙ୍କ ସର୍ବେକ୍ଷଣ କରିଥିବା ଦଳଗୁଡ଼ିକ ଏକାଠି ହୋଇ ସେମାନଙ୍କ ତଥ୍ୟର ବିଶ୍ଳେଷଣ ଓ ବ୍ୟାଖ୍ୟା କରନ୍ତୁ । ସେହିପରି ସ୍କୁଲ ଭିତରେ ପିଲାଙ୍କୁ ସାକ୍ଷାତ କରିଥିବା ଦଳଗୁଡ଼ିକର ପିଲାମାନେ ଏକାଠି ବସି ସେମାନଙ୍କ ତଥ୍ୟକୁ ମଧ୍ୟ ବିଶ୍ଳେଷଣ କରନ୍ତୁ ।

ପିଲାଙ୍କୁ କହିଦିଅ ଯେ ସେମାନଙ୍କର ତଥ୍ୟକୁ ସେମାନେ ଦୁଇଟି ସ୍ତରରେ ବିଶ୍ଳେଷଣ କରିବେ ।

୧. ବ୍ୟକ୍ତିଗତ ସ୍ତରରେ – ବିଷୟଟି ଉପରେ ଜଣେ ବ୍ୟକ୍ତିଙ୍କର ଜ୍ଞାନ କେତେ ତାହା ଜାଣିବା ପାଇଁ । ପରେ ସବୁ ବ୍ୟକ୍ତିଙ୍କର ତଥ୍ୟ ଏକାଠି କଲେ ପୂରା ନମୁନା ଦଳର ଜ୍ଞାନର ସ୍ତର ଜଣାପଡ଼ିବ ।

୨. ପ୍ରଶ୍ନ ସ୍ତରରେ – ଏସୀୟ ହାତୀର ନିର୍ଦ୍ଦିଷ୍ଟ ଦିଗ ବିଷୟରେ ଥିବା ବ୍ୟକ୍ତିଗତ ଓ ସାମୁହିକ ଜ୍ଞାନର ପରିମାଣ ଏବଂ ଗଭୀରତା ବିଷୟରେ ବୁଝିବା ପାଇଁ ।

## ବ୍ୟକ୍ତିଗତ ବିଶ୍ଳେଷଣ

ଜଣେ ଉତ୍ତରଦାତାଙ୍କୁ ବ୍ୟକ୍ତିଗତ ଭାବରେ ବିଶ୍ଳେଷଣ କରିବା ପାଇଁ ସେ ଦେଇଥିବା ଉତ୍ତରଗୁଡ଼ିକୁ ଦେଖ ଏବଂ ମୋଟ କେତୋଟି ଠିକ ଉତ୍ତର ସେ ଦେଇଛନ୍ତି ତାହା ଚିହ୍ନଟ କର । ଯାହାର ଯେତେ ବେଶି ଉତ୍ତର ଠିକ ହେବ, ସେ ଲୋକ ହାତୀ ବିଷୟରେ ସେତେ ଅଧିକ ବୁଝିଛନ୍ତି ।

### ୧କ. ବ୍ୟକ୍ତିଗତ ବ୍ୟାଖ୍ୟା (ପ୍ରଶ୍ନ ୧ରୁ ୧୪ ପାଇଁ):

ବ୍ୟକ୍ତିଗତ ବୁଝାମଣାକୁ ବ୍ୟାଖ୍ୟା କରିବା ପାଇଁ ମୋଟ ଠିକ ଉତ୍ତର ସଂଖ୍ୟାକୁ ମୋଟ ପ୍ରଶ୍ନ ସଂଖ୍ୟାରେ ଭାଗ କର । ଜଣେ ବ୍ୟକ୍ତି ଶତକଡ଼ା କେତେ ଠିକ୍ କହିଲେ ତାହା ଏଥିରୁ ଜଣାଯିବ ।

ଉଦାହରଣ ସ୍ୱରୂପ, ଯଦି ଜଣେ ବ୍ୟକ୍ତି 'କ' ୧୪ଟି ପ୍ରଶ୍ନରୁ ୯ଟି ଠିକ ଉତ୍ତର ଦେଇଛନ୍ତି ତେବେ ସେ ୯ x ୧୦୦ / ୧୪ = ୬୪ %  ଉତ୍ତର ଜାଣିଛନ୍ତି ।

ବ୍ୟାଖ୍ୟା ସାରଣୀ (ସାରଣୀ ଖ) ବ୍ୟବହାର କରି ଏହି ଲୋକଙ୍କର ଜ୍ଞାନର ମୂଲ୍ୟ ନିର୍ଦ୍ଧାରଣ କର । କ ମୋଟ ଶତକଡ଼ା ୬୪ ପାଇଛନ୍ତି, ତେଣୁ ବ୍ୟାଖ୍ୟା ସାରଣୀ ଅନୁସାରେ ହାତୀ ଉପରେ ତାଙ୍କର ଜ୍ଞାନ ମଧ୍ୟମ ଧରଣର ।

### ୧ଖ. ମୋଟ ନମୁନା ବ୍ୟାଖ୍ୟା:

ବ୍ୟକ୍ତିଗତ ପାହ୍ୟାରୁ ଆମେ ଏବେ ପୂରା ନମୁନାର ଜ୍ଞାନର ସ୍ତର ବାହାର କରିବା । ପୂରା ନମୁନା ବ୍ୟାଖ୍ୟା କରିବା ପାଇଁ ପ୍ରଥମେ ସାରଣୀ ଘ ବ୍ୟବହାର କରି ପ୍ରତି ଲୋକର ଜ୍ଞାନର ସ୍ତର ବ୍ୟାଖ୍ୟା କର । ସେସବୁକୁ ତଳେ ଥିବା ନମୁନା ସାରଣୀ ଭଳି ଗୋଟିଏ ସାରଣୀରେ ଲେଖ । ସେଥିରେ ପ୍ରତି ଉତ୍ତରଦାତାଙ୍କ ପାଇଁ ଗୋଟିଏ କରି ସ୍ତମ୍ଭ ରହିବ ।

ମନେକର ପ୍ରଥମ ଉତ୍ତରଦାତାଙ୍କ ଜ୍ଞାନ ଉଚ୍ଚତର ତେବେ ଉଚ୍ଚଜ୍ଞାନ ଧାଡ଼ିରେ ପ୍ରଥମ ସ୍ତମ୍ଭରେ ୧ ଲେଖାଯିବ । ଯଦି ଦ୍ୱିତୀୟ ଉତ୍ତରଦାତାଙ୍କର ଜ୍ଞାନ ସାଧାରଣ ଥିବ ସାଧାରଣ ଜ୍ଞାନ ଧାଡ଼ିରେ ଦ୍ୱିତୀୟ ସ୍ତମ୍ଭରେ ୧ ଲେଖ । ଏହିପରି ପୂରା ୪୦ ଜଣଙ୍କର ତଥ୍ୟ ଲେଖି ତିନିଟି ଧାଡ଼ିରେ ୪୦ଟି ଯାକ ସ୍ତମ୍ଭରେ ୧ ଯୋଡ଼ିଚାଲ ।

### ନମୁନା ସାରଣୀ

| ଉତ୍ତରଦାତାଙ୍କ କ୍ରମ | ୧ | ୨ | ୩ | ୪ | ୫ | |
|---|---|---|---|---|---|---|
| ଜ୍ଞାନର ସ୍ତର | | | | | | |
| ଉଚ୍ଚ ଜ୍ଞାନ | | | | | | ମୋଟ |
| ମଧ୍ୟମ ଜ୍ଞାନ | | | | | | ମୋଟ |
| ସ୍ୱଳ୍ପ ଜ୍ଞାନ | | | | | | ମୋଟ |



Digitized by srujanika@gmail.com

ଭଲରେ ବୁଝିବା ପାଇଁ ଗୋଟିଏ ଦଶଜଣିଆ ଦଳଙ୍କ ଉଦାହରଣ ନେଇ ଦେଖିବା ।

| | ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ | ମୋଟ |
|---|---|---|---|---|---|---|---|---|---|---|---|
| ଉଚ୍ଚ ସ୍ଥାନ | ୧ | | ୧ | ୧ | ୧ | ୧ | | ୧ | | | ୬/୧୦ = ୬୦% |
| ମଧ୍ୟମ ସ୍ଥାନ | | ୧ | | | | | ୧ | | ୧ | | ୩/୧୦ = ୩୦% |
| ସ୍ୱଳ୍ପ ସ୍ଥାନ | | | | | | | | | | ୧ | ୧/୧୦ = ୧୦% |

ଏହି ସାରଣୀରୁ ଆମେ ଦେଖିପାରିବା ଯେ ୧୦ ଜଣ ଉତ୍ତରଦାତାଙ୍କ ଭିତରୁ ଶତକଡ଼ା ୬୦ ଜଣଙ୍କର ହାତୀ ବିଷୟରେ ବହୁତ ଜ୍ଞାନ ଅଛି । ୩୦ ଭାଗଙ୍କର ସାଧାରଣ ଜ୍ଞାନ ଏବଂ ୧୦ ଭାଗଙ୍କର ଅତି କମ ଜ୍ଞାନ ଅଛି ।

## ୨. ପ୍ରଶ୍ନ ବିଶ୍ଳେଷଣ (୧ରୁ ୧୪ ସବୁ ପ୍ରଶ୍ନ ପାଇଁ)

ପ୍ରତି ପ୍ରଶ୍ନ ପାଇଁ ସାରଣୀ କ ଭଳି ଗୋଟିଏ ଗୋଟିଏ ସାରଣୀ ପ୍ରସ୍ତୁତ କରିବା ଦରକାର । ନମୁନାର ସବୁ ଉତ୍ତରଦାତାଙ୍କର ଗୋଟିଏ ପ୍ରଶ୍ନର ଉତ୍ତର ଏହି ସାରଣୀରେ ରହିବ ।

### ସାରଣୀ କ

| ପ୍ରଶ୍ନର କ୍ରମସଂଖ୍ୟା<br>ପ୍ରଶ୍ନ | **ଉତ୍ତର ବିକଳ୍ପ ୧**<br>ମୋଟ ଶତକଡ଼ା |
|---|---|
| | **ଉତ୍ତର ବିକଳ୍ପ ୨**<br>ମୋଟ ଶତକଡ଼ା |
| | **ଉତ୍ତର ବିକଳ୍ପ ୩**<br>ମୋଟ ଶତକଡ଼ା |

### ସାଙ୍କେତିକରଣ

ପ୍ରଶ୍ନାବଳୀରୁ ଆମେ ଦେଖିପାରିବା ଯେ ପ୍ରତି ପ୍ରଶ୍ନରେ ତିନୋଟି ଉତ୍ତର ରହିଛି । କିନ୍ତୁ ଉତ୍ତରର ପ୍ରକାର ସବୁ ପ୍ରଶ୍ନରେ ଅଲଗା । କେତେକ ପ୍ରଶ୍ନରେ ହଁ, ନାହିଁ, ଜାଣିନାହିଁ ରହିଛି ତ ଆଉ କେତେକରେ ତଥ୍ୟମୂଳକ ଉତ୍ତର ରହିଛି । ଉଭୟ ପ୍ରକାରର ପ୍ରଶ୍ନକୁ ବିଶ୍ଳେଷଣ କରିବା ପାଇଁ ଏଠାରେ ଦୁଇ ପ୍ରକାରରୁ ଗୋଟିଏ କରି ନମୁନା ବିଶ୍ଳେଷଣ ଦିଆଯାଇଛି ।

କୌଣସି ନିର୍ଦ୍ଦିଷ୍ଟ ପ୍ରଶ୍ନ ପାଇଁ ପ୍ରତି ଉତ୍ତରଦାତା ଦେଇଥିବା ଉତ୍ତର ସାରଣୀରେ ଲେଖାଯିବ । ଧାରା ବୁଝିବା ପାଇଁ ଗୋଟିଏ ନମୁନା ସାଙ୍କେତିକରଣ ସାରଣୀ ଏଠାରେ ଦିଆଯାଇଛି । କୌଣସି ପ୍ରଶ୍ନ ପାଇଁ ମୋଟ ଉତ୍ତର ସଂଖ୍ୟା ନମୁନା ସଂଖ୍ୟାଠାରୁ ବେଶୀ ହେବନାହିଁ ।

### ଉଦାହରଣ - ହଁ, ନାହିଁ, ଜାଣେନାହିଁ ଉତ୍ତରର ବିଶ୍ଳେଷଣ

ନମୁନା ପ୍ରକାର: ଛାତ୍ର          ନମୁନା ସଂଖ୍ୟା: ୪୦

ପ୍ରଥମେ ପ୍ରତି ପ୍ରଶ୍ନ ପାଇଁ ଗୋଟିଏ ଗୋଟିଏ ସାରଣୀ ତିଆରି କର । ଏବେ ପ୍ରଶ୍ନାବଳୀର ପ୍ରତି ପ୍ରଶ୍ନକୁ ଗୋଟିଏ ପରେ ଗୋଟିଏ ନେଇ ହଁ, ନାହିଁ, ଜାଣିନାହିଁ ଘରମାନଙ୍କରେ ଗାର ପକାଇଚାଲ । ପ୍ରତି ଉତ୍ତରର ଗାରଗୁଡ଼ିକୁ ମିଶାଇଦିଅ ଏବଂ ହିସାବ କର ଯେ କେତେଜଣ ହଁ, କେତେଜଣ ନାହିଁ ଏବଂ କେତେଜଣ ଜାଣିନାହିଁ ବୋଲି ଉତ୍ତର ଦେଇଛନ୍ତି ।

ଉଦାହରଣ ସ୍ୱରୂପ, ସାରଣୀ 'ଗ'ରେ ଥିବା ପ୍ରଶ୍ନ ପାଇଁ ୪୦ ଜଣିଆ ନମୁନା ଦଳ ଭିତରୁ ୩୦ ଜଣ ହଁ କଲେ, ୮ ଜଣ ନାଁ କହିଲେ ଏବଂ ୨ ଜଣ ଜାଣିନାହିଁ ବୋଲି କହିଲେ । ଏବେ ହଁ, ନାହିଁ ଏବଂ ଜାଣିନାହିଁ ଉତ୍ତର ଦେଇଥିବା ପିଲାଙ୍କର ଶତକଡ଼ା ହିସାବ କର । ଏଥିପାଇଁ ୩୦x୧୦୦/୪୦ ବା ୭୫ ଭାଗ ଲୋକ ହଁ କରିଛନ୍ତି । ନାଁ କରିଥିବା ଲୋକଙ୍କର ଶତକଡ଼ା ଭାଗ ହେଉଛି ୮x୧୦୦/୪୦ ବା ୨୦ ଭାଗ । ସେହିପରି ୨x୧୦୦/୪୦ ବା ୫ ଭାଗ ଲୋକ ଜାଣିନାହିଁ ବୋଲି ଉତ୍ତର ଦେଇଛନ୍ତି ।

### ଉଦାହରଣ - ତଥ୍ୟମୂଳକ ଉତ୍ତରର ବିଶ୍ଳେଷଣ

ଏଥିପାଇଁ ସାରଣୀ 'କ' ଭଳି ଗୋଟିଏ ସାରଣୀ ତିଆରି କରିବାକୁ ହେବ । କେବଳ ଏଥିରେ ଡାହାଣ ପଟ ସ୍ତମ୍ଭରେ ହଁ, ନାହିଁ, ଜାଣିନାହିଁ ବଦଳରେ ତିନୋଟିଯାକ ଉତ୍ତର ଲେଖିବାକୁ ହେବ । ସାରଣୀ 'ଘ' ରେ ଏହିପରି ଗୋଟିଏ ପ୍ରଶ୍ନର ନମୁନା ରହିଛି ।

ଉଦାହରଣ ସ୍ୱରୂପ, ୪୦ ଜଣିଆ ପିଲାଙ୍କ ନମୁନା ଦଳ ପାଇଁ ସାରଣୀ 'ଘ' ର ପ୍ରଶ୍ନରେ ୨୫ ଜଣ କହିଲେ ଏସୀୟ ଓ ଆଫ୍ରିକୀୟ ହାତୀଙ୍କ ଭିତରେ ତଫାତ ହେଉଛି ଉଚ୍ଚତା, ହାତୀଦାନ୍ତ ଏବଂ କାନ, ୮ ଜଣ କହିଲେ ଉଚ୍ଚତା ଏବଂ ହାତୀଦାନ୍ତ ଏବଂ ୨ ଜଣ କହିଲେ ଏସବୁ କିଛି ନୁହେଁ । ଏବେ ଆଗ ଭଳି ପିଲାଙ୍କୁ ସବୁ ପ୍ରକାର ଉତ୍ତରର ଶତକଡ଼ା ହିସାବ କରିବାକୁ କୁହ । ଉଚ୍ଚତା, ହାତୀଦାନ୍ତ ଓ କାନ କହିଥିଲେ ୨୫x୧୦୦/୪୦=୬୨.୫% ପିଲା । ଉଚ୍ଚତା ଓ ହାତୀଦାନ୍ତ କହିଥିବା ପିଲା ହେଲେ ୧୦x୧୦୦/୪୦=୨୫% ଏବଂ କିଛି ନୁହେଁ ଉତ୍ତର ଦେଇଥିବା ପିଲା ହେବେ ୫x୧୦୦/୪୦=୧୨.୫% ।

### ସାରଣୀ ଖ

#### ବ୍ୟାଖ୍ୟା

ହାତୀ ବିଷୟରେ ଲୋକଙ୍କ ଜ୍ଞାନକୁ ସ୍ତର ଅନୁସାରେ ଭାଗକରିବା ପାଇଁ ଏହି ବ୍ୟାଖ୍ୟା ସାରଣୀ ବ୍ୟବହାର କର ।

| | |
|---|---|
| ଶତକଡ଼ା ୮୧-୧୦୦ | ବହୁତ ଜ୍ଞାନ |
| ଶତକଡ଼ା ୫୧-୮୦ | ସାଧାରଣ ଜ୍ଞାନ |
| ଶତକଡ଼ା ୫୦ ବା କମ୍ | ଅଳ୍ପ ଜ୍ଞାନ |



Digitized by srujanika@gmail.com

## ସାରଣୀ ଗ

| ପ୍ରଶ୍ନ ୧ | |
|---|---|
| ପୃଥିବୀରେ ଦୁଇ ପ୍ରକାରର ହାତୀ ଅଛନ୍ତି କି ? | ହଁ 𝍸 𝍸 𝍸 𝍸 𝍸 𝍸<br>ମୋଟ ୩୦ ଶତକଡ଼ା ୭୫% |
| | ନାଁ 𝍸 \|\|\|<br>ମୋଟ ୮ ଶତକଡ଼ା ୨୦% |
| | ଜାଣିନାହିଁ \|\|<br>ମୋଟ ୨ ଶତକଡ଼ା ୫% |

## ସାରଣୀ ଘ

| ପ୍ରଶ୍ନ ୨ | |
|---|---|
| ଏସୀୟ ଏବଂ ଆଫ୍ରିକୀୟ ହାତୀ ଭିତରେ ମୁଖ୍ୟ ତଫାତ୍ କ'ଣ ? | ଉଚ୍ଚତା, ହାତୀଦାନ୍ତ ଏବଂ କାନ 𝍸 𝍸 𝍸 𝍸 𝍸<br>ମୋଟ ୨୫ ଶତକଡ଼ା ୬୩·୫% |
| | ଉଚ୍ଚତା, ହାତୀଦାନ୍ତ 𝍸 𝍸<br>ମୋଟ ୧୦ ଶତକଡ଼ା ୨୫% |
| | କୌଣସିଟି ନୁହେଁ 𝍸<br>ମୋଟ ୫ ଶତକଡ଼ା ୧୨·୫% |

### ୨. ପ୍ରଶ୍ନ ବ୍ୟାଖ୍ୟା

ଏହା ଆଗରୁ ସାକ୍ଷାତକାର ଦେଇଥିବା ନମୁନା ଦଳଙ୍କର ଏସୀୟ ହାତୀର ବିଭିନ୍ନ ଦିଗ ଉପରେ ଥିବା ଜ୍ଞାନର ବିଶ୍ଳେଷଣ କରାଯାଇଛି (ପ୍ରଶ୍ନ ବିଶ୍ଳେଷଣ ଦେଖ) । ସେଥିରୁ ମିଳିଥିବା ତଥ୍ୟକୁ ବ୍ୟବହାର କରି କୌଣସି ନିର୍ଦ୍ଦିଷ୍ଟ ପ୍ରଶ୍ନ ବିଷୟରେ ନମୁନା ଦଳଟି କେତେ ଜାଣିଛନ୍ତି ତାହାର ବ୍ୟାଖ୍ୟା କରିହେବ ।

ଉଦାହରଣ ସ୍ୱରୂପ, ତଥ୍ୟ ସଂଗ୍ରହ ବିଭାଗର ପ୍ରଥମ ପ୍ରଶ୍ନରେ (ହଁ, ନାହିଁ, ଜାଣିନାହିଁ ବିଶ୍ଳେଷଣର ଉଦାହରଣ) ଏସୀୟ ହାତୀର ଦୁଇଟି ଜାତି ଅଛନ୍ତି ପ୍ରଶ୍ନର ଶତକଡ଼ା ୭୫ ଭାଗ ଉତ୍ତର ଥିଲା ହଁ, ୨୦ ଭାଗ ଉତ୍ତର ନାଁ ଏବଂ ଜାଣିନାହିଁ ଥିଲା ୫ ଭାଗ । ତେଣୁ ସାରଣୀ 'ଖ'ର ତଥ୍ୟକୁ ବ୍ୟବହାର କରି ଆମେ କହିପାରିବା ଯେ ନମୁନା ଦଳର ଲୋକମାନଙ୍କର ଏସୀୟ ହାତୀର ଏହି ଦିଗଟି ବିଷୟରେ ବେଶ୍ ଜ୍ଞାନ ଅଛି ।

### ୧୫ତମ ପ୍ରଶ୍ନ ପାଇଁ

ଏହି ପ୍ରଶ୍ନ ପାଇଁ ତଳ ସାରଣୀ ଭଳି ଗୋଟିଏ ସାରଣୀ ତିଆରି କର ଏବଂ ଉତ୍ତରଦାତାମାନେ ପ୍ରତି ବିପଦ ପାଇଁ ଦେଇଥିବା ସଂଖ୍ୟା ଲେଖିକରି ଏହାକୁ ପୂରଣ କର । ମନେକର ପ୍ରଥମ ଉତ୍ତରଦାତା ପ୍ରଥମ ବିପଦ ପାଇଁ ସଂଖ୍ୟା ୨ ଦେଇଛନ୍ତି, ଦ୍ୱିତୀୟ ବିପଦକୁ ୪, ତୃତୀୟକୁ ୧ ଏବଂ ଚତୁର୍ଥକୁ ୩ । ଏସବୁକୁ ତଳ ସାରଣୀରେ ଭରିଦିଅ । ପ୍ରତି ଉତ୍ତରଦାତାଙ୍କ ସଂଖ୍ୟାକୁ ଏହିପରି ଲେଖ । ଏହା ବୁଝିବା ପାଇଁ ଗୋଟିଏ ଦଶଜଣିଆ ଦଳର ଉଦାହରଣ ନେଇ ଦେଖିବା ।

### ବିଶ୍ଳେଷଣ ପାଇଁ ଉଦାହରଣ

| | ବିପଦ କ | ବିପଦ ଖ | ବିପଦ ଗ | ବିପଦ ଘ |
|---|---|---|---|---|
| ଉତ୍ତରଦାତା ୧ | ୨ | ୪ | ୧ | ୩ |
| ଉତ୍ତରଦାତା ୨ | ୨ | ୧ | ୩ | ୪ |
| ଉତ୍ତରଦାତା ୩ | ୧ | ୪ | ୨ | ୩ |
| ଉତ୍ତରାଦାତା ୪ | ୨ | ୧ | ୩ | ୪ |
| ଉତ୍ତରଦାତା ୫ | ୨ | ୩ | ୪ | ୧ |
| ଉତ୍ତରଦାତା ୬ | ୧ | ୨ | ୩ | ୪ |
| ଉତ୍ତରଦାତା ୭ | ୨ | ୪ | ୩ | ୧ |
| ଉତ୍ତରଦାତା ୮ | ୧ | ୩ | ୪ | ୨ |
| ଉତ୍ତରଦାତା ୯ | ୨ | ୧ | ୪ | ୩ |
| ଉତ୍ତରଦାତା ୧୦ | ୧ | ୩ | ୪ | ୨ |
| ମୋଟ | ୧୬ | ୨୬ | ୩୧ | ୨୭ |
| ଅନୁପାତ | ୧୬/୧୦ = ୧·୬ | ୨୬/୧୦ = ୨·୬ | ୩୧/୧୦ = ୩·୧ | ୨୭/୧୦ = ୨·୭ |

(ଅନୁପାତ = ବିପଦ ସୂଚକ ସଂଖ୍ୟାର ମୋଟ / ନମୁନା ଆକାର)

ତଥ୍ୟ ସଙ୍କଳନ କଲାବେଳେ ଲକ୍ଷ ରଖିବ ଯେପରି କୌଣସି ବିପଦ ପାଇଁ ଆମର ନମୁନା ଆକାର ୧୦ ହୋଇଥିବାରୁ ସୂଚକ ଅନୁପାତ ସବୁଠାରୁ ବେଶି ୪ ଓ ସବୁଠାରୁ କମ ୧ ହେଉଥିବ ।

### ପ୍ରଶ୍ନ ୧୫ର ବ୍ୟାଖ୍ୟା

ଏହି ପ୍ରଶ୍ନର ବ୍ୟାଖ୍ୟା ପାଇଁ ପ୍ରତି ବିପଦର ମୋଟ ସୂଚକ ସଂଖ୍ୟାକୁ ନମୁନା ଆକାରରେ ଭାଗ କର । ଯେଉଁ ବିପଦର ସୂଚକ ଅନୁପାତ ସବୁଠାରୁ ଅଧିକ ହେବ, ସେହି ବିପଦଟି ସେହି ନମୁନା ଦଳରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବୋଲି ଧରାଯିବ । ସବୁଠାରୁ କମ ଅନୁପାତର ବିପଦ ସବୁଠାରୁ କମ ଗୁରୁତ୍ୱପୂର୍ଣ୍ଣ ଭାବରେ ଗଣାଯିବ । ଉପରର ଉଦାହରଣରେ ସେହି ନମୁନା ଦଳର ମତରେ ବିପଦ ଗ ହେଉଛି ସବୁଠାରୁ ବେଶି ଗୁରୁତର ଏବଂ ବିପଦ କ ହେଉଛି ସବୁଠାରୁ କମ୍ ଗୁରୁତର ।



Digitized by srujanika@gmail.com

ପରଖ

# ହାତୀ ଅନୁଧ୍ୟାନ

**ବୈଜ୍ଞାନିକ ଗବେଷଣା କରି ହାତୀ ଓ ତା'ର ଗତିବିଧି ବିଷୟରେ ଜାଣିବା ।**

| | |
|---|---|
| *ଉଦ୍ଦେଶ୍ୟ* | ପିଲାଙ୍କୁ ସାହାଯ୍ୟ କରିବା<br>• ବିଜ୍ଞାନ ଗବେଷଣାର ଧାରା ବୁଝିବା<br>• ହାତୀର ଜୀବନ ଓ ଆବାସସ୍ଥଳୀ ବିଷୟରେ ଅଧିକ ଜାଣିବା, ଜଙ୍ଗଲୀ ଓ ପୋଷା ହାତୀଙ୍କ ଜୀବନ ଓ ଖାଦ୍ୟ ତୁଳନା କରିବା |
| *ସ୍ତର* | ଉଚ୍ଚତର |
| *ବିଷୟ* | ବିଜ୍ଞାନ |
| *ଦଳର ଆକାର* | ଛଅ ସାତୋଟି ଦଳ |
| *ସ୍ଥାନ* | ଶ୍ରେଣୀଗୃହ ବାହାରେ |
| *ସମୟ ଅବଧି* | ଚିଡ଼ିଆଖାନା, ମନ୍ଦିର ବା ଜଙ୍ଗଲ ଶିବିରରେ ଗୋଟିଏ ଦିନ |
| *ସାମଗ୍ରୀ* | ଲେଖିବା ଜିନିଷ |

ବୈଜ୍ଞାନିକ ଗବେଷଣାର ଲକ୍ଷ ହେଉଛି ସତ୍ୟକୁ ଖୋଜିବା । ବୈଜ୍ଞାନିକ ଗବେଷଣାର ଧାରା ବ୍ୟବହାର କରି ଅନେକ ଅଜଣା ପ୍ରଶ୍ନର ସମାଧାନ କରାଯାଇପାରେ । ପ୍ରଚଳିତ ତତ୍ତ୍ୱ ପାଇଁ ଏହା ପ୍ରମାଣ ଯୋଗାଇପାରେ ଏବଂ ଏବେକାର ଜ୍ଞାନକୁ ଆଧାର କରି ନୂଆ ତଥ୍ୟ ଆବିଷ୍କାର କରେ ।

ବୈଜ୍ଞାନିକ ଗବେଷଣାର ଗୋଟିଏ ନିର୍ଦ୍ଦିଷ୍ଟ ଧାରା ରହିଛି । ଏହି ଧାରାର ଆରମ୍ଭ ହୁଏ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଘଟଣାରୁ (ସୀମିତ ସ୍ଥାନ ଓ ସମୟର ଘଟଣା), କୌଣସି ପରିଘଟଣା (ଉଭୟ ସମୟ ଏବଂ ସ୍ଥାନ ଦୃଷ୍ଟିରୁ ଅଧିକ ବ୍ୟାପକ ଘଟଣା) ବା ସମାଧାନ ଦରକାର କରୁଥିବା କୌଣସି ଏକି ସମସ୍ୟା । ଜଣେ ବୈଜ୍ଞାନିକ ପୂରା ସ୍ଥିତିକୁ ନିରୀକ୍ଷଣ କରନ୍ତି ଏବଂ ବିଷୟଟିର ସବିସ୍ତାର ବିଶ୍ଳେଷଣ ପାଇଁ ତା'ର ବିଭିନ୍ନ ଦିଗ ଉପରେ ଅନୁଧ୍ୟାନ ଆରମ୍ଭ କରନ୍ତି । ଏହି ବିଶ୍ଳେଷଣ ଏବଂ ଅନୁଧ୍ୟାନ ଭିତରେ ବିଷୟର ବର୍ଗୀକରଣ, ଅନ୍ୟ କାହା ସହିତ ଥିବା ସମ୍ପର୍କକୁ ଖୋଜିବା, ସମାନତା/ଅସମତାର ତୁଳନା କିମ୍ବା ପରିସ୍ଥିତି ବା ସମସ୍ୟାର ସମାଧାନ ପାଇଁ ସମ୍ଭାବ୍ୟ ବ୍ୟାଖ୍ୟା ଖୋଜିବା ଆଦି ରହିଥାଏ । ତା'ପରେ ଘଟଣାଟିକୁ ବୁଝାଇବା ପାଇଁ କିଛି ତାତ୍ତ୍ୱିକ କାରଣର ଉପସ୍ଥାପନ କରାଯାଏ । ଏହାକୁ ପରିକଳ୍ପନା କୁହାଯାଏ । କାରଣ ଏବେ ତାହାର ସଠିକତା ଦିଗରେ ପରୀକ୍ଷା ହେବା ବାକି ଅଛି । ତା'ପରେ ପରିକଳ୍ପନା ଠିକ ଅଛି କି ନାହିଁ ଜାଣିବା ପାଇଁ କିଛି କାମ ବା ପରୀକ୍ଷା ଦରକାର ହୁଏ । ପରୀକ୍ଷାଫଳର ବ୍ୟାଖ୍ୟାରୁ ପରିକଳ୍ପନାର ଗ୍ରହଣୀୟତା ଜଣାପଡେ । ଶେଷରେ ଏହା ଗୋଟିଏ ବୈଜ୍ଞାନିକ ତତ୍ତ୍ୱ ବା ନିୟମ ଭାବରେ ଗୃହୀତ ହୋଇଥାଏ ।

## ଆରମ୍ଭ କରିବା ଆଗରୁ

କୌଣସି ଜୀବ ଓ ତା'ର ଆବାସସ୍ଥଳୀ ଉପରେ ଗବେଷଣା କାହିଁକି ଦରକାର ତାହା ପିଲାଙ୍କ ସହ ଆଲୋଚନା କର । ବର୍ତ୍ତମାନ ହାତୀ ଉପରେ ବା ଆମ ଚାରିପାଖର ଅନ୍ୟ ସବୁ ଜିନିଷ ଉପରେ ଯେତିକି ତଥ୍ୟ ଆମ ପାଖରେ ଅଛି ସେସବୁ କେହି ଜଣେ କରିଥିବା ବୈଜ୍ଞାନିକ ଗବେଷଣାରୁ ମିଳିଛି ।

ଏପରିକି ଆଜି ବି ହାତୀ ବିଷୟରେ ସମ୍ପୂର୍ଣ୍ଣ ଏବଂ ସଠିକ ତଥ୍ୟ ଆମ ପାଖରେ ନାହିଁ ବୋଲି ପିଲାଙ୍କୁ କୁହ । ଏହି ପ୍ରକଳ୍ପ ମାଧ୍ୟମରେ ସେମାନେ ହାତୀ ବିଷୟରେ ଥିବା କିଛି ପ୍ରଶ୍ନର ସମାଧାନ ପାଇଁ ଗୋଟିଏ ଗବେଷଣା ପ୍ରକଳ୍ପ ପ୍ରସ୍ତୁତ କରିବେ ଏବଂ ସେ ଦିଗରେ କିଛି କାମ କରିବା ପାଇଁ ଚେଷ୍ଟା କରିବେ ।

ଏହି ପ୍ରକଳ୍ପ ସେମାନଙ୍କୁ ଜଣେ ଜଣେ ବୈଜ୍ଞାନିକ ହେବାର ସୁଯୋଗ ଦେବ ଏବଂ ଗବେଷଣା କରି ହାତୀ ବିଷୟରେ କିଛି ପ୍ରଶ୍ନର ଉତ୍ତର ପାଇବାରେ ସାହାଯ୍ୟ କରିବ ବୋଲି ପିଲାଙ୍କୁ କହିଦିଅ ।

## ପରଖର ଧାରା

ପୂରା ଶ୍ରେଣୀକୁ ଛଅ ସାତୋଟି ଦଳରେ ଭାଗ କର ଏବଂ ସେମାନଙ୍କ ଆଗ୍ରହ ଅନୁସାରେ ହାତୀ ବିଷୟରେ ଗୋଟିଏ ଗୋଟିଏ ପ୍ରଶ୍ନ ବାଛିବାକୁ କୁହ । ତା'ପରେ ସେମାନେ ଚିନ୍ତା କରିବେ ଏହି ପ୍ରଶ୍ନର ଉତ୍ତର କିପରି ପରୀକ୍ଷା ମାଧ୍ୟମରେ ବାହାର କରାଯାଇପାରିବ । ଏହି ଚିନ୍ତାକୁ ଆଧାର କରି ସେମାନେ ଗୋଟିଏ ଗବେଷଣା ପ୍ରକଳ୍ପର ଧାରା, ସେଥିପାଇଁ ଦରକାର ହେଉଥିବା ଜିନିଷ ଆଦିର ସବିସ୍ତାର ଯୋଜନା କରିବେ । ଏହା ହୋଇଗଲା ପରେ ସ୍ଥାନୀୟ ବିଶ୍ୱବିଦ୍ୟାଳୟ, ବୈଜ୍ଞାନିକ ଅନୁଷ୍ଠାନ ଆଦିରୁ କିଛି ଦକ୍ଷ ବୈଜ୍ଞାନିକଙ୍କୁ ଡାକି ତାଙ୍କ ଆଗରେ ପିଲାମାନଙ୍କ ପ୍ରକଳ୍ପ ସବୁର ଉପସ୍ଥାପନା କରାଯିବ । ବୈଜ୍ଞାନିକମାନେ ଏହାର ପ୍ରଣାଳୀ ଠିକ୍ ଅଛି କି ନାହିଁ, ତାହା କରିହେବ କି ନାହିଁ, ସମ୍ଭବ କି ନୁହେଁ ଆଦି ଦିଗ ଉପରେ ମତାମତ ଦେବେ ଏବଂ ପ୍ରକଳ୍ପକୁ ଆହୁରି ଉନ୍ନତ କରିବା ପାଇଁ ପରାମର୍ଶ ଦେବେ । ଉପସ୍ଥାପନା ଏବଂ ମତାମତ ପରେ ପିଲାମାନେ ପୋଷା ହାତୀଙ୍କ ସହ କରିହେଲା ଭଳି ଗୋଟିଏ ବା ଦୁଇଟି ପ୍ରକଳ୍ପ ବାଛିବେ । ଶେଷରେ କୌଣସି ଚିଡ଼ିଆଖାନା, ମନ୍ଦିର ବା ଜଙ୍ଗଲ ଶିବିରରେ ପ୍ରକୃତ କାମଟି କରି ତାଙ୍କର ପ୍ରସ୍ତାବିତ ଧାରାକୁ ପରଖିନେବେ ।

### ଗବେଷଣା ପାଇଁ ବିଷୟ ବାଛିବା

ହାତୀ ବିଷୟରେ ଅନେକ ପ୍ରଶ୍ନ ପଚାରି ପିଲାଙ୍କ ସହ ଆଲୋଚନା ଆରମ୍ଭ କର ଏବଂ ସେମାନେ ଏସବୁର ଉତ୍ତର କିପରି ପାଇବେ ସେ ଦିଗରେ ଚିନ୍ତା କରିବା



Digitized by srujanika@gmail.com

## ବୈଜ୍ଞାନିକ ଗବେଷଣାର ସାଧାରଣ ପାଦ

ସମସ୍ୟା/ଘଟଣା/ପରିଘଟଣା

↓

ନିରୀକ୍ଷଣ/ଅନ୍ୱେଷଣ/ବିଶ୍ଳେଷଣ

↓

ସ୍ପଷ୍ଟୀକରଣ/ପରିକଳ୍ପନା/ସ୍ୱୀକାର

↓

ପରୀକ୍ଷା/ସଠିକତା ନିରୂପଣ/ପ୍ରୟୋଗ

↓

ଫଳାଫଳ

↓

ନିୟମ/ତତ୍ତ୍ୱ

ପାଇଁ ପିଲାଙ୍କୁ କୁହ । ଆଲୋଚନା ପାଇଁ କିଛି ନମୁନା ପ୍ରଶ୍ନ ତଳେ ଦିଆଯାଇଛି । ଏହି ତାଲିକାରେ ଆହୁରି ଯୋଡ଼ିବା ପାଇଁ ପିଲାଙ୍କୁ କୁହ । ଶେଷରେ ଯେଉଁ ତାଲିକା ବାହାରିବ ସେଥିରୁ ପ୍ରତି ଦଳ ତାଙ୍କ ଗବେଷଣା ପାଇଁ ଗୋଟିଏ ଗୋଟିଏ ବିଷୟ ବାଛିବେ । ଗବେଷଣା ପାଇଁ ସବୁବେଳେ ଗୋଟିଏ ମାତ୍ର ପ୍ରଶ୍ନ ନେବା ଜରୁରୀ ନୁହେଁ । ଦୁଇ ତିନୋଟି ସମ୍ପର୍କୀତ ପ୍ରଶ୍ନକୁ ନେଇ ବିଷୟଟିକୁ ଆହୁରି ବ୍ୟାପକ କରାଯାଇପାରେ । ଏହା ଫଳରେ ପିଲା କୌଣସି ସମସ୍ୟାକୁ ସାମଗ୍ରିକ ଭାବରେ ଦେଖିବା ସହିତ ତା'ର ବିଭିନ୍ନ ଅଂଶକୁ ବି ଦେଖିପାରିବ ।

### କିଛି ପ୍ରଶ୍ନ

- ଗୋଟିଏ ପୋଷା ହାତୀ କେତେ ଖାଏ ?
- ଗୋଟିଏ ହାତୀ କେତେ ପାଣି ପିଏ ?
- ଚିଡ଼ିଆଖାନାର ହାତୀ କ'ଣ ଖାଇବାକୁ ଭଲପାଏ ?
- ହାତୀ ରଙ୍ଗ ବାରିପାରେ କି ?
- ଦିନକୁ ତା'ର କେତେ ମଳ ବାହାରେ ?
- ସେ କେତେ ଭଲରେ ଶୁଣିପାରେ ?
- ସେ ମନେ ରଖିପାରେ କି ?
- ସେ କେତେ ଶବ୍ଦ ଚିହ୍ନିପାରେ ?
- ଗୋଟିଏ ଶବ୍ଦ ଶିଖିବା ପାଇଁ ତାକୁ କେତେ ସମୟ ଲାଗେ ?
- ସେ କେତେ ସମୟ ଶୁଏ ?
- ଚାରିପାଖର ତାପମାତ୍ରା ସହିତ ତା'ର କାନ ହଲାଇବାର ବେଗର କି ପ୍ରକାର ସମ୍ପର୍କ ରହିଛି ?

### ଗବେଷଣା ପ୍ରଣାଳୀ ଆଡ଼କୁ

ଗବେଷଣା କରିବା ପାଇଁ ଗୋଟିଏ ପ୍ରଣାଳୀ ସ୍ଥିର କରିବା ଆଗରୁ ଗବେଷଣାର ବିଷୟ ଉପରେ ଅଧିକ ତଥ୍ୟ ସଂଗ୍ରହ କରିବା ପାଇଁ ପିଲାମାନଙ୍କୁ କୁହ । ଯଦି ସମ୍ଭବ, ଏଥିପାଇଁ ସେମାନେ ଗୋଟିଏ ପୁସ୍ତକାଳୟରୁ ବା ଇଣ୍ଟରନେଟରୁ ସେ ବିଷୟରେ ଥିବା ତଥ୍ୟଗୁଡ଼ିକୁ ଏକାଠି କରିବେ । ଫଳରେ ଏହି ବିଷୟରେ କେଉଁ ପ୍ରକାର ଗବେଷଣା ଆଗରୁ କରାଯାଇଛି ତାହା ମଧ୍ୟ ପିଲାମାନେ ଜାଣିପାରିବେ । ଗବେଷଣା ପ୍ରଣାଳୀ ବିଷୟରେ ମଧ୍ୟ ଏହା ଧାରଣା ଦେବ ।

### ଗବେଷଣା ପ୍ରଣାଳୀର ବିକାଶ

ଦଳଗୁଡ଼ିକ ଗବେଷଣାର ବିଷୟ ସ୍ଥିର କରିସାରିବା ପରେ ସେମାନେ କେଉଁ ପ୍ରଣାଳୀରେ କାମ କରିବେ ତାହା ସେମାନଙ୍କ ସହ ଆଲୋଚନା କର ।

ସେମାନଙ୍କ ଗବେଷଣା ପ୍ରଣାଳୀ ଯେପରି ଚିଡ଼ିଆଖାନା/ମନ୍ଦିର/ଜଙ୍ଗଲ ଶିବିରରେ ଥିବା ହାତୀର ବ୍ୟବହାର ଏବଂ ଗୁଣାବଳୀ ଜାଣିବା ପାଇଁ କାମ ଦେବ । ଗବେଷଣା ପ୍ରଣାଳୀ ସ୍ଥିର କଲାବେଳେ କି ପ୍ରକାରର ବାଧା ସବୁ ଆସିବ ସେ ଦିଗ ପ୍ରତି ମଧ୍ୟ ଦୃଷ୍ଟି ଦେବାକୁ ପିଲାଙ୍କୁ କୁହ । ତେଣୁ ସେମାନେ ଏପରି ଯୋଜନା କରିବା ଦରକାର ଯେଉଁଥିରେ ସେମାନେ ଏସବୁ ଅସୁବିଧାକୁ ଦୂରେଇ ପାରିବେ । ଫଳାଫଳକୁ ସଠିକ ଏବଂ ବିଶ୍ୱାସଯୋଗ୍ୟ କରିବା ପାଇଁ ଏକାଧିକ ଥର ନିରୀକ୍ଷଣ କରିବା ଜରୁରୀ । ତେଣୁ ପିଲାଙ୍କୁ କୁହ ଯେପରି ସେମାନେ ଅତି କମରେ ସାତ ଦିନ ଧରି ନିରୀକ୍ଷଣ କରିବାର ଯୋଜନା କରିବେ ।

ତାଙ୍କର ନିରୀକ୍ଷଣର ତଥ୍ୟ ସବୁ ଲେଖି ରଖିବା ପାଇଁ ଗୋଟିଏ ନିରୀକ୍ଷଣ ଫର୍ଦ୍ଦ ତିଆରି କରିବା ପାଇଁ ପିଲାଙ୍କୁ କୁହ ।

ସେମାନଙ୍କ ଗବେଷଣା ପ୍ରକଳ୍ପରେ ତଳ ଶୀର୍ଷକଗୁଡ଼ିକ ରହିବା ଜରୁରୀ ।

ବିଷୟ, ଗବେଷଣାର ଉଦ୍ଦେଶ୍ୟ ଓ ପ୍ରାସଙ୍ଗିକତା, ପୁସ୍ତକାଳୟରୁ ମିଳିଥିବା ତଥ୍ୟ, ଆବଶ୍ୟକ ସାମଗ୍ରୀ, ପ୍ରଣାଳୀ, କାମ ଯୋଜନା, ପ୍ରସ୍ତାବିତ ଫଳାଫଳ, ନିରୀକ୍ଷଣ ଫର୍ଦ୍ଦ ସହ କ୍ଷେତ୍ର ନିରୀକ୍ଷଣ, ହିସାବ, ବ୍ୟାଖ୍ୟା, ଆଲୋଚନା, ଅସୁବିଧା, ସିଦ୍ଧାନ୍ତ, ସାରାଂଶ, ମୁଖ୍ୟ କର୍ମୀ ଦଳ ।

### ହାତୀ କେତେ ଓଜନ ?

ବୈଜ୍ଞାନିକ ଦଲିଲ ଅନୁସାରେ ହାତୀକୁ ପ୍ରଥମ ଥର ପାଇଁ ଗତ ଶତାବ୍ଦୀରେ ହିଁ ଓଜନ କରାଯାଇଥିଲା । କିନ୍ତୁ ହାତୀ ଅତୀତରେ କିପରି ଓଜନ ହୋଇଥିଲା ତାହା ଭାରତୀୟ ଲୋକକଥାରେ ରହିଛି । ଗପଟି ଆକବରଙ୍କ ସମୟର । ଦିନେ ଆକବର ହାତୀଟିଏ ଦେଖି ଭାବିଲେ ଏହାର ଓଜନ କେତେ ହେବ । ସେ ତାଙ୍କର ସବୁଠାରୁ ବୁଦ୍ଧିଆ ମନ୍ତ୍ରୀ ବୀରବଲଙ୍କୁ ଡାକି ପର ଦିନ ସକାଳ ସୁଦ୍ଧା ହାତୀର ଓଜନ ବାହାର କରିବା ପାଇଁ କହିଲେ ।

ଆମେ ଜାଣିଛେ ଯେ ବୀରବଲ ଜଣେ ବୁଦ୍ଧିଆ ଲୋକ । ସେ ହାତୀକୁ ଗୋଟିଏ ଡଙ୍ଗାରେ ପୂରାଇ ଡଙ୍ଗାଟିକୁ ନଈକୁ ନେଇଗଲେ । ଡଙ୍ଗାଟି ଯେଉଁ ପାଏଁ ବୁଡ଼ିଥିଲା ସେଠାରେ ସେ ଗୋଟିଏ ଚିହ୍ନ ଦେଲେ । ସେ ହାତୀକୁ ଡଙ୍ଗାରୁ କାଢ଼ିଦେଲେ ଓ ସେଥିରେ ପଥର ପୂରାଇଲେ । ହାତୀ ବୁଡ଼ିଥିବା ବେଳେ ଡଙ୍ଗାଟି ଯେଉଁପାକେ ବୁଡ଼ିଥିଲା ସେଇପାକେ ବୁଡ଼ିବା ପାଏଁ ସେ ପଥର ପୂରାଇଲେ । ତା'ପରେ ସେ ପଥର ସବୁ କାଢ଼ି ଓଜନ କଲେ । ଏହି ଓଜନ ପ୍ରାୟ ହାତୀର ଓଜନ ସହ ସମାନ ହେଲା ।

ଗପରୁ ଜଣାପଡ଼ିଛି ଯେ ବୀରବଲ କେତେ ବୁଦ୍ଧିଆ ଏବଂ ସେ ସମସ୍ୟାର ସମାଧାନ ପାଇଁ କିପରି ଏକ ବୈଜ୍ଞାନିକ ପ୍ରଣାଳୀ ବ୍ୟବହାର କରିଥିଲେ ।



Digitized by srujanika@gmail.com

**ପରଖ**

# ହାତୀ ନିରୀକ୍ଷଣ

**ହାତୀ ବିଷୟରେ ଅଧିକ ଜାଣିବା ପାଇଁ ଏକ ସରଳ ଗବେଷଣା ପ୍ରକଳ୍ପ**

| | |
|---|---|
| *ଉଦ୍ଦେଶ୍ୟ* | ପୋଷା ଓ ଜଙ୍ଗଲୀ ହାତୀର ଅଭ୍ୟାସ, ଜୀବନ ଶୈଳୀ, ବ୍ୟବହାର ଆଦିକୁ ତୁଳନା କରିବା ପାଇଁ ପିଲାଙ୍କୁ ସାହାଯ୍ୟ କରିବା |
| *ସ୍ତର* | ଉଚ୍ଚତର |
| *ବିଷୟ* | ବିଜ୍ଞାନ |
| *ଦଳର ଆକାର* | ଉଣିକିଆ |
| *ସ୍ଥାନ* | ଶ୍ରେଣୀଗୃହ ବାହାରେ |
| *ସମୟ ଅବଧି* | ୩୦ ମିନିଟ |
| *ସାମଗ୍ରୀ* | ଲେଖିବା ଜିନିଷ |

## ଆରମ୍ଭ କରିବା ଆଗରୁ

ଏହି କାମର ଉଦ୍ଦେଶ୍ୟ ହେଉଛି ପୋଷା ହାତୀ, ତା'ର ବ୍ୟବହାର, ଆବାସ, ଖାଦ୍ୟ ଆଦି ବିଷୟରେ ଜାଣିବା ଏବଂ ଗୋଟିଏ ଜଙ୍ଗଲୀ ହାତୀ ସହ ତାହା ତୁଳନା କରିବା । ଏଥିପାଇଁ ସହଜରେ ହାତୀ ନିରୀକ୍ଷଣ କରି ଶିଖିପାରିବା ଭଳି ଜାଗାକୁ ପିଲାମାନଙ୍କୁ ନିଆଯାଇପାରେ । ଏହା କୌଣସି ଚିଡ଼ିଆଖାନା, ଜଙ୍ଗଲ ଶିବିର, ହାତୀ ପୋଷିଥିବା କୌଣସି ଲୋକଙ୍କ ଘର, ସର୍କସ ବା ମନ୍ଦିର ହୋଇପାରେ । ପିଲାମାନେ ମାହୁନ୍ତକୁ ବି ସାକ୍ଷାତ କରିବେ ଏବଂ ତା' ସହିତ ହାତୀର ସମ୍ପର୍କ ବିଷୟରେ ଜାଣିବେ ।

### କାର୍ଯ୍ୟକ୍ରମର ଯୋଜନା

ଚିଡ଼ିଆଖାନା ବା ମନ୍ଦିର କର୍ତ୍ତୃପକ୍ଷଙ୍କ ସହ କଥା ହେବା ଆଗରୁ ପ୍ରଥମେ ସ୍କୁଲର ପ୍ରଧାନ ଶିକ୍ଷକଙ୍କ ସହ କଥା ହେବା ଏବଂ ପ୍ରକଳ୍ପ ବିଷୟରେ ଏଭଳି ଜାଗାକୁ ଯିବା ଦରକାର ବୋଲି ଜଣାଇବା ଜରୁରୀ । ଏହି କାମଟି ସ୍କୁଲ ସମୟରେ ହେଉଥିବାରୁ ଏଥିପାଇଁ ସ୍କୁଲର କର୍ତ୍ତୃପକ୍ଷଙ୍କଠାରୁ ବି ଅନୁମତି ନେବା ଦରକାର ।

### କର୍ତ୍ତୃପକ୍ଷଙ୍କ ସହ ଯୋଗାଯୋଗ

ଚିଡ଼ିଆଖାନା/ମନ୍ଦିର/ଜଙ୍ଗଲ ଶିବିର ଯିବାର ଅତି କମରେ ୧୦ଦିନ ଆଗରୁ କର୍ତ୍ତୃପକ୍ଷଙ୍କ ସହ ଯୋଗାଯୋଗ କରିବା ଦରକାର । ଦରକାର ପଡ଼ିଲେ ନିଜେ ଯାଇ ବ୍ୟକ୍ତିଗତ ଭାବରେ ସେମାନଙ୍କୁ ଦେଖା କରିବା ଭଲ । ସେମାନଙ୍କୁ ପ୍ରକଳ୍ପର ପୃଷ୍ଠଭୂମି ଏବଂ ସେଠାକୁ ବୁଲି ଆସିବାର ଉଦ୍ଦେଶ୍ୟ ବିଷୟରେ ଏବଂ ସେମାନଙ୍କଠାରୁ କ'ଣ ଆଶା ରହିଛି ତାହା ମଧ୍ୟ ବୁଝାଇଦେବା ଜରୁରୀ ।

ଉଦାହରଣ ସ୍ୱରୂପ, ପିଲାମାନେ ଚିଡ଼ିଆଖାନା ବୁଲିଗଲା ବେଳେ ସେଠିକାର ଅଧିକାରୀ ପିଲାଙ୍କ ସହ କଥା ହେବେ । ହାତୀର ମାହୁନ୍ତ ବି ପିଲାଙ୍କ ସହ କଥା ହେବ ଏବଂ ସେମାନଙ୍କ ସର୍ବେକ୍ଷଣ ଫର୍ଦ୍ଦ ପୂରଣ କରିବାରେ ସାହାଯ୍ୟ କରିବ । ଯଦି ସମ୍ଭବ ହୁଏ ପିଲାଙ୍କ ପାଇଁ ହାତୀଟିକୁ ମାପି ଦେବ । ସେହିପରି ମନ୍ଦିରରେ ମାହୁନ୍ତ ପିଲାମାନଙ୍କୁ ହାତୀର ଗୁଣ, କାର୍ଯ୍ୟକଳାପ ଏବଂ ବ୍ୟବହାର ବିଷୟରେ ପିଲାଙ୍କୁ କହିବ । ଜଙ୍ଗଲ ଶିବିରରେ ମାହୁନ୍ତ ହାତୀର ଦିନଯାକର କାମ ଏବଂ କେଉଁ ସମୟରେ ସେ କ'ଣ କରେ ସେକଥା ପିଲାଙ୍କୁ କହିବ ।

### ବୁଲିବା କାର୍ଯ୍ୟକ୍ରମର ସୂଚୀ

ବୁଲିବାକୁ ଯିବା ଆଗରୁ ସେସବୁ ଜାଗାରେ ପିଲାମାନେ କ'ଣ କରିବେ ତା'ର ଏକ ସୂଚୀ ପ୍ରସ୍ତୁତ କର । ଲକ୍ଷ୍ୟ ରଖ ଯେପରି ସେମାନଙ୍କର ଏହି ବୁଲିବା ଆଗ୍ରହଜନକ ଓ ତଥ୍ୟମୂଳକ ହେବ ।

ପୋଷା ହାତୀ ବିଷୟରେ ଅଧିକ ଜାଣିବା ଏହି ବୁଲିବାର ମୂଳ ଲକ୍ଷ ହୋଇଥିଲେ ବି ସେହି ସମୟରେ ପିଲାମାନେ ଅନ୍ୟଆଡ଼େ ବୁଲି ମଜା କରିବା ପାଇଁ ଚାହିଁବେ । ଉଦାହରଣ ସ୍ୱରୂପ, ଚିଡ଼ିଆଖାନାରେ ସେମାନେ ଅନ୍ୟ ଜୀବଜନ୍ତୁ, ଚଢ଼େଇ ଆଦି ଦେଖିବାରେ ଆଗ୍ରହୀ ହେବେ ଏବଂ ସବୁ ସମୟରେ ଅଧିକାରୀ ବା ମାହୁନ୍ତ କଥା ଶୁଣିବା ପାଇଁ ଆଗ୍ରହୀ ହେବେ ନାହିଁ । ତେଣୁ ଏହି ବୁଲିବା କାମର ଯୋଜନା ଏପରି କରିଥିବ ଯେପରି ସେଥିରେ ବିଭିନ୍ନ ପ୍ରକାରର କାମ ରହିଥିବ । ଫଳରେ ଶିଖିବାର ଯେଉଁ ଲକ୍ଷ ରହିଛି ତାହା ପୂରଣ ହେବ ଏବଂ ପିଲାମାନେ ବି ମଜା କରିବେ । ଏସବୁ କାମ ଭିତରେ ଖେଳ, ବୁଦ୍ଧିପରୀକ୍ଷା, କାର୍ଯ୍ୟଫର୍ଦ୍ଦ ଏବଂ ସୃଜନାତ୍ମକ ଲେଖା ଆଦି ରହିପାରେ ।

ହାତୀର ଚାଲିଚଳଣ ଉପରେ ଗୋଟିଏ ପ୍ରଶ୍ନାବଳୀ ତିଆରି କରି ପିଲାମାନେ ସାଙ୍ଗରେ ନେବେ । ମନ୍ଦିର/ଚିଡ଼ିଆଖାନା/ଜଙ୍ଗଲ ଶିବିରରେ ମାହୁନ୍ତ ସହ କଥା ହୋଇ ପିଲାମାନେ ତାଙ୍କ ପ୍ରଶ୍ନାବଳୀ ଅନୁସାରେ ତଥ୍ୟ ସଂଗ୍ରହ କରିବେ ଏବଂ ଜଙ୍ଗଲୀ ହାତୀ ବିଷୟରେ ସେମାନେ ଜାଣିଥିବା ତଥ୍ୟ ସହ ଏସବୁ ତଥ୍ୟ ମିଳାଇ ଦେଖିପାରିବେ (ପୃଷ୍ଠା ୧୧୬ରେ ଥିବା ତୁଳନା ଫର୍ଦ୍ଦ ଦେଖ) ।

ହାତୀ ସହ ମାହୁନ୍ତର ସମ୍ପର୍କ ଉପରେ ବି ପିଲାମାନେ ଗୋଟିଏ ପ୍ରଶ୍ନାବଳୀ ତିଆରି କରିପାରନ୍ତି । ଏଥିରୁ ହାତୀ-ମାହୁନ୍ତ ସମ୍ପର୍କ ବିଷୟରେ ପିଲାମାନେ ଜାଣିପାରିବେ (ମାହୁନ୍ତ ପ୍ରଶ୍ନାବଳୀର ନମୁନା ପାଇଁ ୧୧୭ ପୃଷ୍ଠା ଦେଖ) ।

ଚିଡ଼ିଆଖାନାରେ ହାତୀର ବିଭିନ୍ନ ଅଙ୍ଗ ମାପିବା ପାଇଁ ମାହୁନ୍ତକୁ କହିପାରିବ । କାଗଜର ସ୍ଥୂଳଚର୍ମୀ ଜୀବ (ପୃଷ୍ଠା ୮ ଦେଖ) କାମଟି ନେଇ ପିଲାମାନେ ପୁଣିଥରେ ଚିଡ଼ିଆଖାନା ଆସିପାରନ୍ତି ।

ହାତୀ ଶୁଣ୍ଢର କାମକୁ ଭଲ କରି ଲକ୍ଷ କରିବା ପାଇଁ ପିଲାଙ୍କୁ କୁହ । ସେମାନେ ଯେତେବେଳେ ଶୁଣ୍ଢ ନକଲ କାମ (ପୃଷ୍ଠା ୧୦ ଦେଖ) କରିବେ ଏହା ତାଙ୍କୁ ସାହାଯ୍ୟ କରିବ ।



Digitized by srujanika@gmail.com

## ପ୍ରଶ୍ନ ତାଲିକା ପ୍ରସ୍ତୁତି

ତାଲିକାରେ କେଉଁ କେଉଁ ବିଷୟ ରହିବ ସେଥିପାଇଁ ପିଲାଙ୍କ ସହ ଏକ ଗମ୍ଭୀର ଆଲୋଚନା କରାଯାଇପାରେ । ତଳେ ଗୋଟିଏ ନମୁନା ତାଲିକା ଦିଆଯାଇଛି । ବୁଲିଲା ବେଳେ ପିଲାମାନେ ନିଜେ ନିରୀକ୍ଷଣ କରି ବା ସେଠିକାର ରଖୁଆଳୀ/ ଅଧିକାରୀଙ୍କୁ ପ୍ରଶ୍ନ ପଚାରି ପ୍ରଶ୍ନାବଳୀର ଉତ୍ତର ଲେଖିବେ ।

### କିଛି ସୂଚନା

(ତୁଳନା ଫର୍ଦ୍ଦ ପୃଷ୍ଠା ୧୧୬ ମଧ୍ୟ ଦେଖ)

### ଶାରୀରିକ ନିରୀକ୍ଷଣ

- ଶୁଣ୍ଢ
- କାନ
- ଲାଞ୍ଜ
- ଚମ
- କପାଳ

### ଖାଦ୍ୟ ଅଭ୍ୟାସ

- ଏହା କ'ଣ ଖାଏ ?
- କେତେବେଳେ ଖାଏ ?
- ସବୁଠାରୁ ପ୍ରିୟ ଖାଦ୍ୟ କ'ଣ ?
- ଦିନକୁ କେତେଥର ଏବଂ କେତେ ପରିମାଣର ଖାଏ ?

### ପାଣି

- ଦିନକୁ କେତେ ପାଣି ପିଏ ?
- ଦିନକୁ କେତେଥର ପାଣି ପିଏ ? ହାତୀ ଦିନକୁ କେତେଥର ଗାଧାଏ ?
- ଏହା କାଦୁଅ ବା ଧୂଳିରେ ଗାଧାଏ କି ?
- ଗାଧୋଇବା ଆଗରୁ ଏବଂ ପରେ ତା'ର ବ୍ୟବହାର ବଦଳି ଯାଏ କି ?

### ପାରିବାରିକ ଜୀବନ ଏବଂ କାର୍ଯ୍ୟକଳାପ

- ଏହାର ପରିବାର ବା ସାଙ୍ଗ ଅଛନ୍ତି କି ?
- ଏହା କେଉଁଠି ରହେ ?
- ତା'ର ଖୁଆଡ଼ ଭିତରେ ହାତୀ କେମିତି ବ୍ୟବହାର କରେ ?
- ଦିନସାରା ହାତୀ କ'ଣ କରେ ?
- ଦର୍ଶକମାନଙ୍କ ସହ ଯୋଗାଯୋଗ କରେ କି ?
- ତା' ଶୁଣ୍ଢ ସାହାଯ୍ୟରେ ସେ ତଳୁ କିପରି ଜିନିଷ ଉଠାଇପାରେ ?

### ମାହୁନ୍ତ ସହ ସମ୍ପର୍କ

- ହାତୀ ବିଷୟରେ ମାହୁନ୍ତର ମତାମତ କ'ଣ ?
- ସେମାନେ କେତେ ସମୟ ଏକାଠି ବିତାନ୍ତି ?
- ହାତୀ ଓ ମାହୁନ୍ତ ନିଜ ନିଜ ଭିତରେ କିପରି ଯୋଗାଯୋଗ କରନ୍ତି ?
- ହାତୀର ଦେହ ଖରାପ ହେଲେ ମାହୁନ୍ତ ଜାଣିପାରେ କି ?
- ମାହୁନ୍ତ ହାତୀକୁ କିପରି ତାଲିମ ଦିଏ ?
- କିପରି ଆଦେଶକୁ ହାତୀ ମାନିଥାଏ ?
- କେଉଁଟି ଆଦେଶ ହାତୀ ବୁଝିପାରେ ?
- ମାହୁନ୍ତକୁ ତା' କାମ ଭଲ ଲାଗୁଛି କି ?
- ଅନ୍ୟ କିଛି କାମ କରିବାରେ ସେ ଆଗ୍ରହୀ କି ?

### ଅନ୍ୟାନ୍ୟ

- ହାତୀର ଦେହ ଖରାପ ହେଲେ ଅଧିକାରୀ କ'ଣ କରନ୍ତି ?
- ଦର୍ଶକମାନେ ହାତୀକୁ ଖୁଆଇ ପାରିବେ କି ? କାହିଁକି ?
- ଦର୍ଶକମାନେ ହାତୀକୁ ବିରକ୍ତ କରନ୍ତି କି ?

(ପୃଷ୍ଠା ୧୧୭ରେ ମାହୁନ୍ତ ପାଇଁ ନମୁନା ପ୍ରଶ୍ନାବଳୀ ରହିଛି)

### ପରିଭ୍ରମଣ

**ବୁଲିଯିବା ଆଗରୁ:** ଚିଡ଼ିଆଖାନା ଯିବାର ଦିନକ ଆଗରୁ ପୃଷ୍ଠା ୧୧୬ରେ ଥିବା ତୁଳନା ଫର୍ଦ୍ଦ ବା ନିଜେ ପ୍ରସ୍ତୁତ କରିଥିବା ଫର୍ଦ୍ଦର ନକଲ କରି ରଖ ।

ପିଲାମାନେ କ'ଣ କରିବେ, କ'ଣ କରିବେ ନାହିଁ ଏବଂ ଏଗୁଡ଼ିକ କାହିଁକି ଗୁରୁତ୍ୱପୂର୍ଣ୍ଣ ସେସବୁ ପିଲାଙ୍କୁ କହିଦିଅ । ପିଲାମାନେ କି ପ୍ରକାର ସୁରକ୍ଷା ବ୍ୟବସ୍ଥା କରିବେ ତା' ମଧ୍ୟ କହିବା ବେଳେ ବୁଝାଇଦିଅ ।

ଜଙ୍ଗଲୀ ହାତୀଙ୍କ ବ୍ୟବହାର ଏବଂ ଆବାସସ୍ଥଳୀ ବିଷୟରେ ପିଲାଙ୍କ ସହ ସଂକ୍ଷିପ୍ତରେ ଆଲୋଚନା କରିପାର ।

**ବୁଲିବା ସମୟରେ:** ଚିଡ଼ିଆଖାନା/ମନ୍ଦିର/ଜଙ୍ଗଲ ଶିବିରରେ ବୁଲିବା ବେଳେ ପିଲାମାନେ ନିଜେ ନିରୀକ୍ଷଣ କରିବା ପାଇଁ ଏବଂ ସାକ୍ଷାତକାର କରିବା ପାଇଁ ସମୟ ଦେବେ । ବୁଲିସାରିବା ପରେ ଏସବୁ ଆଲୋଚନା କରାଯାଇପାରେ ।

**ବୁଲିବା ପରେ:** ଚିଡ଼ିଆଖାନା/ମନ୍ଦିର/ଜଙ୍ଗଲ ଶିବିର ବୁଲି ଆସିବା ପରେ ଶିଖିଥିବା ତଥ୍ୟକୁ ଏକାଠି କରିବା ପାଇଁ ଅତି କମରେ ଗୋଟିଏ ପିରିଅଡ୍ ଦରକାର । ଏହି ସମୟରେ ପିଲାଙ୍କୁ ତୁଳନା ଫର୍ଦ୍ଦ ପୂରଣ କରିବାକୁ କହିପାର ଏବଂ ବୁଲିବା ଓ ତୁଳନାଫର୍ଦ୍ଦ ଉପରେ ଆଲୋଚନା ବି କରିପାର ।

ବୁଲିବା ସମୟର ଏକ ବିବରଣୀ ଲେଖିବା ପାଇଁ ପିଲାଙ୍କୁ କହିପାର । ଏହି ସମ୍ବନ୍ଧୀୟ ଗୋଟିଏ କାମ ମାଧ୍ୟମରେ ବୁଝିବାକୁ ଆହୁରି ପକ୍କା କରିପାର ।



Digitized by srujanika@gmail.com

# ତଥ୍ୟ ଭଣ୍ଡାର

## ଚିଡ଼ିଆଖାନାରେ କ'ଣ କରିବା ଠିକ୍

- ବୁଲିଗଲା ବେଳେ ତୁମର ପ୍ରଶ୍ନ ଏବଂ ଲେଖିବା ଜିନିଷ ନେଇଯିବ ।
- ହାତୀ ବିଷୟରେ ସବୁ ଗୁରୁତ୍ୱପୂର୍ଣ୍ଣ ଏବଂ ଆଗ୍ରହଜନକ କଥା ଟିପି ରଖ ।
- ମନକୁ ଆସୁଥିବା ସବୁ ପ୍ରଶ୍ନ ପଚାର - ଗୋଟିଏ ଭଲ ଗବେଷକ ହେବା ପାଇଁ ଏହା ହେଉଛି ପ୍ରଥମ ପଦକ୍ଷେପ ।
- ରଖାଳୀ/ମାହୁନ୍ତର ନିର୍ଦ୍ଦେଶ ମାନ ।

## ଚିଡ଼ିଆଖାନାରେ କ'ଣ କରିବ ନାହିଁ

- ଖୁଆଡ଼ ଭିତରେ ବା ମାଟି ଉପରେ କିଛି ବି ଜିନିଷ ଫିଙ୍ଗନାହିଁ ।
- ଚିଡ଼ିଆଖାନା ଭିତରକୁ ପ୍ଲାଷ୍ଟିକ ମୁଣି ନିଅ ନାହିଁ, ନେଲେ ବି ତାହା ସେଠାରେ ଛାଡ଼ନାହିଁ ।
- ହାତୀ ବା ଅନ୍ୟ ଜୀବଙ୍କୁ କିଛି ଖାଇବାକୁ ଦିଅନାହିଁ ।
- ହାତୀ ବା ଅନ୍ୟ ଜୀବଙ୍କୁ ବିରକ୍ତ କରନାହିଁ ।
- କୌଣସି ରିସ୍କ ନିଅ ନାହିଁ ।

## ହାତୀର ତାଲିମ

ହାତୀର ତାଲିମ ତା'ର ବୟସ, ସେ ଜଙ୍ଗଲରେ ବା ଚିଡ଼ିଆଖାନାରେ ଜନ୍ମ, ତାଲିମର ଉଦ୍ଦେଶ୍ୟ ଭଳି କେତେ କଥା ଉପରେ ନିର୍ଭର କରେ ।

ଚିଡ଼ିଆଖାନାରେ ଜନ୍ମ ହୋଇଥିବା ହାତୀକୁ ତାଲିମ ଦେବା ସବୁଠାରୁ ସହଜ । ଜଙ୍ଗଲରୁ ଧରିବା ପାଇଁ ହେଲେ ୧୫ ବର୍ଷରୁ କମ ବୟସର ହାତୀ ଭଲ ।

ସାଧାରଣତଃ ୩ରୁ ୬ମାସ ଭିତରେ ହାତୀ ପ୍ରାୟ ୨୦ଟି ନିର୍ଦ୍ଦେଶ ମାନିବାକୁ ଆରମ୍ଭ କରେ । କିନ୍ତୁ ବିଭିନ୍ନ ତାଲିମଦାତାଙ୍କ ପାଇଁ ଏହି ସମୟ ଅଲଗା ହୁଏ । ନିର୍ଦ୍ଦେଶ ଏବଂ ଶବ୍ଦ ସବୁ ବି ବିଭିନ୍ନ ଦେଶରେ ଅଲଗା ହୁଏ । ହାତୀ ବୁଝିବା ଭଳି କିଛି ଶବ୍ଦ ହେଉଛି - ଯାଅ, ବସ, ଆଗ ଗୋଡ଼ ଉଠାଅ, ପଛ ଗୋଡ଼ ଉଠାଅ, ବୁଲିଯାଅ, ଶୋଇପଡ଼, ମୁଣ୍ଡ ତଳକୁ କର, ମାହୁନ୍ତ ଠିଆ ହେବା ପାଇଁ ଆଗ ଗୋଡ଼ ଦିଅ, ଜୋରରେ ବୋବାଅ, ଠେଲ, ଟାଣ ଆଦି । କିନ୍ତୁ ଶବ୍ଦ ଯାହା ବି ହେଉ, ହାତୀର ତାଲିମରେ ମାହୁନ୍ତର ଦେହ ଓ ପାଦର ଚାଳନା ହିଁ କାମ ଦିଏ । ମାହୁନ୍ତ କାଠର ଗୋଟିଏ ଅଙ୍କୁଶ ବା ହାକୁଶ ବ୍ୟବହାର କରି ପ୍ରତି ଶବ୍ଦକୁ ପକ୍କା କରେ ।



## ତୁଳନା ଫର୍ଦ୍ଦ

| କାର୍ଯ୍ୟକଳାପ/ବ୍ୟବହାର | ଜଙ୍ଗଲୀ ହାତୀ | ଚିଡ଼ିଆଖାନା/ମନ୍ଦିର/ସର୍କସ/ଜଙ୍ଗଲ ଶିବିରର ହାତୀ |
|---|---|---|
| ହାତୀ ଖାଉଥିବା ଖାଦ୍ୟର ପ୍ରକାର | ଘାସ, ଚଉଡ଼ା ପତ୍ରବାଲା ଗଛ, ଛୋଟ ଗଛ, ଡାଳ, ଗଛର ବକଳ, ଫଳ, ଫୁଲ | |
| ହାତୀ ଖାଉଥିବା ଖାଦ୍ୟର ପରିମାଣ | ଦିନକୁ ପ୍ରାୟ ୧୦୦ କି.ଗ୍ରା. | |
| ହାତୀ ପିଉଥିବା ପାଣିର ପରିମାଣ | ଦିନକୁ ପ୍ରାୟ ୧୫୦ ଲିଟର | |
| ଖାଇବାରେ ସମୟ ଦିଏ | ୧୨ରୁ ୧୮ ଘଣ୍ଟା | |
| ହାତୀ ବୁଲୁଥିବା ଅଞ୍ଚଳ | ୧୫୦ ବର୍ଗ କି.ମି. | |
| ଦିନର ସାଧାରଣ କାର୍ଯ୍ୟକଳାପ | ଖାଇବା, ଗାଧୋଇବା, ବିଶ୍ରାମ ନେବା, ସାଙ୍ଗ ସହ ମିଶିବା | |
| ପାରିବାରିକ ଜୀବନ | ଅଧିକାଂଶ ସମୟ ପରିବାର ସହ କଟାନ୍ତି | |
| ଅନ୍ୟ କାର୍ଯ୍ୟକଳାପ | | |



Digitized by srujanika@gmail.com

# ମାହୁନ୍ତ ପ୍ରଶ୍ନାବଳୀର ନମୁନା

୧· ମାହୁନ୍ତଙ୍କ ନାଁ

୨· ହାତୀର ନାଁ

୩· ହାତୀର ବୟସ

୪· ମାଈ/ଅଣ୍ଡିରା

୫· ମାହୁନ୍ତ କେତୋଟି ହାତୀଙ୍କ ଯତ୍ନ ନିଅନ୍ତି?

୬· ହାତୀ ସହ ସେ କେତେଦିନ ଧରି ଯୋଡ଼ା?

୭· ସେ ହାତୀକୁ ଧରିଥିଲେ କି?

ଯଦି ହଁ, କେଉଁଠାରୁ ଓ କିପରି?

ଯଦି ନାଁ, ତେବେ କେଉଁଠାରୁ ପାଇଥିଲେ?

୮· ହାତୀକୁ ସେ ତାଲିମ ଦେଇଛନ୍ତି କି?

ଯଦି ହଁ, ସେତେବେଳେ ହାତୀଟି କେତେ ବଡ଼ ହୋଇଥିଲା?

ଯଦି ନାଁ, କିଏ ତାଲିମ ଦେଇଛନ୍ତି?

୯· ଏହା ତାଙ୍କର ପାରିବାରିକ ଜୀବିକା କି?

ଯଦି ହଁ, କେବେ କେତେ ପିଢ଼ି ହାତୀ ସହ କାମ କରିଛନ୍ତି?

ଯଦି ନାଁ, ତେବେ ସେ ଏଭଳି ଜୀବିକା କାହିଁକି ବାଛିଲେ?

୧୦· ହାତୀ ସମ୍ଭାଳିବା ପାଇଁ ସେ କିଛି ସ୍ୱତନ୍ତ୍ର ତାଲିମ ପାଇଛନ୍ତି କି?

୧୧· ହାତୀର ଦେହ ଖରାପ ହେଲେ ସେ ଜାଣିପାରନ୍ତି କି?

ଯଦି ହଁ, କିପରି?

୧୨· ହାତୀ ସହ କିପରି ଯୋଗାଯୋଗ କରନ୍ତି?

୧୩· କେତୋଟି ନିର୍ଦ୍ଦେଶ ହାତୀ ବୁଝିପାରେ?

୧୪· ହାତୀ ତାଙ୍କ ପ୍ରତି ସ୍ନେହ କିପରି ଦେଖାଇଥାଏ?

୧୫· ମାହୁନ୍ତ ଖୁସି ହେଲେ ହାତୀ କ'ଣ କରେ?

୧୬· ହାତୀ ରାଗିଲେ କ'ଣ କରେ?

୧୭· ହାତୀର ମନଦୁଃଖ ହେଲେ ସେ କ'ଣ କରେ?

୧୮· ସେ ତାଙ୍କ କାମରେ ଖୁସି ଅଛନ୍ତି କି? କିମ୍ବା ଆଉ କିଛି କାମ ପାଇଁ ସେ ଆଗ୍ରହୀ?

୧୯· ଏହି କାମରେ ଭଲ ଲାଗୁଥିବା ତିନୋଟି କଥା କ'ଣ?

୨୦· ଏହି କାମରେ ଭଲ ଲାଗୁନଥିବା ତିନୋଟି କଥା କ'ଣ?

୨୧· ଏହି କାମରେ ସବୁଠାରୁ ଉଦ୍ଦୀପନାମୂଳକ ଘଟଣା କ'ଣ ଘଟିଥିଲା?

୨୨· ହାତୀ ମସ୍ତ ସମୟରେ କି ପ୍ରକାରର ପ୍ରତିକାର ବ୍ୟବସ୍ଥା କରାଯାଏ?

## ହାତୀ-ମାହୁନ୍ତ ସମ୍ପର୍କ

ପାର୍ବତୀ କହିଲେ, ପାହାନ୍ତା ସମୟ ହାତୀ ପାଇଁ ସବୁଠାରୁ ଖରାପ । ସେମାନେ ଏବେ ଯାଏ ଖାଇନାହାନ୍ତି ଏବଂ ସେମାନଙ୍କର ଜଣାଶୁଣା ଚେହେରାର ମାହୁନ୍ତ ତାଙ୍କ କଥା ବୁଝିବା ପାଇଁ ଆସିନାହିଁ । ସବୁ ପୋଷା ହାତୀ ତାଙ୍କ ପରିବାରକୁ ଛାଡ଼ି ମାହୁନ୍ତକୁ ଆଦରି ନିଅନ୍ତି । ଯେପର୍ଯ୍ୟନ୍ତ ସେମାନେ ତାଙ୍କର ସେ ଜଣାଶୁଣା ଏବଂ ବିଶ୍ୱସ୍ତ ଲୋକଟିକୁ ନ ଦେଖନ୍ତି, ହଜିଯାଇଥିବା ଛୋଟ ପିଲା ପରି ସେମାନେ ଛାନିଆ ହୋଇଯା'ନ୍ତି । ହାତୀ ତା' ଜୀବନରେ ଦୁଇଟି ଗୁରୁତ୍ୱପୂର୍ଣ୍ଣ କଥା – ଖାଦ୍ୟ ଏବଂ ସୁରକ୍ଷା ପାଇଁ ଏଇ ଛୋଟିଆ ମଣିଷଟି ଉପରେ ନିର୍ଭର କରେ ।



ପାର୍ବତୀ ବରୁଆ ଆସାମର ଲୋକ ଏବଂ ସେ ତାଙ୍କ ଜୀବନସାରା ହାତୀ ସହ କାମ କରିଛନ୍ତି । ତାଙ୍କର ହାତୀ ବିଷୟରେ ଅସାଧାରଣ ଜ୍ଞାନ ଏବଂ ଦକ୍ଷତା ରହିଛି । ସେ ତାଙ୍କ ବାପାଙ୍କର ହାତୀ ଶିବିରରେ ଜନ୍ମ ହୋଇଥିଲେ ଏବଂ ହାତୀଙ୍କୁ ବୁଝିବାରେ ଅସାଧାରଣ କ୍ଷମତା ତାଙ୍କର ରହିଛି । ହାତୀ ଧରୁଥିବା ଅଳ୍ପ କେତେଜଣ ମହିଳାଙ୍କ ଭିତରୁ ସେ ଜଣେ । ଉପରର ଅନୁଚ୍ଛେଦଟି ମାର୍କ ସାଣ୍ଡଙ୍କ ଲିଖିତ *କ୍ୱିନ୍ ଅଫ୍ ଦି ଏଲିଫ୍ୟାଣ୍ଟସ୍* ବହିର କିଛି ଅଂଶ । ହାତୀ ଓ ମାହୁନ୍ତ ଭିତରେ ଥିବା ଅତୁଟ ବନ୍ଧନର ଏହା ଏକ ଉଦାହରଣ ।

ପୋଷା ହାତୀ ପାଇଁ ତା'ର ତାଲିମଦାତା/ରଖୁଆଳୀ/ମାହୁନ୍ତର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ । ମା' ଯେମିତି ତା' ଛୁଆର କ'ଣ ଦରକାର ଜାଣିପାରେ, ସେହିପରି ମାହୁନ୍ତ ତାଙ୍କ ହାତୀର କ'ଣ ଦରକାର ସବୁ ଜାଣିପାରନ୍ତି । ବରଂ ମନେହୁଏ ଯେପରି ମାହୁନ୍ତ ହାତୀ ପ୍ରତି ଏକ ସହଜାତ ଆକର୍ଷଣ ନେଇ ଜନ୍ମ ହୋଇଥାନ୍ତି ।

ଦେଶର ଅନେକ ଅଞ୍ଚଳରେ ଏହି ପବିତ୍ର ସମ୍ପର୍କ ଗୋଟିଏ ପାରିବାରିକ ପରମ୍ପରା ହୋଇ ରହିଛି ଏବଂ ପିଢ଼ି ପରେ ପିଢ଼ି ଏହା ଗଢ଼ିଆସୁଛି । ମାହୁନ୍ତ ଘରର ଅତି ଛୋଟ ଛୁଆ ପିଲାଦିନୁ ହାତୀର ଯତ୍ନ ନେବା ଶିଖନ୍ତି, ତାକୁ ଗାଧୋଇ ଦିଅନ୍ତି ଏବଂ ତା'ପାଇଁ ଖାଦ୍ୟ ତିଆରି କରନ୍ତି । ଏସବୁ ଶିକ୍ଷିବା ଧାରାର ଗୋଟିଏ ଅତି ଗୁରୁତ୍ୱପୂର୍ଣ୍ଣ ଅଂଶ ହୋଇଯାଏ । ଏହା ହାତୀ ମାହୁନ୍ତ ମଧ୍ୟରେ ଥିବା ବନ୍ଧନକୁ ଦୃଢ଼ କରିବାରେ ସାହାଯ୍ୟ କରେ ।



Digitized by srujanika@gmail.com

# ହାତୀ ମେଳା

ହାତୀ ସଂରକ୍ଷଣ ବିଷୟରେ ପ୍ରଚାର ପାଇଁ ଗୋଟିଏ ମେଳା ଆୟୋଜନ କରିବା

| | |
|---|---|
| ଉଦ୍ଦେଶ୍ୟ | ଏସୀୟ ହାତୀର ସ୍ଥିତି ଏବଂ ସଂରକ୍ଷଣ ବିଷୟରେ ସଚେତନତା ବଢ଼ାଇବା ପାଇଁ ସ୍କୁଲ/ଗୋଷ୍ଠୀରେ ଗୋଟିଏ ହାତୀମେଳାର ଆୟୋଜନ କରିବାରେ ପିଲାଙ୍କୁ ସାହାଯ୍ୟ କରିବା |
| ସ୍ତର | ମାଧ୍ୟମିକ |
| ବିଷୟ | ବିଜ୍ଞାନ, କଳା ଓ ହସ୍ତକର୍ମ |
| ଦଳର ଆକାର | ପୂରା ଶ୍ରେଣୀ |
| ସ୍ଥାନ | ଶ୍ରେଣୀଗୃହ ବାହାରେ |
| ସମୟ ଅବଧି | ପ୍ରସ୍ତୁତି ପାଇଁ କିଛି ଦିନ, ମେଳା ପାଇଁ ଗୋଟିଏ ଦିନ |
| ସାମଗ୍ରୀ | ଡ୍ରଇଙ୍ଗ୍ ସିଟ୍, କଲମ, ହାତୀ ଚିତ୍ର, ମେଳା ପାଇଁ ଅନ୍ୟ ଦରକାରୀ ଜିନିଷ |

ଆମ ଦେଶରେ ଅନେକ ଶତାବ୍ଦୀ ଧରି ମେଳା, ଯାତ୍ରା ଆଦିର ଆୟୋଜନ କରାଯାଉଛି । ସାଧାରଣତଃ ଏହି ମେଳା ଓ ଯାତ୍ରା ଆଦି ଖୁସି, ମଉଜ ପାଇଁ ହୋଇଥାଏ । ଏଥିରୁ ଅନେକ ବିଭିନ୍ନ ପର୍ବ ସହ ଯୋଡ଼ା ଏବଂ ଆଉ କେତେକ ବ୍ୟବସାୟ ସହ ସମ୍ପର୍କିତ । ଯେପରି ବିହାରର ସୋନପୁରର ଗୋରୁ ମେଳା । ଏବେକାର ମେଳା ସବୁ ଅଲଗା ପ୍ରକାରର ହେଉଛି ଏବଂ ପ୍ରାୟତଃ ବ୍ୟାବସାୟିକ ଚିନ୍ତାଧାରା ଦ୍ୱାରା ନିୟନ୍ତ୍ରିତ ।

ଅନେକ ଶିକ୍ଷା ମେଳା ବି କରାଯାଉଛି । ଏଥିରେ ଶିଖିବା ଏବଂ ମଜା ଉଭୟ ରହୁଛି । ଶିଖିବା ସାଙ୍ଗରେ ମଜା ମିଶି ରହିଥିଲେ କୌଣସି ତଥ୍ୟ ଓ ସୂଚନା ବେଶ୍ ଫଳପ୍ରଦ ଭାବରେ ବାଣ୍ଟିହୁଏ । ପିଲାମାନେ ହାତୀ ସଂରକ୍ଷଣ ପାଇଁ ସ୍କୁଲରେ ଏହିପରି ଗୋଟିଏ ମେଳାର ଆୟୋଜନ କରିପାରିବେ । ଏଥିରେ ହାତୀ ସମ୍ବନ୍ଧୀତ ଖେଳ, ଛୋଟ ନାଟକ, ବୁଦ୍ଧି ପରୀକ୍ଷା, ପ୍ରତିଯୋଗିତା ଏବଂ ପ୍ରାଚୀରପତ୍ର ଆଦି ରହିପାରିବ । ଏଗୁଡ଼ିକ ମାଧ୍ୟମରେ ବିଭିନ୍ନ ତଥ୍ୟ ସ୍କୁଲର ଅନ୍ୟ ପିଲାମାନଙ୍କୁ ଏବଂ ଜନସାଧାରଣଙ୍କୁ ଜଣାଇବା ସହଜ ହେବ ।

## ଆରମ୍ଭ କରିବା ଆଗରୁ

ମେଳା ଆୟୋଜନ କରିବା ଆଗରୁ ସ୍କୁଲର ପ୍ରଧାନ ଶିକ୍ଷକଙ୍କ ସହ କଥା ହୋଇ ତାଙ୍କର ଅନୁମତି ନେବା ଦରକାର । ମେଳାଟି ସ୍କୁଲ ହତା ଭିତରେ କରିବା ପାଇଁ ଚେଷ୍ଟା କର । କିନ୍ତୁ ଯଦି ଏହା ସମ୍ଭବ ନୁହେଁ ତେବେ ଏଥିପାଇଁ ଗୋଟିଏ ଜାଗା ଖୋଜିବାକୁ ହେବ ।

ମେଳାର ଉଦ୍ଦେଶ୍ୟ ପିଲାମାନେ ଭଲ ଭାବରେ ବୁଝିବା ଦରକାର । ଏହିପରି ମେଳାର ଆୟୋଜନ କରିବା ଫଳରେ ପିଲାମାନେ ଅନ୍ୟ ପିଲାମାନଙ୍କ ସହ ହାତୀ ବିଷୟରେ ବିଭିନ୍ନ ତଥ୍ୟର ଆଦାନପ୍ରଦାନ କରିପାରିବେ । ତାହା ସହିତ ହାତୀର ସ୍ଥିତି ଏବଂ ସଂରକ୍ଷଣର ଆବଶ୍ୟକତା ବିଷୟରେ ଜନସାଧାରଣଙ୍କୁ ମଧ୍ୟ ସେମାନେ ବୁଝାଇପାରିବେ ।

### ମେଳାର ଆୟୋଜନ

ଯେକୌଣସି ମେଳାର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଅଂଶ ହେଉଛି ମଜା । ତେଣୁ ପିଲାମାନେ ମେଳାର ଆୟୋଜନ କରିବା ବେଳେ ଏହି କଥାଟି ମନରେ ରଖିବେ । ମେଳାରେ ଏସୀୟ ହାତୀ ସମ୍ବନ୍ଧୀୟ ବିଭିନ୍ନ କାର୍ଯ୍ୟକଳାପ ଏବଂ ପ୍ରଦର୍ଶନୀ ରହିବା ଦରକାର । ଏଥିରେ ବିଭିନ୍ନ ଖେଳ, ଛୋଟ ନାଟିକା, କଣ୍ଢେଇ ନାଚ, ପହଳି, ବହୁତ ଲୋକଙ୍କୁ ସାମିଲ କରିପାରୁଥିବା ଅନ୍ୟ କିଛି କାମ ଆଦି ରହିବ । ଆହୁରି ମଧ୍ୟ ପ୍ରାଚୀରପତ୍ର ପ୍ରଦର୍ଶନୀ, ପ୍ରତିଯୋଗିତା, ଡ୍ରାମା ଆଦି ମଧ୍ୟ ରହିବ । ପର ପୃଷ୍ଠାରେ ଏହିଭଳି କିଛି କାମର ବର୍ଣ୍ଣନା କରାଯାଇଛି ।

ଯୋଜନା କରାଯାଇଥିବା କାମ ଅନୁସାରେ ଶ୍ରେଣୀର ପିଲାମାନଙ୍କୁ ଭାଗ କର । କାମ ଅନୁସାରେ ଦଳର ପିଲା ସଂଖ୍ୟା ସ୍ଥିର ହେବ । ଉଦାହରଣ ସ୍ୱରୂପ, ଖେଳ ପାଖରେ ପ୍ରତି ଖେଳ ପାଇଁ ଜଣେ ଦୁଇଜଣ ପିଲା ରହିବେ । ଯଦି ପିଲାମାନେ ୪ଟି ଖେଳ ଯୋଜନା କରିବେ, ତେବେ ଖେଳ କୋଣରେ ମୋଟ ଆଠଜଣ ପିଲା ରହିବେ ।

ପ୍ରତି ଦଳକୁ କହିଦିଅ ଯେ ସେମାନେ କାମ ଯୋଜନା କରିବାଠାରୁ ପ୍ରାଚୀରପତ୍ର ଲଗାଇବା, କାମ କରାଇବା, ସେମାନଙ୍କ କୋଣକୁ ସଜାଇବା ଏବଂ ପରିଚାଳନା କରିବା ଯାଏଁ ସବୁ କାମ କରିବେ ।

ପ୍ରତି ଦଳ ତାଙ୍କ କୋଣ ପାଇଁ ଦରକାରୀ ଜିନିଷଗୁଡ଼ିକର ଗୋଟିଏ ତାଲିକା କରିବେ । ପ୍ରତି ଦଳ ସେମାନଙ୍କ ଜିନିଷ ଯୋଗାଡ଼ କରିପାରନ୍ତି ବା ଦୁଇ ତିନିଜଣ ପିଲାଙ୍କୁ ଦାୟିତ୍ୱ ଦିଆଯାଇପାରେ । ସେମାନେ ଦରକାରୀ ଜିନିଷ କିଣି ବିଭିନ୍ନ ଦଳକୁ ଯୋଗାଇଦେବେ ।





Digitized by srujanika@gmail.com

# ମେଳା ପାଇଁ ଖେଳ

### ହାତଗୋଡ଼ ଯୋଡ଼ିଦିଅ

ଏହି ଖେଳ ପାଇଁ ହାତୀର ଗୋଟିଏ ବଡ଼ ରେଖାଚିତ୍ର ତିଆରି କର । କିନ୍ତୁ ଏଥିରେ ଆଖି, କାନ, ଶୁଣ୍ଢ, ଦାନ୍ତ ଓ ଲାଞ୍ଜ ରହିବ ନାହିଁ । ଆଉ ଗୋଟିଏ ଡ୍ରଇଙ୍ଗ୍ ସିଟ୍‌ରେ ଏସବୁ ଅଙ୍ଗଗୁଡ଼ିକ ତିଆରି କର ।

ଯେଉଁ ପିଲା ଖେଳିବ ତା' ଆଖିରେ ପଟି ବାନ୍ଧିଦିଅ ଏବଂ କୁହ ଯେ ସେ ହାତୀର ଅଙ୍ଗ ସବୁକୁ ନେଇ ଦେହର ଠିକ ଜାଗାରେ ଲଗାଇବ । ଅଙ୍ଗଗୁଡ଼ିକୁ ଠିକ ଜାଗାରେ ଲଗାଇ ସାରିବା ପରେ ପିଲାକୁ ସେସବୁ ଅଙ୍ଗ ବିଷୟରେ କହିଦିଅ ।

### ଖଣ୍ଡଖଣ୍ଡିଆ ହାତୀ

ଏଥିପାଇଁ ହାତୀର ଗୋଟିଏ ବଡ଼ ଚିତ୍ର ବା ଫଟୋ ଦରକାର । ଏହାକୁ ଖଣ୍ଡେ ଥର୍ମୋକଲ୍ ପଟି ଉପରେ ଅଠା ଦେଇ ଲଗାଇଦିଅ ଏବଂ ବିଭିନ୍ନ ଆକାରର ଛୋଟ ଖଣ୍ଡରେ କାଟିଦିଅ ।

ଖେଳ ଆଗରୁ ଖଣ୍ଡଗୁଡ଼ିକୁ ମିଶାଇଦିଅ । ଯେଉଁ ପିଲା ଖେଳିବ ତାକୁ କୁହ ଯେ ସେ ଖଣ୍ଡଗୁଡ଼ିକ ମିଶାଇ ହାତୀ ଚିତ୍ରଟିକୁ ପୂରା କରିବ ।

### ତମେ କେତେ ଡେଙ୍ଗା?

ହାତୀର ଗୋଟିଏ ବଡ଼ ଚିତ୍ର କରି ତାକୁ କାନ୍ଥରେ ଲଗାଇଦିଅ । ଦେଖ ଯେପରି ଚିତ୍ରରେ ଏସୀୟ ହାତୀର ଗୋଡ଼, ଲାଞ୍ଜ, କାନ, ଉଚ୍ଚତା, ହାତୀଦାନ୍ତ ଏବଂ ଶୁଣ୍ଢ ପରିଷ୍କାର ଭାବରେ ଜଣାଯାଉଥିବ । ହାତୀ ଚିତ୍ରଟିର ଉଚ୍ଚତା ପ୍ରାୟ ୩·୨ ମିଟର (ଏସୀୟ ଅଣ୍ଡିରା ହାତୀର ହାରାହାରି ଉଚ୍ଚତା) ହେବା ଦରକାର । ଗୋଟିଏ ମାଈ ଏସୀୟ ହାତୀର ହାରାହାରି ଉଚ୍ଚତା ୨·୫ ମିଟର ଏବଂ ଜନ୍ମ ବେଳେ ହାତୀ ଛୁଆର ହାରାହାରୀ ଉଚ୍ଚତା ୧ ମିଟର ବି ଦେଖାଇପାରିବ । ଚିତ୍ର ପାଖରେ ୩·୨ ମିଟର ଯାଏ ଚିହ୍ନ ଦେଇ ଗୋଟିଏ ସ୍କେଲ କରିପାର ।

ଏସୀୟ ହାତୀ ତୁଳନାରେ ପିଲାମାନେ ତାଙ୍କର ଉଚ୍ଚତା ମାପିପାରିବେ । ଯଦି ଏତେ ବଡ଼ ହାତୀ ଚିତ୍ର କରିହେବ ନାହିଁ, ତେବେ ଗୋଟିଏ ଛୋଟ ଚିତ୍ର କରି ତଳୁ ପ୍ରାୟ ୩·୨ ମିଟର ଉଚ୍ଚତାରେ ଲଗାଇପାରିବ ।

### ପାଣି ପାଖରେ ପହଞ୍ଚିବା

ଏଥିପାଇଁ ସାପ ସିଡ଼ି ଖେଳକୁ ବଦଳାଇ ହାତୀର ସଙ୍କଟ ଖେଳ କରାଯାଇପାରିବ । ଏଥିରେ ପିଲାମାନେ ହେବେ ହାତୀ ଏବଂ ସେମାନଙ୍କୁ ପାଣି ପାଖରେ ପହଞ୍ଚିବାକୁ ହେବ । ମାଟି ଉପରେ ଖେଳର ଘରଗୁଡ଼ିକ ଆଙ୍କିଦିଅ । ଗୋଟିଏ ଥରରେ ଅତିବେଶୀରେ ପାଞ୍ଚଜଣ ପିଲା ଖେଳିବେ (ଅଧିକ ତଥ୍ୟ ପାଇଁ ୩୭ ପୃଷ୍ଠା ଦେଖ) ।

# ପ୍ରଦର୍ଶନୀ

ଦର୍ଶକଙ୍କୁ ହାତୀ ବିଷୟରେ ଅଧିକ କଥା ଜଣାଇବା ପାଇଁ ବଡ଼ ବଡ଼ ପ୍ରାଚୀରପତ୍ର ତିଆରି କରାଯାଇପାରେ । ପ୍ରାଚୀରପତ୍ରଗୁଡ଼ିକରେ ବେଶି ଚିତ୍ର, ଫଟୋ ଆଦି ଏବଂ ଖୁବ୍ କମ୍ ଲେଖା ରହିବା ଉଚିତ । କାରଣ ଲୋକମାନେ ମେଳା ଭିତରେ ଗୁଡ଼ାଏ ଲେଖା ପଢ଼ିବାକୁ ଆଗ୍ରହୀ ହେବେନାହିଁ । ଲେଖାଗୁଡ଼ିକ ସ୍ଥାନୀୟ ଭାଷାରେ ରହିବା ଦରକାର । ଏହି ବହିଟିର ବିଭିନ୍ନ ବିଭାଗରେ ପ୍ରାଚୀରପତ୍ର ପାଇଁ ଦରକାରୀ ମୌଳିକ ତଥ୍ୟ ସବୁ ମିଳିପାରିବ ।

ପ୍ରାଚୀରପତ୍ରରେ କେତେକ ତଥ୍ୟ ରେଖାଚିତ୍ର ମାଧ୍ୟମରେ ବି ପ୍ରକାଶ କରାଯାଇପାରେ । ଏସୀୟ ହାତୀଙ୍କ ସଂଖ୍ୟା କମିବା, ଶିକାର ସଂଖ୍ୟା ବଢ଼ିବା ଭଳି ତଥ୍ୟ ଗ୍ରାଫ୍ ମାଧ୍ୟମରେ ଦିଆଯାଇପାରେ ।

ପ୍ରାଚୀରପତ୍ରରେ ରହିବା ଭଳି କିଛି ବିଷୟ ହେଉଛି,

- ଏସୀୟ ଏବଂ ଆଫ୍ରିକୀୟ ହାତୀ ଭିତରେ ଥିବା ତଫାତ
- ଆମ ଐତିହ୍ୟ ଏବଂ ପରମ୍ପରାର ଏକ ଅଂଶ ଭାବରେ ହାତୀ
- କିଛି ବର୍ଷ ଭିତରେ ହାତୀଙ୍କ ସଂଖ୍ୟା କମିବା
- ହାତୀର ପ୍ରାକୃତିକ ଆବାସସ୍ଥଳୀରେ ଥିବା ସଙ୍କଟ
- ସରକାର ଓ ଅନ୍ୟମାନେ ସୁରକ୍ଷା ଏବଂ ସଂରକ୍ଷଣ ପାଇଁ ନେଉଥିବା ପଦକ୍ଷେପ

# ପ୍ରତିଯୋଗିତା

ମେଳାର ଅଂଶ ଭାବରେ କିଛି ପ୍ରତିଯୋଗିତାର ଆୟୋଜନ କରାଯାଇପାରେ । ଏଗୁଡ଼ିକ ଲଗାଯାଇଥିବା ପ୍ରାଚୀରପତ୍ର ତଥା ଆୟୋଜିତ ଅନ୍ୟ କାମ ଉପରେ ଆଧାରିତ ହୋଇପାରିବ ।

- ହାତୀ ଡାକ ଟିକଟ ତିଆରି କରିବାର ପ୍ରତିଯୋଗିତା କରାଯାଇପାରେ । ଏଥିପାଇଁ ହାତୀ ପାଇଁ ବିପଦ ଓ ସଂରକ୍ଷଣ ଭଳି କିଛି ନିର୍ଦ୍ଦିଷ୍ଟ ବିଷୟ ଦିଆଯାଇପାରେ କିମ୍ବା ସାଧାରଣ ଭାବରେ ହାତୀର ଯେକୌଣସି ଦିଗ ଉପରେ ଏହା ହୋଇପାରେ ।
- ହାତୀ ସମ୍ବନ୍ଧୀୟ ବୁଦ୍ଧିପରୀକ୍ଷା ବା କ୍ୱିଜ୍ କରାଯାଇପାରେ । କେତେକ ସରଳ ପ୍ରଶ୍ନକୁ ନେଇ ଏହା କରିବାକୁ ହେବ । ବୁଦ୍ଧିପରୀକ୍ଷା ପ୍ରସ୍ତୁତ କରିବା ପାଇଁ 'ମଣିଷ ଓ ସ୍ଥୂଳଚର୍ମା ଜୀବ' ଏବଂ ୧୦୭ ପୃଷ୍ଠାର ପ୍ରଶ୍ନାବଳୀର ସାହାଯ୍ୟ ନିଆଯାଇପାରେ । ପୃଷ୍ଠା ୫୧ରେ ଥିବା ହାତୀକୁ ଜାଣିବା କାମର ବି ସାହାଯ୍ୟ ନିଆଯାଇପାରିବ ।

# ଚିତ୍ର ଓ ହସ୍ତକର୍ମ

ଏହା ହେବ ଏକ 'ନିଜେ କରି ଦେଖ' କୋଣ । ପିଲାମାନେ ଏଥିରେ ନିଜର ହାତୀ ମୁଖା ଓ ହାତୀ ଅଭିନନ୍ଦନ ପତ୍ର ଆଦି ତିଆରି କରିପାରିବେ ।

### ହାତୀମୁଖା

ଏହି କୋଣରେ ପିଲାମାନେ ଗୋଟିଏ ହାତୀମୁଖା ତିଆରି କରିପାରିବେ । ଏଥିପାଇଁ ଡ୍ରଇଙ୍ଗ୍ ସିଟ୍, ଖବର କାଗଜ, କଇଁଚି, ସ୍କେଲ, ରଙ୍ଗ, ବ୍ରସ, ସୂତା ଭଳି ଦରକାରୀ ଜିନିଷ ଯୋଗାଇବାକୁ ହେବ ଏବଂ ପୃଷ୍ଠା ୧୨୦ରେ ଥିବା ନିର୍ଦ୍ଦେଶ ଅନୁସାରେ କରିବା ପାଇଁ ପିଲାଙ୍କୁ ସାହାଯ୍ୟ କରିବା ଆବଶ୍ୟକ ।





Digitized by srujanika@gmail.com

## ହାତୀ ମୁଖା ତିଆରି




୧· ଚିତ୍ର ୧ରେ ଦେଖାଯାଇଥିବା ଭଳି ହାତୀମୁଖାର ବାହାର ଧାରରେ କାଟିଦିଅ । ଏହି ଗୋଲ କାଗଜ ଖଣ୍ଡକ ତୁମ ମୁହଁଠାରୁ ଟିକିଏ ବଡ଼ ହେବା ଦରକାର, ତେଣୁ ପ୍ରଥମରୁ ସେହି ଅନୁସାରେ ଚିତ୍ରଟି ଆଙ୍କ । ଅଲଗା ଖଣ୍ଡେ କାଗଜରେ ଚିତ୍ର ୨ ଭଳି କାନର ଚିତ୍ର ଆଙ୍କ ଏବଂ କାଟିଦିଅ ।

୨· ମୁହଁ ଓ କାନରେ ରଙ୍ଗ ଦିଅ । ଚିତ୍ର ୧ରେ ଦେଖାଯାଇଥିବା ଜାଗାରେ ଆଖି ପାଇଁ କଣା କର ଏବଂ ମୁହଁର ଦୁଇ କଡ଼ରେ କାନ ଦୁଇଟି ଯୋଡ଼ିଦିଅ ।

ଶୁଣ୍ଢ ତିଆରି ପାଇଁ ଖଣ୍ଡେ ଖବର କାଗଜ ବା ସେହିଭଳି ବଡ଼ ଗୋଜିଆ କାଗଜ ନିଅ । ଏହା ଯେତେ ଲମ୍ବା ହେବ ସେତେ ଭଲ । ଏହାକୁ କଳା ରଙ୍ଗ କରିଦିଅ, କିନ୍ତୁ ପାଣି ରଙ୍ଗ ଦିଅନାହିଁ । ଏହି କାଗଜକୁ ଲମ୍ବ ବାଗରେ ଦୁଇ ଭାଙ୍ଗ କର, ଯେପରି ରଙ୍ଗ ପଟଟି ଉପରକୁ ଦେଖାଯିବ (ଚିତ୍ର ୩) ।

୩· ଶୁଣ୍ଢ କାଗଜକୁ ପଟି ପଟି କରି ଫୁଗୁଳା ଭାବରେ ଭାଙ୍ଗିଦିଅ । କାଗଜର ଦୁଇ ଧାରକୁ ଭିଡ଼ି ଅଳ୍ପ ଖୋଲିଦିଅ ଯେପରି ତାହା ଏକ V ଆକୃତିକୁ ଆସିବ (ଚିତ୍ର ୪) ।

୪· କାଗଜର ମଝି ଧାରରେ ଭାଙ୍ଗଗୁଡ଼ିକୁ ଭଲକରି ଚିପିଦିଅ ଓ ଶୁଣ୍ଢକୁ ଓଲଟାଇ ଦିଅ (ଚିତ୍ର ୫) ।

୫· ଶୁଣ୍ଢର ବଡ଼ ପଟକୁ ମୁହଁ କାଗଜ ଉପରେ ଦୁଇ ଆଖିର ମଝିରେ ଲଖାଇଦିଅ । ଏବେ ତୁମର ହାତୀ ଶୁଣ୍ଢ ତିଆରି ହୋଇଗଲା । କଡ଼ର କଣା ଦୁଇଟିରେ ଖଣ୍ଡେ ସୂତା ବା ଇଲାଷ୍ଟିକ ଫିତା ବାନ୍ଧି ମୁଖାକୁ ପିନ୍ଧ ଓ ମଜାକର ।

# ଦର୍ଶକଙ୍କ ଯୋଗଦାନ

### ତୁମ ଭାଷାରେ ହାତୀ

ଏହି କୋଣ ପାଇଁ ଗୋଟିଏ ବୋର୍ଡ଼ରେ ତିନି ଚାରୋଟି ଡ୍ରଇଙ୍ଗ୍ ସିଟ୍ ଲଗାଇ ସେଥିରେ କବିତା, ଲୋକକଥା, ଗପ ଏବଂ ମଜାକଥା ବୋଲି ଶୀର୍ଷକ ଦିଅ । ପିଲା, ସେମାନଙ୍କ ବାପା ମା' ବା ଅନ୍ୟ ଦର୍ଶକଙ୍କୁ ଏହିସବୁ କାଗଜରେ ତାଙ୍କ ନିଜର ଲେଖା ଯୋଡ଼ିବା ପାଇଁ ଅନୁରୋଧ କରାଯାଇପାରେ । ସେମାନେ ନିଜ ପସନ୍ଦର ଭାଷାରେ ଲେଖିପାରିବେ । ଦରକାର ପଡ଼ିଲେ, ଜଣେ ପିଲା ଏଗୁଡ଼ିକୁ ଅନୁବାଦ କରି ମୂଳ ଲେଖାର ତଳେ ଲେଖିପାରେ । ତା'ହେଲେ ଅନ୍ୟ ଲୋକମାନଙ୍କୁ ସେଗୁଡ଼ିକ ପଢ଼ିବା ପାଇଁ ସୁବିଧା ହେବ ।

### ପ୍ରତିକ୍ରିୟା

ହାତୀ ମେଳାର ଗୋଟିଏ ଜାଗା 'ପ୍ରତିକ୍ରିୟା' ପାଇବା ପାଇଁ ରହିପାରେ । ଏଠାରେ ଲୋକମାନଙ୍କୁ ମେଳା ବିଷୟରେ ସେମାନଙ୍କ ପ୍ରତିକ୍ରିୟା ଲେଖିବା ପାଇଁ କହିପାର । ଏଥିପାଇଁ ଗୋଟିଏ ଦର୍ଶକ ଖାତା କରାଯାଇପାରେ ଯେଉଁଥିରେ ସେମାନେ ତାଙ୍କ ମତାମତ ଲେଖିବେ ।

'ପ୍ରତିକ୍ରିୟା' ଅଞ୍ଚଳର ଗୋଟିଏ ସ୍ୱତନ୍ତ୍ର କୋଣ ହାତୀର ସୁରକ୍ଷା ପାଇଁ ଛାଡ଼ିଦେବା ଆବଶ୍ୟକ । ଏହାର ନାଁ ହାତୀ ସୁରକ୍ଷା ରଖାଯାଇପାରେ । ଏସୀୟ ହାତୀର ସୁରକ୍ଷା ପାଇଁ ସେମାନେ କିପରି କ'ଣ କରିପାରିବେ ସେ ବିଷୟରେ ସେମାନଙ୍କ ଚିନ୍ତାଧାରା ଲେଖିବା ପାଇଁ ଉତ୍ସାହିତ କର । ଏଥିପାଇଁ ଦୁଇ ତିନୋଟି ବଡ଼ ବଡ଼ ଡ୍ରଇଙ୍ଗ୍ ସିଟ୍ ବୋର୍ଡ଼ରେ ଲଗାଇଦେଇପାର ।

# ନାଟକ

### ହାତୀ ନାଟକ

ମେଳାରେ ହାତୀ ଉପରେ ଏକ ନାଟକ କରାଯାଇପାରିବ । ଏଥିପାଇଁ ଆଗରୁ ଥିବା କୌଣସି ଗପ ନେଇପାର କିମ୍ବା ହାତୀ ସଂରକ୍ଷଣ ଉପରେ ନିଜର କାହାଣୀ ତିଆରି କରିପାର । ପିଲା ଓ ବୟସ୍କଙ୍କ ଭିତରେ ଏସୀୟ ହାତୀର ସଙ୍କଟ ବିଷୟରେ ସଚେତନତା ବଢ଼ାଇବା ଏବଂ ତାକୁ ରକ୍ଷା କରିବାର ଆବଶ୍ୟକତା ଆଦି ବିଷୟରେ ବୁଝାଇବା ଡ୍ରାମା ମାଧ୍ୟମରେ ସହଜ ହେବ । ଏଥିରେ ହାତୀର ସୁରକ୍ଷା ପାଇଁ ପଦକ୍ଷେପ ସବୁର ଆଲୋଚନା ବି କରିହେବ ।

### ସୂଚନାପତ୍ର

ଗୋଟିଏ ଦଳ ଏସୀୟ ହାତୀ ଉପରେ ସୁନ୍ଦର ଆକର୍ଷଣୀୟ ସୂଚନାପତ୍ର ତିଆରି କରିପାରିବେ । ଦର୍ଶକମାନେ ସାଙ୍ଗରେ ନେଇଯିବା ପାଇଁ ଏହା ଦିଆଯାଇ ପାରିବ । ଏଥିରେ ରହିବା ବିଷୟଗୁଡ଼ିକ ଭିତରୁ କିଛି ହେଲା,

- ହାତୀ ବିଷୟରେ ସାଧାରଣ ତଥ୍ୟ
- ଏସୀୟ ହାତୀର ସଙ୍କଟ ବିଷୟରେ ତଥ୍ୟ
- ହାତୀର ସୁରକ୍ଷା ପାଇଁ ବିଭିନ୍ନ ପଦକ୍ଷେପ

ତଥ୍ୟଗୁଡ଼ିକୁ ସଂକ୍ଷିପ୍ତ, ସରଳ ଏବଂ ସୁଖପାଠ୍ୟ କର ।

**ମେଳାକୁ ଆହୁରି ଉଦ୍ଦୀପନାମୂଳକ କରିବା ପାଇଁ ମେଳା ପରିସରରେ ରହିବା ପାଇଁ ଗୋଟିଏ ହାତୀ ଯୋଗାଡ଼ କରିପାର ।**



Digitized by srujanika@gmail.com

# ହାତୀ ଓ ଓଡ଼ିଶା

## ଓଡ଼ିଶା ଇତିହାସରେ ହାତୀ

ଓଡ଼ିଶାର ସଂସ୍କୃତି ଓ ଐତିହ୍ୟ ସହ ହାତୀ ଓତଃପ୍ରୋତଃ ଭାବେ ଜଡ଼ିତ । ଅର୍ଥନୀତି ବିଶାରଦ କୌଟିଲ୍ୟ ତାଙ୍କର ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ଲିଖିତ ଅର୍ଥଶାସ୍ତ୍ରରେ କଳିଙ୍ଗର ହାତୀମାନଙ୍କୁ ଅତି ଉଚ୍ଚମାନର ବୋଲି ପ୍ରଶଂସା କରିଛନ୍ତି । ଧଉଳି ପାହାଡ଼ର ଅଶୋକଙ୍କର ପ୍ରଥମ ଶିଳାଲିପି ଉପରେ ଏକ ହାତୀର ସମ୍ମୁଖ ଭାଗର ବିଶାଳ ପ୍ରସ୍ତର ମୂର୍ତ୍ତି ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ନିର୍ମିତ ହୋଇ ବର୍ତ୍ତମାନ ସୁଦ୍ଧା ପର୍ଯ୍ୟଟକମାନଙ୍କୁ ଆକର୍ଷିତ କରୁଛି । ଏହାପରେ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ନିର୍ମିତ ଭୁବନେଶ୍ୱର ଉପକଣ୍ଠରେ ଥିବା ଖଣ୍ଡଗିରି ଓ ଉଦୟଗିରି ଗୁମ୍ଫା ସ୍ଥାନରେ ହାତୀର ପ୍ରସ୍ତର ଖୋଦାଇ ଅତ୍ୟନ୍ତ ନିଖୁଣ ହୋଇପାରିଛି । ତା'ର ପରବର୍ତ୍ତୀ କାଳରେ କୋଣାର୍କ ସୂର୍ଯ୍ୟ ମନ୍ଦିର ଦେହରେ ହଜାର ହଜାର ହାତୀଙ୍କୁ ବିଭିନ୍ନ କାର୍ଯ୍ୟରେ ରତ ଥିବା ଅବସ୍ଥାରେ ଅତି ଆକର୍ଷଣୀୟ ଭାବରେ ଖୋଦିତ କରାଯାଇଛି ।



କୋଣାର୍କର ହାତୀ

ଓଡ଼ିଶାର ସମ୍ରାଟଙ୍କୁ 'ଗଜପତି' ଉପାଧିରେ ମଣ୍ଡିତ କରାଯାଇଛି କାରଣ ତାଙ୍କର ବିଶାଳ ଗଜାରୋହୀ ସେନାବାହିନୀ ଥିଲା । ଅଦ୍ୟାବଧି ପୁରୀର ଠାକୁର ରାଜା ଏହି ଉପାଧିରେ ମଣ୍ଡିତ । ଗଙ୍ଗବଂଶର ପ୍ରତିଷ୍ଠାତା ଚୋଡ଼ଗଙ୍ଗ ଦେବ (୧୦୭୮-୧୧୫୬)ଙ୍କର ୯୯,୦୦୦ ହାତୀ ଥିବାର 'କଳିଙ୍ଗର ସାମରିକ ଇତିହାସ'ରୁ ଜଣାଯାଏ । ତା'ର ପରବର୍ତ୍ତୀ ସମୟରେ ଗଜପତି ରାଜବଂଶର ପ୍ରତିଷ୍ଠାତା କପିଳେନ୍ଦ୍ର ଦେବ (୧୪୩୫-୧୪୬୭) ତାଙ୍କ ରାଜାଭିଷେକ ସମୟରେ ଦୁଇ ଲକ୍ଷ ହାତୀ ଉତ୍ତରାଧିକାରୀ ସୂତ୍ରରେ ପାଇଥିଲେ । ଏଥିରେ ତତ୍କାଳୀନ ଓଡ଼ିଶାର ଜଙ୍ଗଲର ଅବସ୍ଥା ଓ ସେଥିରେ ଥିବା ଲକ୍ଷ ଲକ୍ଷ ହାତୀଙ୍କର ଅବସ୍ଥିତି ସହଜରେ ଅନୁମେୟ । ତା'ର ପରବର୍ତ୍ତୀ ସମୟରେ ଇତିହାସ ହାତୀ ସମ୍ବନ୍ଧରେ ପ୍ରାୟ ନିରବ । ତଥାପି ପୂର୍ବଘାଟ ପର୍ବତମାଳାରେ ଅବସ୍ଥିତ ବିଭିନ୍ନ ଗଡ଼ଜାତ ରାଜ୍ୟରେ ଅନେକ ସଂଖ୍ୟାରେ ହାତୀ ରହିଥିବା ଏବଂ ୧୯୪୭ ମସିହା ପର୍ଯ୍ୟନ୍ତ ବିଭିନ୍ନ ସମୟରେ ହାତୀ ଧରାଯାଉଥିବାର ନଜିର ଅଛି । ଏହି ହାତୀ ସବୁ ଖେଦା, ଖାଡ଼ା (ପିଟ୍) ଓ ଫାଶ ସାହାଯ୍ୟରେ ଧରାଯାଇ ବିଭିନ୍ନ ଜଙ୍ଗଲ କାର୍ଯ୍ୟ ଓ ଗମନାଗମନ ପାଇଁ ବ୍ୟବହାର କରାଯାଉଥିଲା । ଓଡ଼ିଶାରେ ହାତୀ ଧରା ଏବଂ ତାଲିମ ପ୍ରକ୍ରିୟାର କେତୋଟି ଫଟୋରୁ ଏହାର ସୂଚନା ମିଳେ ।



ହାତୀଧରା ଓ ତାଲିମ





Digitized by srujanika@gmail.com

## ପୁରୁଣା ଓଡ଼ିଆ ବହିରେ ହାତୀଧରାର ବର୍ଣ୍ଣନା (ଶିଶୁ ପଞ୍ଜାଳି - *ବିଚିତ୍ର ଜୀବ ଜଗତ*, ସଂ ବାଳକୃଷ୍ଣ କର, କଟକ, ୧୯୪୩)

ନାନା ଉପାୟରେ ହାତୀ ଧରାଯାଏ । ତା' ମଧ୍ୟରେ ଫାଶ, ଖେଦା, ଓ ଟୋପ ପ୍ରଧାନ । ଖେଦା ହାତୀ ଧରିବାର ସବୁଠାରୁ ଭଲ ଉପାୟ । ଆଜିକାଲି ଖେଦାରେ ହାତୀ ଧରାଯାଏ ।

ଟୋପ

ହାତୀ ସବୁବେଳେ ଏକ ବାଟରେ ଯିବା ଆସିବା କରନ୍ତି । ସେମାନଙ୍କ ଯିବା ଆସିବା କିମ୍ବା ପାଣିକୁ ଗଡ଼ିବା ବାଟରେ ବଡ଼ ଓ ଗଭୀର ଗାତ ଖୋଳି ତା' ଉପରେ ବାଉଁଶ ଖଣ୍ଡିଆ ଓ ତାଳପତ୍ର ପକାଇ ଜଣାନଗଲା ପରି ମାଟିକୁ ସମାନ କରି ଦିଅନ୍ତି । ସେହି ବାଟରେ ଗଲାବେଳେ ହାତୀ ଟୋପରେ ପଡ଼ିଯାଆନ୍ତି । ଏଥିରେ ଅନେକ ହାତୀ ଜଖମ ହେଲେ ଓ ମଲେ ବୋଲି ଆଉ ଆଜିକାଲି ଏ ଉପାୟରେ ହାତୀ ଧରା ହେଉନାହାନ୍ତି ।

ଫାଶ

ହାତୀ ଧରିବା ପାଇଁ ଆସାମ, ନେପାଳ ଓ ସିଂହଳରେ ଫାଶ ବସାଯାଉଥିଲା । ଫାଶରେ ହାତୀ ଧରିବା ପାଇଁ ପାଞ୍ଚ ଛଅଟି ପୋଷା ହାତୁଣୀ ଲୋଡ଼ା । ମାହୁନ୍ତମାନେ ଫାଶ ଧରି କଳା କମ୍ବଳ ଘୋଡ଼େଇ ହୋଇ, ହାତୀ ପିଠିରେ ଶୋଇ ବଣୁଆ ହାତୀ ପିଛା ଧରନ୍ତି । ସେ ଯେଉଁଆଡ଼େ ଯାଏ ଏମାନେ ସେଆଡ଼େ ଯାଆନ୍ତି । ହାତୀ ମଣିଷ ବାସ୍ନା ପାଇ ପଳାଏ । ପୁଣି ହାତୁଣୀଙ୍କ ଆଡ଼କୁ ଫେରେ । ପୋଷା ହାତୁଣୀ ବଣ ହାତୀ ସାଙ୍ଗେ ସାଙ୍ଗେ ରହି ଚରନ୍ତି । ତା' ଚାରିପାଖ ଘେରି ରହନ୍ତି । ମାହୁନ୍ତମାନେ ସୁବିଧା ପାଇବା ମାତ୍ରକେ ଓହ୍ଲାଇ ବଣ ହାତୀର ପଛଗୋଡ଼ରେ ଫାଶ ଲଗାଇ ଦଉଡ଼ିକୁ ଗଛରେ ବାନ୍ଧନ୍ତି । ଗଛ ନଥିଲେ ପଛଗୋଡ଼ ଛନ୍ଦି ଦିଅନ୍ତି । ହାତୀ ଟାଣି ଓଟାରି ହୋଇ ବା ପଛଗୋଡ଼ ଘୋଷାରି ଚାଲି ଚାଲି ହାଲିଆ ହୁଏ । ସେତେବେଳେ ମାହୁନ୍ତମାନେ ସୁବିଧା ଦେଖି ତା' ମୁଣ୍ଡକୁ ଫାଶ ପକାନ୍ତି । ହାତୀ ଶୁଣ୍ଢକୁ ରକ୍ଷା କରିବା ପାଇଁ ଶୁଣ୍ଢକୁ ପାଟି ପାଖକୁ ଉଠେଇନିଏ । ହିତେ ବିପରୀତ ହୁଏ । ମୁଣ୍ଡରେ ଫାଶଟି ଗଳିଯାଏ । ହାତୀର ବେକ ଓ ଗୋଡ଼ ଛନ୍ଦି ହୋଇଯିବାରୁ ସେ କାବୁ ହୋଇ ରହେ ।

ଖେଦା




ସାଣ୍ଡରସନ୍ ନାମକ ଜଣେ ସାହେବ ମହୀଶୁର ରାଜ୍ୟରେ ସର୍ବପ୍ରଥମେ ଖେଦାରେ ହାତୀ ଧରିବା କୌଶଳ ପ୍ରଚଳନ କରିଥିଲେ । ତା'ପରେ ସରକାରଙ୍କ ପାଇଁ ଏବଂ ଦେଶୀୟ ରାଜାମାନଙ୍କ ପାଇଁ ଅନେକ ଜାଗାରେ ସେ ଖେଦାରେ ହାତୀ ଧରିଥିଲେ । ଓଡ଼ିଶାର କମିଶନର ହଣ୍ଟର ସାହେବ ସର୍ବପ୍ରଥମେ ହିନ୍ଦୋଳ ରାଜ୍ୟରେ ଏହି ଉପାୟରେ ହାତୀ ଧରିଥିଲେ । ଆଜିକାଲି ମଧ୍ୟ ଏହି ଉପାୟରେ ପ୍ରତିବର୍ଷ ଓଡ଼ିଶାର ଗଡ଼ଜାତମାନଙ୍କରେ ଅନେକ ହାତୀ ଧରା ହୁଅନ୍ତି । ହାତୀ ନିକଟରେ ନ ଥିଲେ ହେଁ ଦୂରରୁ ଖେଦି ଆଣି ଖେଦାରେ ପକାଇ ସେମାନଙ୍କୁ ଧରନ୍ତି ବୋଲି ଏହି କୌଶଳର ନାମ ଖେଦା ରଖାଯାଇଛି ।

ଖେଦାର ଛବି ଦେଖିଲେ କିପରି କୌଶଳରେ ସେଥିରେ ହାତୀ ଧରା ହୁଅନ୍ତି ତୁମେ ବୁଝିପାରିବ । ଛବିର *ଚଛଜ* ଏକ ପାହାଡ଼ର ଶିଖର ଭାଗ ଏବଂ *କଖଗ* ସେହି ପାହାଡ଼ ତଳର ସମତଳ ଭୂମି । *ଚଛ* ରୁ *ଗ* ଯାଏ ସ୍ଥାନଟି ଖୁବ୍ ଢାଲୁ ଏବଂ *ଚଛ*ରୁ କୌଣସି ଜନ୍ତୁ ଆସିଲେ *ଗ* ଯାଏ ନଆସି ବାଟରେ ଅଟକିବା ଉପାୟ ନାହିଁ । *କଘଗ* ଓ *କଙଗ* ଦୁଇ ପାଖରେ କାଠର ପାଚେରୀ ତିଆରି ହୋଇଥାଏ । ସେହି ପାଚେରୀର ଚଉଡ଼ା ୮ ହାତ, ଉଚ୍ଚତା ୧୨ ହାତ ଓ ପ୍ରତ୍ୟେକ ପାଖର ଲମ୍ବ ପ୍ରାୟ ୪୦ ହାତ ପର୍ଯ୍ୟନ୍ତ ହୋଇଥାଏ । *ଗ* ଠାରୁ *ଚ* ଓ *ଛ* ପର୍ଯ୍ୟନ୍ତ ମଧ୍ୟ ସେହିପରି ପାଚେରୀ ହୋଇଥାଏ । *କଖଗ* ସ୍ଥାନମାନଙ୍କରେ ୮ ହାତ ଓସାରର ବଡ଼ ବଡ଼ ତିନୋଟି କାଠ ତିଆରି କବାଟ ବା ଅର୍ଗଳ ଖଞ୍ଜା ହୋଇ ଥାଏ । କବାଟ ଫିଟିବା ପାଇଁ ମୋଟା ଖୁଣ୍ଟ ପୋତା ହୋଇ ସେଥିରେ ମୋଟା ଲମ୍ବା ଦଉଡ଼ା ବନ୍ଧା ହୋଇ ଝୁଲୁଥାଏ । କବାଟଗୁଡ଼ିକ ଭିତର ପାଖକୁ ଫିଟେ । *ଚଛଜ*ର ପରିଧି ପ୍ରାୟ ଛଅମାଇଲ ହେବ । ଏହାର ମଝି ସ୍ଥାନକୁ ଜଗତବେଢ଼ କହନ୍ତି, କିନ୍ତୁ ଏଥିରେ କୌଣସି ପାଚେରୀ ନଥାଏ । ଚାରିପାଖରେ ଲୋକେ ଅସ୍ତ୍ରଶସ୍ତ୍ର ଧରି ଜଗି ବସିଥାନ୍ତି । ଜଗୁଆଳମାନଙ୍କୁ ଖରା ବର୍ଷାରୁ ରକ୍ଷା କରିବା ପାଇଁ ୧୦ ହାତ ଅନ୍ତରରେ ଗୋଟାଏ ଗୋଟାଏ ପତ୍ରକୁଡ଼ିଆ ତିଆରି ହୋଇଥାଏ ।

ଲୋକେ ଯାଇ ବଣଜଙ୍ଗଲରୁ ହାତୀପଲକୁ ଦୁରୁଢ଼େଇ ଆଣି ଜଗତବେଢ଼ରେ ପ୍ରଥମେ ପୂରେଇଦିଅନ୍ତି । ଜଗତବେଢ଼ର ଚାରିପାଖରେ ଜଗିଥିବା ଲୋକେ ନିଆଁ ଜାଳି ନିଜ ନିଜ ସ୍ଥାନରେ ସାବଧାନ ହୋଇ ଜଗିରହନ୍ତି ଏବଂ ମଝିରେ ମଝିରେ ପଟାସ ତିଆରି ଫୋଟକା ଫୁଟାନ୍ତି । ଏହି ସବୁ କାଣ୍ଡ ଦେଖି ହାତୀମାନେ ପଳାଇବା ପାଇଁ ବାଟ ନପାଇ ଗିର୍ଦା ଭିତରକୁ ପଶିଯାଆନ୍ତି । ସେମାନେ ଗିର୍ଦା ଭିତରକୁ ପଶିବା ମାତ୍ରେ ଜଗୁଆଳମାନେ ଧରିଥିବା ଦଉଡ଼ା କାଟିଦେଲେ କବାଟ ପଡ଼ିଯାଏ । ହାତୀ ତେଣିକି ଜେଲଖାନାରେ ପଡ଼ିବା ପରି ବନ୍ଦୀ ହୋଇ ରହନ୍ତି । ଗିର୍ଦା ଭିତରୁ ବାହାରକୁ ପଳାଇବା ପାଇଁ ପ୍ରାଣପଣ ଚେଷ୍ଟା କରି ମଧ୍ୟ ପାରନ୍ତିନାହିଁ । ଏହି ପରିଶ୍ରମ ଓ ଦିନେ ଦିଦିନ ଭୋକ ଉପାସରେ ରହିବା ଫଳରେ ସେମାନେ କ୍ଲାନ୍ତ ଓ ଦୁର୍ବଳ ହୋଇପଡ଼ନ୍ତି । ତେଣିକି ମାହୁନ୍ତମାନେ ତିନି ଚାରିଟି ପୋଷା ହାତୀ ନେଇ ଫାଶ ପକାଇ ଗୋଟି ଗୋଟି କରି ବାହାରକୁ ଆଣନ୍ତି ଏବଂ ଧୀରେ ଧୀରେ ଆୟତ କରନ୍ତି ।



Digitized by srujanika@gmail.com

# ଖେଦା ଦ୍ୱାରା ହାତୀଧରା

ଯେଉଁ ବାଟେ ହାତୀ ପଲ ଯାଆନ୍ତି ସେହି ଦଣ୍ଡାର ଖଣ୍ଡେ ଦୂର ପର୍ଯ୍ୟନ୍ତ ଜଙ୍ଗଲ ସଫାକରି ବଡ଼ ବଡ଼ କାଠ ଖୁଣ୍ଟମାନ ପୋତି ଗୋଟିଏ ଗୋହିରୀ ବାଟ ତିଆରି କରାଯାଏ । ସେହି ବାଟରେ ହାତୀଙ୍କର ଲୋଭନୀୟ ନାନାବିଧ ଖାଦ୍ୟ (ଯଥା- ଧାନ ହଳା, ଆଖୁ, ନଡ଼ିଆ, କଖାରୁ, ପାଚିଲା ଓ କଞ୍ଚା କଦଳୀ ଇତ୍ୟାଦି) ଖଣ୍ଡେ ଦୂର ଛଡ଼ା ଛଡ଼ା କରି ରଖାଯାଏ । ହାତୀମାନେ ସେହିସବୁ ଖାଦ୍ୟର ଲୋଭରେ ସେହି ଗୋହିରୀ ବାଟେ ମୁହାଁନ୍ତି । ଗୋହିରୀର ଶେଷ ମୁଣ୍ଡରେ ବଡ଼ ବଡ଼ ଖୁଣ୍ଟମାନ ପୋତାଯାଇ ୪୦-୫୦ଟି ହାତୀଙ୍କର ଏକତ୍ର ରହିପାରିବା ଭଳି ଗୋଟିଏ ବଡ଼ ଖୁଆଡ଼ ବା ଅଟେଇ ତିଆରି ହୋଇଥାଏ । ଅଟେଇର ବାଡ଼ରେ ପୋତା ହୋଇଥିବା ଖୁଣ୍ଟମାନ ପରସ୍ପରକୁ ଲଗାଲଗି ହୋଇ ପୋତା ହୋଇ ଖୁବ୍ ମଜଭୁତ କାମୁଡ଼ାରେ ଭିଡ଼ା ହୋଇଥାଏ ଏବଂ ସେ ଖୁଣ୍ଟମାନଙ୍କରେ ବଡ଼ ବଡ଼ ମୁନିଆଁ ମରା ଯାଇଥାଏ; (ହାତୀମାନେ ସେ ବାଡ଼କୁ ଭାଙ୍ଗିବାକୁ ବସିଲେ ବାଡ଼ ଦେହରୁ ବାହାରିଥିବା ମୁନିଆଁ କଣ୍ଟାମାନ ହାତୀଙ୍କ ଶୁଣ୍ଢରେ, ମୁଣ୍ଡରେ ଓ ଗୋଡ଼ରେ ଫୁଟିଯାଏ); ଅତଏବ ହାତୀମାନେ ସେ ବାଡ଼କୁ ଭାଙ୍ଗି ବା ମାଡ଼ିଦେଇ ପଳାଇ ଯାଇ ପାରନ୍ତି ନାହିଁ । ଏହି ଅଟେଇ ବା ଖୁଆଡ଼କୁ 'ଖେଦା' ବୋଲାଯାଏ । ଗୋହିରୀରୁ ସେ ଖେଦାକୁ ଆସିବା ବାଟର ଊର୍ଦ୍ଧ୍ୱଭାଗରେ ବାଟ ବନ୍ଦ କରିବା ପାଇଁ ଦୁଇଟି ଖୁବ୍ ବଡ଼ କବାଟ ଦଉଡ଼ି ଦ୍ୱାରା ବନ୍ଧାଯାଇ ଝୁଲାଇ କରି ରଖା ହୋଇଥାଏ । ଲୋକମାନେ ଗୋହିରୀର ବାହାରେ ଓ ଅଟେଇର ବାହାରେ ଓ ଗଛ ଉପରେ ଜଗି ରହିଥାଆନ୍ତି । ଖେଦା ଭିତରେ ମଧ୍ୟ ନାନାପ୍ରକାର ଲୋଭନୀୟ ଖାଦ୍ୟ ବିଞ୍ଚା ହୋଇଥାଏ । ହାତୀପଲ ପୂର୍ବୋକ୍ତ ଗୋହିରୀ ବାଟେ ଖାଦ୍ୟ ଖାଇ ଖାଇ ଆସି ସେ ଖେଦାରେ ପଶିଯାଆନ୍ତି । ଖେଦାର ଅଧ୍ୟକ୍ଷ ଯେତେବେଳେ ଦେଖନ୍ତି ଯେ, ଯଥେଷ୍ଟ ସଂଖ୍ୟକ ହାତୀ ସେ ଖେଦା ଭିତରେ ପଶିଗଲେଣି, ସେ ତତ୍‌କ୍ଷଣାତ୍ ଇସାରା ଦିଅନ୍ତି; ଇସାରା ଦେବା ମାତ୍ରେ ପ୍ରବେଶ ଦ୍ୱାରର ଊର୍ଦ୍ଧ୍ୱରେ ଅଟକା ହୋଇଥିବା କବାଟର ଦଉଡ଼ାକୁ ଗଛ ଉପରେ ଜଗିଥିବା ଲୋକେ କାଟିଦିଅନ୍ତି ଓ କବାଟ ପଡ଼ିଯାଇ ଖେଦାର ବାଟ ରୁଦ୍ଧ ହୋଇଯାଏ । କବାଟ ପଡ଼ିଯିବାର ଗୋଳମାଳରେ ହାତୀଙ୍କର ଚୈତନ୍ୟ ଉଦୟ ହୁଏ ।





ଯେଉଁ ହାତୀମାନେ ଖେଦାରେ ପଶି ନ ଥାନ୍ତି ସେମାନେ ଲେଉଟିକରି ଗୋହିରୀ ବାଟେ ପଳାଇ ଯାଆନ୍ତି ଓ ଯେଉଁମାନେ ଖେଦାରେ ପଶିଥାଆନ୍ତି ସେମାନେ ବାଟ ନ ପାଇ ଖେଦା ମଧ୍ୟରେ ଗଣ୍ଡଗୋଳ ଆରମ୍ଭ କରନ୍ତି ଓ ଖେଦାର ବାଡ଼କୁ ଆପଣା ଆପଣା ମୁଣ୍ଡ ଦ୍ୱାରା ପେଲିବାକୁ ଚେଷ୍ଟା କରନ୍ତି । ବାଡ଼କୁ ଠେଲିବା ଦ୍ୱାରା ସେଥିରେ ଥିବା ମୁନିଆଁ କଣ୍ଟା ହାତୀଙ୍କ ମୁଣ୍ଡରେ କେଞ୍ଚିହୋଇ ହାତୀମାନେ ରକ୍ତବୁହା ହୁଅନ୍ତି । ଖେଦାର ଚାରିପାଖେ ପଦାରେ ବେଢ଼ି ଜଗିଥିବା ଲୋକେ ବନ୍ଧୁକ ଓ ବାଦ୍ୟର ଶବ୍ଦ କରି ଖେଦା ଭିତରେ ଥିବା ହାତୀଙ୍କୁ ଡରାନ୍ତି । ହାତୀମାନେ ପାରୁ ପର୍ଯ୍ୟନ୍ତ ଚିତ୍କାର ଓ ବଳପ୍ରକାଶ ଓ ତର୍ଜନ ଗର୍ଜନ କରି ଖେଦାକୁ ମୁଣ୍ଡରେ ଡିହମାରି ରକ୍ତବୁହା ହୋଇ ଓ ଖାଇବାକୁ ନ ପାଇ ତା ମଧ୍ୟରେ ୪-୫ ଦିନ ପଡ଼ି ରହିବା ପରେ କ୍ଳାନ୍ତ ହୋଇପଡ଼ନ୍ତି । ଯେତେବେଳେ ଦେଖାଯାଏ ଯେ, ହାତୀଙ୍କର ପୂର୍ବର ବଳ ଭାଙ୍ଗିଗଲାଣି, ସେହି ସମୟରେ ଶିକ୍ଷିତ ହାତୀ ଓ ହାତୁଣୀଙ୍କୁ ଖେଦା ମଧ୍ୟରେ ପୂରାଯାଏ । ସେହି ଶିକ୍ଷିତ ହାତୀ ଓ ହାତୁଣୀମାନେ ବନ୍ଦୀ ହାତୀଙ୍କ ସାଙ୍ଗେ ମିଳାମିଶା କରନ୍ତି । ଗୋଟିଏ ଲେଖାଁଏ ହାତୀଙ୍କୁ ଦୁଇଟି ଶିକ୍ଷିତ ହାତୀ ବା ହାତୁଣୀ କାବୁକରି ଦୁଇଆଡୁ ଚିପି ରଖନ୍ତି ଏବଂ ଇତ୍ୟବସରେ ସୁଯୋଗ ପାଇ ଲୋକେ ଏ ନୂଆ ହାତୀଙ୍କ ଗୋଡ଼ରେ ଓ ବେକରେ ଶିକୁଳି ଓ ଦଉଡ଼ି ବାନ୍ଧି ସେ ଦଉଡ଼ି ଓ ଶିକୁଳିକୁ ଶିକ୍ଷିତ ହାତୀଙ୍କ ଗୋଡ଼ ଓ ବେକ ସଙ୍ଗେ ଛନ୍ଦିଦିଅନ୍ତି ଓ ଏହିପରି ସବୁ ହାତୀଙ୍କୁ ବାନ୍ଧି ଗୋଟି ଗୋଠ କରି ବାହାରକୁ ଆଣନ୍ତି । ବାହାରକୁ ଆଣିବାବେଳେ ପ୍ରତି ବଣୁଆ ହାତୀର ଦୁଇକଡ଼କୁ ଦୁଇଟି ଶିକ୍ଷିତ ହାତୀ ବା ହାତୁଣୀ ଚାପିକରି ଧରି ଥାଆନ୍ତି ଓ ଦଉଡ଼ିରେ ଛନ୍ଦା ହୋଇ ଥାଆନ୍ତି । ଏମନ୍ତ କି, ନୂଆ ହାତୀ ସ୍ୱାଧୀନ ଭାବରେ ଗତି କରି ପାରେ ନାହିଁ । ଏହିପରି ହାତୀମାନଙ୍କୁ ବାହାରକୁ ଆଣି ସେମାନଙ୍କୁ ଶିକ୍ଷିତ ହାତୀଙ୍କ ଦ୍ୱାରା ସରସ୍ତା କରନ୍ତି । ଆଶ୍ଚର୍ଯ୍ୟର ବିଷୟ ଯେ, ସାଧାରଣତଃ ବଣହାତୀମାନେ ଏକ ମାସ ମଧ୍ୟରେ ଶିକ୍ଷିତ ହୋଇ ମାହୁନ୍ତଙ୍କ ଡାକ ମାନି ବଶବର୍ତ୍ତୀ ହୋଇ ଯାଆନ୍ତି । ବର୍ତ୍ତମାନ ଗଡ଼ଜାତରେ ଓ ବ୍ରହ୍ମଦେଶରେ ଇଂରେଜ ଗଭର୍ଣ୍ଣମେଣ୍ଟଙ୍କ ତତ୍ତ୍ୱାବଧାନରେ ଖେଦା ଦ୍ୱାରା ହାତୀ ଧରା ଯାଉଅଛନ୍ତି ।

(ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ, ସପ୍ତମ ଖଣ୍ଡ, କଟକ, ୧୯୪୦)



Digitized by srujanika@gmail.com

# ମୟୂରଭଞ୍ଜରେ ହାତୀଧରା

(ଉତ୍ସ: *ଓଡ଼ିଶା ଡିଷ୍ଟ୍ରିକ୍ଟ ଗେଜେଟିଅର୍ସ୍*, ମୟୂରଭଞ୍ଜ, ନୀଳମଣି ସେନାପତି ଓ ନବୀନ କୁମାର ସାହୁ, ୧୯୬୭)

ମୟୂରଭଞ୍ଜର ଜୀବଜନ୍ତୁଙ୍କ ଭିତରେ ହାତୀର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି । ଆର୍ଦ୍ର ଓ ଖାଦ୍ୟଭରା ଶିମିଳିପାଳ ପାହାଡ଼ି ଅଞ୍ଚଳର ଚାରିଆଡ଼େ ଏମାନେ ଦଳ ଦଳ ହୋଇ ବୁଲୁଥିବାର ଦେଖାଯାଏ । ଦକ୍ଷିଣ ଶିମିଳିପାଳର ଅଙ୍କୁରବାସା, ଚିଣତିହା ଓ ବଡ଼କାମୁଡ଼ା ଅଞ୍ଚଳରେ ହାତୀଙ୍କର ସଂଖ୍ୟା ସବୁଠାରୁ ବେଶୀ । ଶିମିଳିପାଳର ହାତୀମାନେ ମୁଖ୍ୟତଃ ପାହାଡ଼ ଉପତ୍ୟକାରେ ରୁହନ୍ତି । କେବେ କେବେ ସେମାନେ ପାହାଡ଼ର ଉପର ଅଞ୍ଚଳକୁ ଯାଆନ୍ତି ବା ତଳର ସମତଳ ଅଞ୍ଚଳକୁ ଚାଲିଆସନ୍ତି ।

ଶହ ଶହ ବର୍ଷ ଧରି ମୟୂରଭଞ୍ଜରେ ରାଜାମାନେ ନିୟମିତ ଭାବରେ ହାତୀ ଧରିଚାଲିଛନ୍ତି । ଏପରିକି ରାଜ୍ୟର ବାର୍ଷିକ ବିବରଣୀରେ ସବୁବେଳେ ଏହାର ବର୍ଣ୍ଣନା ରହୁଥିଲା । କିନ୍ତୁ ମାତ୍ର ଅଳ୍ପ କେତେ ହାତୀଧରାର ବିବରଣୀ ଏବେ ମିଳୁଛି । ମୟୂରଭଞ୍ଜର ପାରମ୍ପରିକ ହାତୀଧରା ବ୍ୟବସ୍ଥା ହେଉଛି *ଖେଦା* । ମୟୂରଭଞ୍ଜ ରାଜ୍ୟରେ ଖେଦା ସାହାଯ୍ୟରେ ହାତୀ ଧରିବା ଗୋଟିଏ ନିୟମିତ କାମଥିଲା ।

ଖେଦାର ଅର୍ଥ ହେଉଛି ତଡ଼ିନେବା - ଏହି ବ୍ୟବସ୍ଥାରେ ହାତୀମାନଙ୍କୁ ତଡ଼ିନେଇ ଗୋଟିଏ ମଜଭୁତ ଗୋଲାକାର ଖୁଆଡ଼ରେ ପୂରାଇ ଦିଆଯାଏ । ଶିମିଳିପାଳ ଓ ତା'ର ଆଖପାଖ ଅଞ୍ଚଳରେ ପୁରୁଣା ଖେଦା ସବୁର ଭଗ୍ନାବଶେଷ ଏବେ ମଧ୍ୟ ଦେଖିବାକୁ ମିଳେ । ୧୯୩୨ ମସିହା ପର୍ଯ୍ୟନ୍ତ ଅର୍ପଟା, ଚିମ୍ଳା ଓ ଶିମିଳିପାଳ ପ୍ରଗଣାମାନଙ୍କରେ କେତୋଟି ବଡ଼ ଖେଦାର ଭଙ୍ଗା ଅଂଶ ଏବଂ ପୁରୁଣା ବାରିପଦା, ଓରାଚଣ୍ଡାବିଲା ଠାରେ ଛୋଟ ଛୋଟ ଖେଦାମାନ ରହିଥିଲା । ୧୯୩୨ ମସିହାରେ ମହାରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜଙ୍କଠାରେ ହାତୀ ଧରିଥିବାର ଜଣାଅଛି । ଏହା ପୂର୍ବରୁ ମହାରାଜା କୃଷ୍ଣଚନ୍ଦ୍ର ବନହରି ପ୍ରଗଣାର ଅହରି ଜଙ୍ଗଲରେ ଓ ମହାରାଜା ଶ୍ରୀରାମଚନ୍ଦ୍ର ଡେଙ୍ଗାମ, ଜୟପୁର, ପିଠବଟ, ଚେକମରା ଓ ମନଗଡ଼ ଜଙ୍ଗଲ ସବୁରେ ଅନେକ ହାତୀ ଧରିଥିଲେ । ପର ସମୟରେ ମହାରାଜା ପ୍ରତାପ ଚନ୍ଦ୍ର ଚମ୍ପାଗଡ଼ଠାରେ ହାତୀ ଧରିଥିବାର ବିବରଣୀ ମିଳୁଛି ।

ଖେଦାରେ ହାତୀ ଧରିବା କାମଟି ଗୋଟିଏ ଉତ୍ସବର ରୂପ ନେଉଥିଲା ଏବଂ ଏଥିପାଇଁ ବିଶିଷ୍ଟ ଅତିଥିମାନଙ୍କୁ ନିମନ୍ତ୍ରଣ କରାଯାଉଥିଲା । ଜଙ୍ଗଲରେ ହାତୀମାନଙ୍କୁ ଠାବ କରାଗଲା ପରେ ଲୋକମାନେ ତାଙ୍କୁ ଘେରି ରହୁଥିଲେ । ତାଙ୍କର ପ୍ରିୟ ଖାଦ୍ୟ ସାହାଯ୍ୟରେ ହାତୀମାନଙ୍କୁ ଖୁଆଡ଼ ଭିତରକୁ ଆକର୍ଷିତ କରି ଅଣାଯାଉଥିଲା । ହାତୀମାନେ ଖୁଆଡ଼ ଭିତରକୁ ପଶିବା ପରେ ଗୋଟିଏ କଣ୍ଟାଲଗା ମଜଭୁତ କବାଟ ଖସାଇ ତାଙ୍କୁ ବନ୍ଦ କରିଦିଆଯାଉଥିଲା । ଖୁଆଡ଼ ଚାରିପଟେ ସାଧାରଣତଃ ଦୁଇ ପରସ୍ତ ବାଡ଼ ରହୁଥିଲା । ଦୁଇ ବାଡ଼ ମଝିରେ ଗୋଟିଏ ଖାଇ ଖୋଳା ଯାଉଥିଲା କିମ୍ବା ବଡ଼ ବଡ଼ କାଠ ଗଡ଼ ଶୁଆଇ ଖାଲି ଜାଗାକୁ ଭରି ଦିଆଯାଉଥିଲା ।

ହାତୀ ଧରିବା ରାଜାମାନଙ୍କ ପାଇଁ ଗୋଟିଏ ସାହସିକ ସଉକ ଥିଲା । କିନ୍ତୁ ଖେଦା ପାଇଁ ବହୁତ ଖର୍ଚ୍ଚ ଲାଗୁଥିଲା ଏବଂ ହାତୀ ପାଇଁ କେହି କ୍ରେତା ନଥିଲେ । ୧୯୩୮ ମସିହାରେ ଶେଷ ଖେଦା କରାଯାଇଥିବାର ଜଣାଯାଏ ।

୧୯୪୩ ମସିହାରେ ଫାଶ ସାହାଯ୍ୟରେ ଗୋଟିକିଆ ହାତୀ ଧରାଯାଇଥିଲା । ଏଥିପାଇଁ ଶକ୍ତ ଦଉଡ଼ିର ଫାଶ ବସାଯାଉଥିଲା ଓ ଦଉଡ଼ିର ମୁଣ୍ଡକୁ ଧରି ଜଣେ ଲୋକ ଗଛ ଉପରେ ବସୁଥିଲା । ହାତୀଟି ଦଉଡ଼ି ଉପରକୁ ଆସିଲେ ଗଛ ଉପରେ ଥିବା ଲୋକକୁ ସଙ୍କେତ ଦିଆଯାଉଥିଲା । ସେ ଦଉଡ଼ି ମୁଣ୍ଡକୁ ଟାଣିଦେଲେ ହାତୀ ଫାଶରେ ଅଟକି ରହୁଥିଲା ।

ଏହାପରେ ଆଉ କେବେ ହାତୀ ଧରିବାର ବିବରଣୀ ମିଳିନାହିଁ । ବୋଧହୁଏ ତାହା ହିଁ ଥିଲା ଶେଷ ହାତୀଧରା । ୧୯୪୯ରେ ମୟୂରଭଞ୍ଜ ରାଜ୍ୟ ସ୍ୱାଧୀନ ଭାରତରେ ମିଶିଗଲା ଏବଂ ଶିମିଳିପାଳର ପରିଚାଳନା ରାଜାଙ୍କ ହାତରୁ ଚାଲିଯାଇ ଅଲଗା ରୂପନେଲା ।

## ମୟୂରଭଞ୍ଜରେ ହାତୀ ଧରାର ବିବରଣୀ

| | |
|---|---|
| ୧୮୭୦-୭୧ | ୨୦୦ ହାତୀ ଧରାଯାଇଥିଲେ । |
| ୧୯୧୦ | ହାତୀ ଧରାଯାଇଥିବା କଥା 'ମୁଖ୍ୟ ସମ୍ପାଦକ' ଦେଖିଛନ୍ତି । |

(ମଝିର ୪୦ ବର୍ଷରେ ନିଶ୍ଚୟ ଖେଦା ବସିଥିବ, କିନ୍ତୁ ବିବରଣୀ ମିଳିନାହିଁ ।)

| | |
|---|---|
| ୧୯୩୧-୩୨ | ଚେକାମରାରେ ଖେଦା ବସିଥିଲା, କିନ୍ତୁ ବିଶେଷ ବିବରଣୀ ନାହିଁ । ବିକାନୀରର ମହାରାଜା ଏବଂ ନୀଳଗିରି ଓ ପୁରୀର ରାଜାମାନେ ଅତିଥି ହୋଇଥିଲେ । |
| ୧୯୩୩-୩୪ | ଖଣ୍ଡବୁଡ଼ାରେ ୧୨,୦୭୬ ଟଙ୍କା ଖର୍ଚ୍ଚରେ ୨୦ଟି ହାତୀ ଧରାଯାଇଥିଲେ । ଜୟପୁର ଓ ପାନ୍ନାର ମହାରାଜ ଏହା ଦେଖିବାକୁ ଆସିଥିଲେ । |
| ୧୯୩୭-୩୮ | ବାରିପଦା ସହରରୁ ୧୬ ମାଇଲ ଦୂର ଏକ ଜାଗାରେ ୨୦,୫୬୧ ଟଙ୍କା ଖର୍ଚ୍ଚରେ ୧୫ଟି ହାତୀ ଧରାଯାଇଥିଲେ । |

# ବର୍ତ୍ତମାନର ଅବସ୍ଥା

ସବୁ ରାଜାଙ୍କର ଓ କେତେକ ଜମିଦାର ଓ ବ୍ରିଟିଶ ସରକାରଙ୍କର ଅନେକ ହାତୀ ଥିବାର ଲିଖିତ ବିବୃତି ଅଛି । କିନ୍ତୁ ତା'ପରେ ହାତୀଧରା ପୂରାପୂରି ଭାବରେ ବନ୍ଦ ହୋଇଗଲା ଓ ହାତୀ ମାହୁନ୍ତ ବଂଶ ପରମ୍ପରା କେବଳ ମାତ୍ର ଅଳ୍ପ କେତେକ ସରକାରୀ ହାତୀକୁ ଚଳାଇବାରେ ସୀମିତ ରହିଲା । ଗତ ଦଶନ୍ଧି ପର୍ଯ୍ୟନ୍ତ ଶ୍ରୀ ଜଗନ୍ନାଥଙ୍କ ମନ୍ଦିରରେ ହାତୀ ରଖାଯାଉଥିଲା । ଉକ୍ତ ହାତୀ 'ଲକ୍ଷ୍ମୀ' ଚନ୍ଦନ ଯାତ୍ରା ଓ ରଥଯାତ୍ରା ପଟୁଆରରେ ଭାଗ ନେଉଥିଲା । ରାଜଗାଙ୍ଗପୁରର ଓଡ଼ିଶା ସିମେଣ୍ଟ କାରଖାନାରେ ମଧ୍ୟ ରେଲ ୱାଗନ ଠେଲିବା ପାଇଁ ହାତୀ ରଖାଯାଉଥିଲା ।

ପରବର୍ତ୍ତୀ ଅବସ୍ଥାରେ କେତେକ ଉତ୍ପାତ ସୃଷ୍ଟି କରୁଥିବା ହାତୀକୁ ନିଶ୍ଚେତକ ଔଷଧ ବନ୍ଧୁକ ଦ୍ୱାରା ନିକ୍ଷେପ କରି ଧରାଯାଇ ତାଲିମ ଦିଆଯାଇଛି । ଗଞ୍ଜାମ ଜିଲ୍ଲାରେ ୧୯୮୨ ମସିହାରେ ଧରାଯାଇ ତାଲିମ କରାଯାଇଥିବା ଦନ୍ତାହାତୀ 'ଅଗସ୍ତି' ପୃଥିବୀରେ ଏପରି ପ୍ରଥମ ଘଟଣା । ପଦ୍ମଶ୍ରୀ ସରୋଜରାଜ ଚୌଧୁରୀ ଅଗସ୍ତିକୁ ଧରିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ବଲାଙ୍ଗିରର ବିରାଟକାୟ ମାଖନା ହାତୀ 'ଖରସେଲ'କୁ ଧରାଯାଇ, ତାଲିମ ଦେଇ ବର୍ତ୍ତମାନ ଡେବ୍ରିଗଡ଼ ଅଭୟାରଣ୍ୟର ସୁରକ୍ଷାରେ ନିୟୋଜିତ କରାଯାଇଛି ।



Digitized by srujanika@gmail.com

## ଓଡ଼ିଶାରେ ଜଙ୍ଗଲୀ ହାତୀ

ହାତୀମାନଙ୍କର ସୁପରିଚାଳନା ପାଇଁ ସେମାନଙ୍କର ଗଣନା କରାଯାଇଥାଏ । ୧୯୭୯ ମସିହାରେ ରାଜ୍ୟରେ ସେମାନଙ୍କ ସଂଖ୍ୟା ୨୦୪୪ ଥିବାବେଳେ ଗତ ୧୯୯୯ ଗଣନାରେ ସେମାନଙ୍କ ସଂଖ୍ୟା ୧୯୨୭ ଥିବାର ଜଣାଯାଏ । ୨୦୦୨ ମସିହାରେ କିନ୍ତୁ ଏହି ସଂଖ୍ୟା ୧୮୪୧କୁ କମିଆସିଛି । ମଧ୍ୟପୂର୍ବ ଭାରତରେ - ଓଡ଼ିଶା, ଝାଡ଼ଖଣ୍ଡ ଓ ଦକ୍ଷିଣ ପଶ୍ଚିମବଙ୍ଗ ଭିତରେ - ବର୍ତ୍ତମାନ ଓଡ଼ିଶାର ହାତୀ ସଂଖ୍ୟା ସର୍ବାଧିକ । ଏହା ବ୍ୟତୀତ କେନ୍ଦୁଝର, ସୁନ୍ଦରଗଡ଼, ରାୟଗଡ଼ା, କଳାହାଣ୍ଡି, କନ୍ଧମାଳ, ଗଞ୍ଜାମ ଓ ଗଜପତି ଜିଲ୍ଲାରେ ମଧ୍ୟ ହାତୀ ଦେଖାଯାନ୍ତି । ଓଡ଼ିଶାର ଜଙ୍ଗଲ ମଧ୍ୟରେ ଶିମିଳିପାଳରେ ସର୍ବାଧିକ ପ୍ରାୟ ୫୧୨ ହାତୀ ଥିବାର ଜଣାଯାଏ । ଶିମିଳିପାଳର ସୁରକ୍ଷା ଓ ପର୍ଯ୍ୟଟନର ସୁବିଧା ପାଇଁ ୨୦୦୧ ମସିହାରେ କର୍ଣ୍ଣାଟକରୁ ତିନିଟି ତାଲିମପ୍ରାପ୍ତ ହାତୀ ଅଣାଯାଇ କାମରେ ଲଗାଯାଇଛି । ବିଭିନ୍ନ ବନମଣ୍ଡଳରେ ହାତୀଙ୍କ ସଂଖ୍ୟା ପୃଷ୍ଠା ୧୨୬ର ସାରଣୀରେ ଦେଖାଯାଇଛି ।

ଏହି ସାରଣୀରୁ ଦେଖାଯାଏ ଯେ ଓଡ଼ିଶାର ଦଶଟି ବନଖଣ୍ଡରେ ଆଦୌ ହାତୀ ନାହାନ୍ତି । ଏବେ ଜନସଂଖ୍ୟାର ଦ୍ରୁତବୃଦ୍ଧି ଫଳରେ ଜଙ୍ଗଲ ଜାଗାରେ ବସତି ସ୍ଥାପନ ଓ ଚାଷବାସ କରାଯାଉଛି । ଏଥିଯୋଗୁ ହାତୀର ଆବାସସ୍ଥଳୀ କମିଯାଉଛି ଏବଂ ଖଣ୍ଡବିଖଣ୍ଡିତ ହୋଇଯାଉଛି । ଓଡ଼ିଶାରେ ବିଶେଷ ଭାବରେ ବିଖଣ୍ଡିତ ହୋଇଥିବା ଆବାସସ୍ଥଳୀଗୁଡ଼ିକ ହେଉଛନ୍ତି - ଚନ୍ଦକା-କପିଳାସ, ଶିମିଳିପାଳ-କୁଳଡିହା, ମାଲ୍ୟଗିରି-ଛେଣ୍ଡିପଦା-ସାତକୋଶିଆ-ରେଢ଼ାଖୋଲ, ଲାଖାରି-ଗୁଣୁପୁର । ହାତୀସଂଖ୍ୟା କମିବାର ଏହା ହେଉଛି ମୁଖ୍ୟ କାରଣ ।

### ଓଡ଼ିଶାରେ ହାତୀଙ୍କ ମୁଖ୍ୟ ଖାଦ୍ୟ

ଆମ୍ବ (*ମାଙ୍ଗିଫେରା ଇଣ୍ଡିକା*, ଫଳ), ବଣ କପାସିଆ (*କିଡ଼ିଆ କାଲିସିନା*, ବକ୍କଳ), ବେଲ (*ଇଗଲ୍ ମାରମେଲୋସ*, ଫଳ), ଦନ୍ତାରି ଲଟା (*ଏକାସିଆ ପେନ୍ନାଟା*, ବକ୍କଳ, ପତ୍ର), ଘୋଣ୍ଟବର (*ଜିଜିଫସ୍ ଜାଇଲୋପାଇରସ୍*, ବକ୍କଳ), କଙ୍କଡ଼ା (*ଜାଇଲିଆ ଜାଇଲୋକାର୍ପା*, ବକ୍କଳ, ମୂଳ), କୁମ୍ଭି (*କାରିଆ ଆର୍ବୋରିଆ*, ବକ୍କଳ), ଲାଜକୁଳୀ (*ମାଇମୋସା ପୁଡ଼ିକା*), ମହୁଲ (*ମଧୁକା ଲାଟିଫୋଲିଆ*, ବକ୍କଳ, କଅଁଳ ଶାଖା, ପତ୍ର), ଢଣ୍ଡା ବାଉଁଶ (*ବାମ୍ବୁସା ବାମ୍ବୋସ୍*, ପତ୍ର, କଅଁଳ ଶାଖା, କରଡ଼ି) ଏବଂ ବିଭିନ୍ନ ପ୍ରକାରର ଘାସ ।

ହାତୀସଂଖ୍ୟା କମିବାର ଅନ୍ୟ କାରଣଗୁଡ଼ିକ ଭିତରେ ରହିଛି - ପୋଡୁଚାଷ, ଦାନ୍ତ ପାଇଁ ଦନ୍ତାହାତୀ ଶିକାର, ଧାତବ ପଦାର୍ଥର ଖଣି, ଜଙ୍ଗଲ ନିଆଁ, ଖରାଦିନରେ ଜଙ୍ଗଲରେ ଜଳାଭାବ, ହାତୀମାନଙ୍କ ଦାଉରୁ ଫସଲ ଓ ଘର ରକ୍ଷା କରିବା ପାଇଁ ହାତୀ ଶିକାର, ବିଭିନ୍ନ ରୋଗ ଓ ସଂକ୍ରାମକ ରୋଗରୁ ମୃତ୍ୟୁ, ବିଜୁଳି ତାର ଆଘାତରେ ମୃତ୍ୟୁ, ରେଳଗାଡ଼ି ସହିତ ଧକ୍କା ଓ ଅନ୍ୟାନ୍ୟ ଦୁର୍ଘଟଣା ଯୋଗୁଁ ମୃତ୍ୟୁ ଆଦି ।

### ସଂରକ୍ଷଣ ଉଦ୍ୟମ

ଭାରତ ସରକାର ହାତୀମାନଙ୍କ ସଂଖ୍ୟାର ଦ୍ରୁତହ୍ରାସ ଓ ଶିକାର ଯୋଗୁଁ ବେଶ୍ ଚିନ୍ତିତ ହୋଇ ୧୯୯୨ ମସିହାରୁ 'ହସ୍ତୀ ଯୋଜନା'ର ଶୁଭାରମ୍ଭ କରିଛନ୍ତି ।

*ଓଡ଼ିଶାରେ ହାତୀଙ୍କ ଅବସ୍ଥିତି*




(ଚିତ୍ର ସୌଜନ୍ୟ: *ଏଲିଫାଣ୍ଟସ୍ ଇନ୍ ଶିମିଳିପାଳ, ଖଣ୍ଡ ୧, ଜଙ୍ଗଲ ବିଭାଗ, ଓଡ଼ିଶା ସରକାର, ୨୦୦୧ ।* )



Digitized by srujanika@gmail.com

## ଓଡ଼ିଶାର ବିଭିନ୍ନ ବନଖଣ୍ଡରେ ହାତୀଙ୍କ ସଂଖ୍ୟା (ଗଣନା କାଳ: ମେ ୫ରୁ ୭, ୨୦୦୨)

| କ୍ରମ | ବନଖଣ୍ଡ | ଅଣ୍ଡିରା ହାତୀ | ମାଈ ହାତୀ | ଛୁଆ/ଅନିଶ୍ଚିତ ଲିଙ୍ଗ | ମୋଟ ସଂଖ୍ୟା |
|---|---|---|---|---|---|
| | *ଅନୁଗୋଳ ବନମଣ୍ଡଳ* | | | | |
| ୧ | ଅନୁଗୋଳ | ୧୦ | ୭ | ୭ | ୨୪ |
| ୨ | ଆଠମଲ୍ଲିକ | ୧୦ | ୧୪ | ୧୩ | ୩୭ |
| ୩ | ଆଠଗଡ଼ | ୧୯ | ୯୮ | ୩୯ | ୧୫୮ |
| ୪ | ଢେଙ୍କାନାଳ | ୧୪ | ୪୫ | ୨୨ | ୮୧ |
| ୫ | କେନ୍ଦୁଝର | ୪୦ | ୪୯ | ୨୩ | ୧୧୨ |
| ୬ | ପାତକୋଶିଆ | ୧୭ | ୪୩ | ୯୫ | ୧୫୫ |
| | **ମୋଟ ଅନୁଗୋଳ ବନମଣ୍ଡଳ** | **୧୧୦** | **୨୫୬** | **୧୯୯** | **୫୬୫** |
| | *ବ୍ରହ୍ମପୁର ବନମଣ୍ଡଳ* | | | | |
| ୭ | ବାଲିଗୁଡ଼ା | ୯ | ୧୪ | ୯ | ୩୨ |
| ୮ | ବୌଦ | ୦ | ୦ | ୦ | ୦ |
| ୯ | ଘୁମୁସର (ଉତ୍ତର) | ୨ | ୪ | ୩ | ୯ |
| ୧୦ | ଘୁମୁସର (ଦକ୍ଷିଣ) | ୨ | ୨ | ୨ | ୬ |
| ୧୧ | ନୟାଗଡ଼ | ୦ | ୦ | ୦ | ୦ |
| ୧୨ | ମହାନଦୀ | ୪ | ୧୦ | ୧୧ | ୨୫ |
| ୧୩ | ପାରଳାଖେମୁଣ୍ଡି | ୬ | ୧୯ | ୧୭ | ୪୨ |
| ୧୪ | ପୁରୀ | ୦ | ୦ | ୦ | ୦ |
| ୧୫ | ଫୁଲବାଣୀ | ୧ | ୩ | ୨ | ୬ |
| | **ମୋଟ ବ୍ରହ୍ମପୁର ବନମଣ୍ଡଳ** | **୨୪** | **୫୨** | **୪୪** | **୧୨୦** |
| | *କୋରାପୁଟ ବନମଣ୍ଡଳ* | | | | |
| ୧୬ | ବଲାଙ୍ଗିର | ୦ | ୦ | ୦ | ୦ |
| ୧୭ | ଜୟପୁର | ୦ | ୦ | ୦ | ୦ |
| ୧୮ | କଳାହାଣ୍ଡି | ୧୯ | ୩୪ | ୮ | ୬୧ |
| ୧୯ | ଖରିଆର | ୦ | ୦ | ୦ | ୦ |
| ୨୦ | ରାୟଗଡ଼ା | ୦ | ୦ | ୦ | ୦ |
| ୨୧ | ସୁନାବେଡ଼ା | ୦ | ୦ | ୦ | ୦ |
| | **ମୋଟ କୋରାପୁଟ ବନମଣ୍ଡଳ** | **୧୯** | **୩୪** | **୮** | **୬୧** |
| | *ସମ୍ବଲପୁର ବନମଣ୍ଡଳ* | | | | |
| ୨୨ | ବାମଣ୍ଡା | ୪୫ | ୧୨୩ | ୩୩ | ୨୦୧ |
| ୨୩ | ବଣାଇ | ୧୫ | ୪୦ | ୨୭ | ୮୨ |
| ୨୪ | ବଡ଼ରମା* - ଦେବ୍ରୀଗଡ଼ | ୦ | ୦ | ୦ | ୦ |
| ୨୫ | ଦେବଗଡ଼ | ୨ | ୭ | ୦ | ୯ |
| ୨୬ | ରେଢ଼ାଖୋଲ | ୨୫ | ୯୩ | ୪୭ | ୧୬୫ |
| ୨୭ | ସୁନ୍ଦରଗଡ଼ | ୦ | ୦ | ୦ | ୦ |
| ୨୮ | ସମ୍ବଲପୁର | ୨୦ | ୨୨ | ୨୨ | ୬୪ |
| | **ମୋଟ ସମ୍ବଲପୁର ବନମଣ୍ଡଳ** | **୧୦୭** | **୨୮୩** | **୧୩୨** | **୫୨୨** |
| ୨୯ | ଚନ୍ଦକା | ୧୩ | ୩୦ | ୧୯ | ୬୨ |
| ୩୦ | ସିମିଳିପାଳ | ୯୭ | ୨୮୩ | ୧୩୨ | ୫୧୨# |
| | **ମୋଟ ଓଡ଼ିଶା ରାଜ୍ୟ** | **୩୭୦** | **୯୪୦** | **୫୩୧** | **୧୮୪୧** |

**ଅଣ୍ଡିରା:ମାଈ ଅନୁପାତ ୦.୩୯**   * ବନ୍ୟପ୍ରାଣୀ   # କରଞ୍ଜିଆ ଓ ବାରିପଦାର ହାତୀ ସଂଖ୍ୟା ସହିତ



Digitized by srujanika@gmail.com

ଏହି ଯୋଜନା ଅଧୀନରେ ଓଡ଼ିଶାରେ ତିନିଗୋଟି ହସ୍ତୀପ୍ରକଳ୍ପ ଘୋଷଣା କରାଯାଇଛି । ସେଗୁଡ଼ିକ ହେଲେ,

- ଶିମିଳିପାଳ, ବାଲେଶ୍ୱରର କୁଳଡିହା ଓ କେନ୍ଦୁଝରର ହଦଗଡ଼ ଅଭୟାରଣ୍ୟ - **ମୟୂରଭଞ୍ଜ ହସ୍ତୀ ପ୍ରକଳ୍ପ ।**
- ଅନୁଗୁଳ, କଟକ, ବୌଦ୍ଧ ଓ ନୟାଗଡ଼ ଜିଲ୍ଲାର ସାତକୋଶିଆ ଓ ବାଇଶିପଲ୍ଲୀ ଅଭୟାରଣ୍ୟ - **ମହାନଦୀ ହସ୍ତୀ ପ୍ରକଳ୍ପ ।**
- ସମ୍ବଲପୁର ଓ ଦେବଗଡ଼ ଜିଲ୍ଲାରେ ଅବସ୍ଥିତ ବଡ଼ରମା ଓ ଖଲାଶୁଣି ଅଭୟାରଣ୍ୟ - **ସମ୍ବଲପୁର ହସ୍ତୀ ପ୍ରକଳ୍ପ ।**

ଭୁବନେଶ୍ୱର ଉପକଣ୍ଠରେ ଥିବା ଚନ୍ଦକା ଅଭୟାରଣ୍ୟକୁ ମଧ୍ୟ ରାଜ୍ୟ ସରକାର ହସ୍ତୀ ଅଭୟାରଣ୍ୟ ଭାବରେ ମାନ୍ୟତା ଦେଉଥିଲେ ହେଁ ତାହା ହସ୍ତୀ ପ୍ରକଳ୍ପରେ ସ୍ଥାନ ପାଇପାରିନାହିଁ । ଏଠାରେ ୬୨ଟି ହାତୀ ଅତି ଛୋଟ ଅଞ୍ଚଳରେ ଆବଦ୍ଧ ହୋଇ ରହିଛନ୍ତି ଏବଂ ଅନ୍ୟ କୌଣସି ଜଙ୍ଗଲ ସହିତ ଏହାର ସଂଯୋଗ ପଥ ନାହିଁ । ହାତୀ ହେଉଛି ୫୦୦ ବର୍ଗ କିଲୋମିଟର ଭଳି ବିରାଟ ଅଞ୍ଚଳରେ ବୁଲିବାର ଅଭ୍ୟାସ ଥିବା ଗୋଟିଏ ପ୍ରାଣୀ । ତେଣୁ ଚନ୍ଦକାର ଏହି ଅତି ସୀମିତ ଅଞ୍ଚଳକୁ ଡେଇଁକରି ହାତୀମାନେ ଅନେକ ସମୟରେ ଗ୍ରାମ ଓ ସହରକୁ ଚାଲିଆସନ୍ତି ଏବଂ ଫସଲ ନଷ୍ଟ କରିବା ସାଙ୍ଗେ ସାଙ୍ଗେ ମଣିଷଙ୍କୁ ମୃତାହତ କରିଥାନ୍ତି । ହାତୀ ଓ ଲୋକମାନଙ୍କ ମଧ୍ୟରେ ସଂଘର୍ଷ ଏଡ଼ାଇବା ପାଇଁ ଚନ୍ଦକା ଚାରିପଟେ ପରିଖା ଖୋଳାହୋଇଛି ଏବଂ ବର୍ତ୍ତମାନ ଏହି କାମ ଚାଲିଛି । ଯେଉଁଠାରେ ତାହା ସମ୍ଭବ ନୁହେଁ, ସେଠାରେ ପଥର କାନ୍ଥ ଦିଆଯାଇଛି ଏବଂ ପାଣି ନିଷ୍କାସନ ପାଇଁ ବ୍ୟବସ୍ଥା କରାଯାଇଛି । ଏହି ସଂଘର୍ଷ ଏଡ଼ାଇବା ପାଇଁ ପୋଷାହାତୀ ମଧ୍ୟ ମୁତୟନ କରାଯାଇଛନ୍ତି ।

ତାଙ୍କର ଆବାସସ୍ଥଳୀର ସଂକୋଚନ ସତ୍ତ୍ୱେ ହାତୀମାନେ ବର୍ଷର ଅଧିକାଂଶ ସମୟରେ ଜଙ୍ଗଲ ମଧ୍ୟରେ ଆବଦ୍ଧରହି ଲୋକମାନଙ୍କ ସଂଘର୍ଷରେ ନଆସିବାକୁ ଚେଷ୍ଟା କରନ୍ତି । କିନ୍ତୁ ଛୋଟ ଜଙ୍ଗଲ ଭିତରେ ଖାଦ୍ୟ ଓ ପାଣିର ଅଭାବ ହେତୁ, ବିଶେଷ କରି ଫସଲ ଅମଳ ପୂର୍ବରୁ, ଆମ୍ବ ପଣସ ପାଚିବା ସମୟରେ, ମହୁଲ ପଡ଼ିବା ସମୟରେ, ସେମାନେ ଏହି ସବୁ ସୁସ୍ୱାଦୁ ଖାଦ୍ୟର ଆକର୍ଷଣରେ ଜଙ୍ଗଲ ବାହାରକୁ ଚାଲିଆସନ୍ତି । ଜଙ୍ଗଲ ଭିତରେ ଥିବା କଚ୍ଚା ଘରମାନଙ୍କରେ ରଖାଯାଇଥିବା ଧାନ ଓ ଦେଶୀ ମଦର ବାସ୍ନା ପାଇ ମଧ୍ୟ ସେମାନେ ଅନେକ ସମୟରେ ଘରକୁ ଆକ୍ରମଣ କରି କାନ୍ଥ ଭାଙ୍ଗିଦେଇଥା'ନ୍ତି । ଏହା ଫଳରେ କେବେ କେବେ ଘରେ ଥିବା ଲୋକମାନେ କାନ୍ଥ ତଳେ ଚାପିହୋଇ ମୃତାହତ ହୋଇଥା'ନ୍ତି । ଏପରି ଘଟଣା ବିଭିନ୍ନ ସ୍ଥାନରେ ଘଟୁଥିଲେ ହେଁ, କେନ୍ଦୁଝର ଓ ସମ୍ବଲପୁର ଜିଲ୍ଲାରେ ଏହା ଅଧିକ ହେଉଥିବାର ଜଣାଯାଏ । ଏହାର ନିରାକରଣ ପାଇଁ ଜଙ୍ଗଲର ଅବକ୍ଷୟ ରୋକିବା, ତହିଁରେ ଯଥେଷ୍ଟ ଖାଦ୍ୟ ଓ ଜଳର ସୁବନ୍ଦୋବସ୍ତ କରିବା ଏବଂ ଜଙ୍ଗଲ ପାଖରେ ଥିବା ଗ୍ରାମବାସୀଙ୍କୁ ସତର୍କ ରଖାଇବା ଅତି ଜରୁରୀ ।




ହାତୀଙ୍କୁ ଆବଦ୍ଧ କରିବା ପାଇଁ ଚନ୍ଦକା ଜଙ୍ଗଲରେ କରାଯାଇଥିବା ଖନ୍ଦା (ଉପର) ଓ ପଥର କାନ୍ଥ (ତଳ)ର ଗଠନ ।




ଏହି ବିରାଟ ସ୍ଥଳ ବିଚରଣକାରୀ ଜୀବକୁ ରକ୍ଷା କରିବାକୁ ହେଲେ ତା'ର ଆବାସସ୍ଥଳୀ ଜଙ୍ଗଲକୁ ସୁରକ୍ଷା ଦେବାକୁ ହେବ ଏବଂ ତାକୁ ଖଣ୍ଡବିଖଣ୍ଡିତ କରିବା ରୋକିବାକୁ ହେବ । ସେଥିପାଇଁ ଆମେ ସମସ୍ତେ ସଚେତନ ହେବାକୁ ପଡ଼ିବ ।

### ଗୁଣ୍ଡୁଣି ହାତୀ ?

ସାତକୋଶିଆ ହସ୍ତୀ ପ୍ରକଳ୍ପ ମଧ୍ୟରେ ଗୋଟିଏ ବା ଦୁଇଟି ଦଳ ଛୋଟ କିସମର ହାତୀ ଥିବାର ସୂଚନା ସେ ଅଞ୍ଚଳର ଜନସାଧାରଣ ଓ ବନ କର୍ମଚାରୀଙ୍କ ଠାରୁ ମିଳେ । ଏହି ଦଳର ପ୍ରାପ୍ତବୟସ୍କମାନଙ୍କର ଉଚ୍ଚତା ୨ ମିଟର ପାଖାପାଖି । କିନ୍ତୁ ଏମାନଙ୍କ ବିଷୟରେ କିଛି ସ୍ୱତନ୍ତ୍ର ଅନୁସନ୍ଧାନ କରାଯାଇ ନାହିଁ । ଓଡ଼ିଆ ଲୋକକଥାରେ 'ଗୁଣ୍ଡୁଣି ହାତୀ'ମାନଙ୍କର ଦୃଷ୍ଟାନ୍ତ ମିଳିଥାଏ । ସାତକୋଶିଆର ଛୋଟ ହାତୀମାନେ ଏହି ଗୁଣ୍ଡୁଣି ହାତୀ ନୁହନ୍ତି ତ ? ଏମାନଙ୍କର ଭିନ୍ନତା ବିଷୟରେ ନିଶ୍ଚିତ ହେବା ପାଇଁ ସେମାନଙ୍କୁ ଠାବକରି ତାଙ୍କ ବିଷୟରେ ଅଧିକ ଗବେଷଣା କରିବା ଦରକାର ।

### ସହାୟକ ଗ୍ରନ୍ଥସୂଚୀ


୧· *ଏଲିଫାଣ୍ଟ୍ସ୍ ଇନ୍ ଶିମିଳିପାଳ*, ସଂ· ଏସ୍·ଏସ୍· ଶ୍ରୀବାସ୍ତବ, ଏଲ୍·ଏ·କେ· ସିଂହ, ଜଙ୍ଗଲ ବିଭାଗ, ଓଡ଼ିଶା ସରକାର, ୨୦୦୧ ।

୨· *ରିମୋଟ ସେନ୍‌ସିଙ୍ଗ ଆପ୍ଲିକେସନ୍ ଫର୍ କ୍ୟାରେକ୍‌ଟେରାଇଜେସନ୍ ଅଫ୍ ଏଲିଫାଣ୍ଟ ହାବିଟାଟ୍ସ୍ ଆଣ୍ଡ କରିଡର୍ସ୍ ଇନ୍ ଓରିଶା ଆଣ୍ଡ ପାର୍ଟ ବିହାର*, ଓରିଶା ରିମୋଟ୍ ସେନ୍‌ସିଙ୍ଗ ଆପ୍ଲିକେସନ୍ ସେଣ୍ଟର, ଭୁବନେଶ୍ୱର, ୧୯୯୯ ।





Digitized by srujanika@gmail.com

# ହାତୀପ୍ରେମୀଙ୍କ ପାଇଁ କିଛି ଭିଡିଓ

- **ଏସିଆନ୍ ଏଲିଫାଣ୍ଟ** ପରୋଲ ସଂଗ୍ରହ
  ହାତୀମାନେ କିପରି ଧରାଯାଆନ୍ତି, ପୋଷା ମନାଯା'ନ୍ତି ଏବଂ ଆସାମର କଷ୍ଟକର ଭୂମିରେ କାମ କରିବା ପାଇଁ ତାଲିମ ପାଆନ୍ତି ଏହି ଚିତ୍ରଟି ତାହା ଉପରେ ବିଶେଷ ଦୃଷ୍ଟିପାତ କରେ । ଆହୁରି ମଧ୍ୟ ଭାରତ ଓ ଶ୍ରୀଲଙ୍କାରେ ସଂରକ୍ଷଣ କର୍ମୀମାନେ କିପରି ଏସୀୟ ହାତୀକୁ ବଞ୍ଚାଇ ରଖିବାକୁ ଚେଷ୍ଟା କରୁଛନ୍ତି ତାହାର ସୂଚନା ଏହି ଚିତ୍ରରୁ ମିଳେ । ଏଥିପାଇଁ ସେମାନେ ସଂରକ୍ଷିତ ଜଙ୍ଗଲର ପରିମାଣ ବଢ଼ାଇ ହାତୀମାନଙ୍କୁ ସେଠାରେ ମୁକୁଳାଇ ଦେଉଛନ୍ତି ।
- **ଏସୀୟ ହାତୀ ୱର୍ଲ୍ଡ୍ ୱାଇଲ୍ଡ୍** ଲାଇଫ୍ ଫଣ୍ଡ ଫର୍ ନେଚର୍
  ଲୋପ ପାଇଯିବାର ଆଶଙ୍କାରେ ରହିଥିବା ଏସୀୟ ହାତୀ ଏବଂ ତାଙ୍କର ପ୍ରାକୃତିକ ଇତିହାସ ଉପରେ ଏହି ଚିତ୍ର ଦୃଷ୍ଟି ପକାଏ ।
- **ଏଲିଫାଣ୍ଟ: ଲର୍ଡ ଅଫ୍ ଦି ଜଙ୍ଗଲ** ବେଦୀ ଫିଲ୍ମ୍ ନିବେଦନ
  ଏସୀୟ ହାତୀଙ୍କ ମୋଟ ସଂଖ୍ୟାର ପ୍ରାୟ ଅଧା ରହିଛନ୍ତି ଭାରତୀୟ ଜଙ୍ଗଲରେ । ମୁଖ୍ୟତଃ ଏମାନଙ୍କ ସାମାଜିକ ଜୀବନ ଓ ଚାଲିଚଳଣ, ଖାଦ୍ୟ ଓ ମିଳନ ଅଭ୍ୟାସ ଏବଂ ତାଙ୍କ ସମାଜର ଗଠନକୁ ନେଇ ଏହି ଚିତ୍ରଟି ତିଆରି ।
- **ଏଲିଫାଣ୍ଟ ମେନ୍** ନାସନାଲ୍ ଜିଓଗ୍ରାଫିକ୍
  ହାତୀଙ୍କ ମାହୁନ୍ତ ଓ ହାତୀ ସହ ତାଙ୍କର ସମ୍ପର୍କ ଏବଂ ହାତୀ ତାଲିମର ପୂର୍ଣ୍ଣାଙ୍ଗ ଧାରା ଉପରେ ଏହି ଚିତ୍ରଟି ଆଧାରିତ ।
- **ଏଲିଫାଣ୍ଟ ପାୱାର** ବ୍ରେଗର-ଡାନିଏଲ୍ ନିବେଦନ
  ମିଆଁମାରର ଜଙ୍ଗଲ ଭିତରେ ଏକ ବର୍ଷ ଧରି ଗୋଟିଏ ହାତୀ ଦଳଙ୍କର କାର୍ଯ୍ୟକଳାପ ଏହି ଚିତ୍ରରେ ଦେଖାଯାଇଛି ।
- **ଏଲିଫାଣ୍ଟ୍ସ୍: ସୋଲ୍ ଅଫ୍ ଶ୍ରୀଲଙ୍କା** ନାସନାଲ ଜିଓଗ୍ରାଫିକ
  ଶ୍ରୀଲଙ୍କାର ଗ୍ରୀଷ୍ମମଣ୍ଡଳୀୟ କେନ୍ଦ୍ର ଭାଗରେ ଚାଲୁଥିବା ଗୋଟିଏ ହାତୀ ଅନାଥାଶ୍ରମ ଓ ଅଭୟାଶ୍ରୟ, ଯେଉଁଠି ଗୃହଯୁଦ୍ଧର ବୋମା ଓ ଗୋଳା ଆଦିରୁ ଦୂରରେ ହାତୀ ଛୁଆଙ୍କୁ ବଢ଼ାଯାଏ, ଉପରେ ଏକ ଚିତ୍ର ।
- **ଗଣେଶ: ଦି ଏଲିଫାଣ୍ଟ ଗଡ୍** ବେଦୀ ଫିଲ୍ମ୍ ନିବେଦନ
  ପାଳିତ ହାତୀ ଏବଂ ଏବେ ମଧ୍ୟ ତାଙ୍କୁ କେନ୍ଦ୍ର କରି ଚାଲୁଥିବା ପାରମ୍ପରିକ ଜୀବନ ବିଷୟରେ ଜଣାଉଥିବା ଏକ ଚିତ୍ର । ମଣିଷ ହାତୀକୁ ଦେଇଥିବା ଦୁଇଟି ଭୂମିକା - ଜଣେ ଦେବତା ଓ ଗୋଟିଏ କାମିକା ପଶୁ - ଉପରେ ଏହି ଚିତ୍ରଟି ଦୃଷ୍ଟି ପକାଏ ।
- **ହେଭେନ୍ ଆଣ୍ଡ ଏମ୍ପାୟାର: ଦି ହ୍ୱାଇଟ୍ ଏଲିଫାଣ୍ଟ** କ୍ରେଷ୍ଟ ମିଡିଆ କୋ· ଲି· ୨୦୦୦, ନାସନାଲ୍ ଜିଓଗ୍ରାଫିକ୍
  ଧଳା ହାତୀଙ୍କର ଗୁଣଧର୍ମ, ସେମାନେ ଦେଖାଯାଉଥିବା ଅଞ୍ଚଳ ଏବଂ ସେମାନେ ଅନ୍ୟ ହାତୀଙ୍କଠାରୁ କିପରି ବାରି ହୁଅନ୍ତି ତାହା ହେଉଛି ଏହି ଚିତ୍ରର ବିଷୟ । ସେମାନଙ୍କ ବିଷୟରେ ପ୍ରଚଳିତ ବିଶ୍ୱାସ ଓ କିମ୍ବଦନ୍ତୀ ଆଦି ଏବଂ ଆଜି ମଧ୍ୟ ସମୃଦ୍ଧି ଓ ଶାନ୍ତିର ଏକ ପ୍ରତୀକ ଭାବରେ ସେମାନେ କିପରି ସମ୍ମାନିତ ତାହା ମଧ୍ୟ ଏହି ଚିତ୍ର ଦେଖାଏ ।
- **ମୋଟାଲା: ଦି ଏଲିଫାଣ୍ଟ ଷ୍ଟୋରୀ** ନାସନାଲ ଜିଓଗ୍ରାଫିକ
  ଦକ୍ଷିଣପୂର୍ବ ଏସିଆ (ମିଆଁମାର, ଥାଇଲାଣ୍ଡ)ରେ ରହୁଥିବା ମୋଟାଲା ନାମକ ଏକ ହାତୀ ଉପରେ ଚିତ୍ରଟିଏ । ମାଇନ୍ ବିସ୍ଫୋରଣରେ ମୋଟାଲାର ଆଗ ଗୋଡ଼ ଉଡ଼ିଯିବା ପରେ ତା'ର ମାହୁନ୍ତ କିପରି ତାକୁ ବଞ୍ଚାଇବାକୁ ଚେଷ୍ଟାକରୁଛି ତାହା ଏଥିରେ ଦେଖାଯାଇଛି । ଥାଇଲାଣ୍ଡରେ ଜଣେ ମହିଳା ଚଳାଉଥିବା ଏକ ସ୍ୱତନ୍ତ୍ର ହାତୀ ହାସ୍ପାତାଳ, ଯେଉଁଠି ମୋଟାଲା ଚିକିତ୍ସିତ ହେଉଛି ଏବଂ ଯେଉଁଠି ତାକୁ ଗୋଟିଏ କୃତ୍ରିମ ଗୋଡ଼ ଦିଆଯାଇପାରେ, ବିଷୟରେ ମଧ୍ୟ ସେ ଚିତ୍ରରେ ରହିଛି ।
- **ନାଗରହୋଲ: ଟେଲ୍ସ୍ ଫ୍ରମ୍ ଆନ୍ ଇଣ୍ଡିଆନ୍ ଜଙ୍ଗଲ** ଇକୋ ମିଡିଆ ଫିଲ୍ମ୍
  ନାଗରହୋଲ ଜଙ୍ଗଲରେ ହାତୀ ଏବଂ ତାଙ୍କୁ ଶିକାର କରୁଥିବା ବାଘ, କଲରାପତ୍ରିଆ ବାଘ ଓ ବଣୁଆ କୁକୁର ଆଦି ବହୁତ ସଂଖ୍ୟାରେ ଦେଖାଯା'ନ୍ତି । ଏହି ଚିତ୍ର ଦର୍ଶକଙ୍କୁ ସେଠାକୁ ନେଇଯାଏ । ଦକ୍ଷିଣ ଭାରତର ପ୍ରାକୃତିକ ଇତିହାସ, ସେଠାରେ ବଣ୍ୟଜନ୍ତୁ ଭୋଗୁଥିବା ବିଭିନ୍ନ ଅସୁବିଧା ଏବଂ ଏକଦା କାଠଚୋରି ଯୋଗୁ ନଷ୍ଟ ହୋଇଯାଉଥିବା ଜଙ୍ଗଲ ସଂରକ୍ଷଣ ଯୋଗୁ ଏବେ କିପରି ବଣ୍ୟପ୍ରାଣୀଙ୍କର ସ୍ୱର୍ଗ ପାଲଟିଛି ସେସବୁର ବିଭିନ୍ନ ଦିଗ ଏହି ଚିତ୍ର ଦେଖାଏ ।
- **ଲୁଇନ୍ ଅଫ୍ ଦି ଏଲିଫାଣ୍ଟ୍ସ୍** ଡିସ୍କଭରି ଚାନେଲ୍
  ଏହି ଚିତ୍ର ଦର୍ଶକଙ୍କୁ ମାହୁନ୍ତ ପାର୍ବତୀ ବରୁଆ ଓ ଇଂରେଜ ଲେଖକ ମାର୍କ ସ୍ୟାଣ୍ଡଙ୍କ ସହିତ ହାତୀ ପିଠିରେ ବସାଇ ଉତ୍ତରପୂର୍ବ ଭାରତର ଜଙ୍ଗଲ ସବୁରେ ବୁଲାଏ । ପାର୍ବତୀ ଏବଂ ତାଙ୍କ ହାତୀ ଲକ୍ଷ୍ମିମାଲା ଓ କାଞ୍ଚନମାଲାଙ୍କର ସମ୍ପର୍କ, ତାଙ୍କର ନିତିଦିନିଆ ଜୀବନ ଓ କାର୍ଯ୍ୟକଳାପ ସବୁକୁ ଏହି ଚିତ୍ର ଦେଖାଏ ।
- **ଟୁ କ୍ୟାଚ୍ ଆନ୍ ଏଲିଫାଣ୍ଟ** ଫିଲ୍ମସ୍ ଡିଭିଜନ
  ଗୋଟିଏ ଜଙ୍ଗଲୀ ହାତୀ କିପରି ଧରାହୁଏ ଓ ପୋଷା ମନାଯାଏ ତାହା ଏହି ଚିତ୍ରରେ ଦେଖାଯାଇଛି । ଏହି ଚିତ୍ରଟି ରହସ୍ୟ ଓ ରୋମାଞ୍ଚରେ ଭରି ରହିଛି ।
- **ଦି ଏଲିଫାଣ୍ଟ ସଙ୍ଗ: କାମାଲ୍** ଇଣ୍ଟରନାସନାଲ ସେଣ୍ଟର ଫର କନ୍ଜରଭେସନ୍ ଏଜୁକେସନ୍
  ଏହା ହେଉଛି ଏକ ସ୍ଲାଇଡ୍ ସୋ, ଯେଉଁଥିରେ ଗୋଟିଏ ହାତୀ ଗୀତ ମାଧ୍ୟମରେ ନିଜର କଥା ପିଲାମାନଙ୍କୁ ଶୁଣାଉଛି । ହାତୀଟି ପିଲାମାନଙ୍କୁ ଜଙ୍ଗଲରେ ତା'ର ଜୀବନ ବିଷୟରେ, ଲାଭ ପାଇଁ ତାଙ୍କୁ ମାରୁଥିବା ଜଣେ ନିଷ୍ଠୁର ଶିକାରୀ ବିଷୟରେ ଏବଂ ତାକୁ ଧରି ଓ ଯତ୍ନ ନେଇ କାମରେ ଲଗାଉଥିବା ଲୋକଙ୍କ ବିଷୟରେ କହୁଛି । ସବୁ ଜୀବଙ୍କ ସହିତ ସାଙ୍ଗ ହେବା ପାଇଁ ଏହି ସ୍ଲାଇଡ୍ ସୋ ଜରିଆରେ ହାତୀ ପିଲାମାନଙ୍କୁ ନିବେଦନ କରୁଛି ।
- **ଦି ଅର୍ବାନ ଏଲିଫାଣ୍ଟ** ନାସନାଲ ଜିଓଗ୍ରାଫିକ
  ଏହି ସହରୀ ହାତୀଟି ମଣିଷ ଦ୍ୱାରା ପ୍ରଭାବିତ ହୋଇଥିବା ଆଠଟି ହାତୀଙ୍କର ନାଟକୀୟ କାହାଣୀ କହୁଛି ।



Digitized by srujanika@gmail.com

# ସହାୟକ ଗ୍ରନ୍ଥସୂଚୀ


- Agrawal Anil, Narain Sunita, Sen Sarabani. *The Citizen's Fifth Report. Part II: Statistical Database*. Centre for Science and Environment. 1999.
- Alwis Lyn de, Santiapillai Charles (Eds.). *IUCN/SSC Asian Elephant Specialist Group Newsletter*. WWF Asia. Number 6, Spring 1991.
- Bedi Ramesh. *Elephant: Lord of the Jungle*. National Book Trust, New Delhi. 1998.
- Braus Judy (Ed.). *Ranger Rick's NatureScope: Amazing Mammals: Part II*. National Wildlife Federation, Washington DC. 1986.
- Centre for Environment Education. *CEE's NatureScope India: Amazing Mammals*. Centre for Environment Education.1990.
- Centre for Environment Education. *CEE's NatureScope India: Birds, Birds, Birds*. Centre for Environment Education. 1999.
- Central Zoo Authority. *Zoos in News: Third Volume.* Central Zoo Authority. New Delhi. March 2000.
- Collins John D. *Maths Matters: Examples of Mathematics in the Environment*. World Wide Fund for Nature, UK. 1995.
- Daniel J.C. *The Asian Elephant: A Natural History*. Natraj Publishers, Dehra Dun. 1998.
- Desai Ajay, Sahgal Bittu (Eds.). *The Indian Elephant: Endangered in the Land of Lord Ganesha.* Vigyan Prasar, New Delhi; Sanctuary Magazine, Mumbai.
- Eltringham S.K. (Consultant). *The Illustrated Encyclopedia of Elephants*. Salamander Books Ltd., United kingdom. 1997.
- Freeman Dan. *The Elephant: Endangered Animal*. Bison Books Ltd., London. 1990.
- Ghorpade M. Y. *Sunlight & Shadows*. B. I. Publications. 1993.
- Grzimek Bernhard h.c.(Editor-in-chief). *Grzimek's Animal Life Encyclopedia*: *Volume 12. Mammals III*. Van Nostrand Reinhold Company, United States. 1975.
- Lahiri-Choudhury D.K. *Translocation of Wild Elephants*. Asian Elephant Conservation Centre, Bangalore. 1991.
- Menon Vivek, Sukumar R., Kumar Ashok. *A God in Distress*. Asian Elephant Conservation Centre, Bangalore. 1997.
- Menon Vivek, Kumar Ashok. *Signed and Sealed: The Fate of the Asian Elephant*. Asian Elephant Research and Conservation Centre, Bangalore; Wildlife Protection Society of India, Delhi. 1998.
- Ministry of Environment and Forests, Government of India. *Project Elephant (Gajatme*). Ministry of Environment and Forests, Government of India. 1993.
- Pandya Mamata, Raghunathan Meena. *Wild at the Zoo*. Centre for Environment Education. 2000.
- *Project Wild: Elementary Activity Guide*. Western Regional Environmental Education Council. 1983.
- *Project Wild: Secondary Activity Guide*. Western Regional Environmental Education Council. 1983.
- Raghunathan Meena, Pandya Mamata (Eds.). *The Green Teacher*. Centre for Environment Education. 1997.
- Ramakrishnan Uma, Santosh J.A., Sukumar R. (Eds.). *Censusing Elephant in Forests: Proceedings of an International Workshop*. Asian Elephant Conservation Centre, Bangalore. 1991.
- Rao Rameshwar Shanta. *The Mahabharata*. Orient Longman Limited. 1985.
- Redmond Ian. *Eyewitness Guides: Elephant*. Dorling Kindersley Limited, London. 1993.
- Santiapillai Charles, Jackson Peter (Compilers). *The Asian Elephant: An Action Plan for its Conservation*. International Union for Conservation of Nature and Natural Resources, Switzerland. 1990.
- Shand Mark. *Queen of the Elephants*. Vintage, London. 1996.
- Sukumar Raman. *Elephant Days & Nights*. Oxford University Press. 1994.
- Sukumar R. *The Asian Elephant: Ecology and Management*. Cambridge University Press, Australia. 1989.
- *The Wildlife (Protection) Act 1972*. Natraj Publications, Dehra Dun. 1997.
- Wildlife Institute of India. *Envis: Wildlife and Protected Areas*. *Vol. 1, No. 1*; Spring; Bi-annual Bulletin. Wildlife Institute of India. Dehra Dun. March 1998.
- Wildlife Protection Society of India. *The Indian Judiciary Axes Wildlife Trade*. Wildlife Protection Society of India. March 1997.
- Wildlife Trust of India, Wildlife Protection Society of India, Asian Elephant Research and Conservation Centre, Ministry of Environment and Forests. *Reversing the Decline of the Asian Elephant*. Wildlife Trust of India, Wildlife Protection Society of India, Asian Elephant Research and Conservation Centre, Ministry of Environment and Forests. 2000.
- WWF India Quarterly. *Ivory Quest Threatens Indian Elephant*. *Vol. 3 No. 3*. WWF India. July–September 1992.




Digitized by srujanika@gmail.com



This is the Oriya edition of CEE's publication "Endangered Elephants"


ସିଇଇ ଭୁବନେଶ୍ୱର

ଏ ୯୮, କୁଞ୍ଜ ନଗର (ସନ୍ ଫ୍ଲାୱାର ନର୍ସିଙ୍ଗ୍ ହୋମ୍ ପାଖ), ଭୁବନେଶ୍ୱର ୭୫୧ ୦୦୬

ଫୋନ: ୯୧-୬୭୪-୨୩୧୨୯୭୨/୨୩୧୩୧୨୫

Email: ceebhubaneshwar@ceeindia.org

ଆଇଏସ୍‌ବିଏନ୍ : ୮୧-୮୬୩୮୫-୪୯-୫

**CEE**

Centre for Environment Education


*Digitized by srujanika@gmail.com*